# ବାବାସାହେବ
# ଡଃ ଆମ୍ବେଦକର

( ଜୀବନ ସଂଗ୍ରାମ ଓ ବ୍ୟାଖ୍ୟାନ ମାଳା)



ଶ୍ରୀ ନାରାୟଣ ଚନ୍ଦ୍ର ଦାସ

୯୫ ତମ ଜନ୍ମବାର୍ଷିକ ଉପଲକ୍ଷେ

## ବାବାସାହେବ

# ଡଃ ଆମ୍ବେଦକର

[ ଜୀବନ ସଂଗ୍ରାମ ଓ ବ୍ୟାଖ୍ୟାନ ମାଲା ]



ଶ୍ରୀ ନାରାୟଣ ଚନ୍ଦ୍ର ଦାସ

ଭାଷାନ୍ତର ଓ ସମ୍ପାଦନା

ଶ୍ରୀ ନାରାୟଣ ଚନ୍ଦ୍ର ଦାସ ଏମ୍. ଏ. ଏଲ୍. ଏଲ୍. ବି.

ପ୍ରକାଶିକା

ଶ୍ରୀମତୀ ରମାରାଣୀ ଦାସ

ଗ୍ରା: / ପୋ:—ଛଣପଡ଼ା

ଜିଲ୍ଲା—କଟକ

ମୁଦ୍ରଣ

ୟୁନାଇଟେଡ୍ ପ୍ରିଣ୍ଟସ

ଭୁବନେଶ୍ୱର—୨

୧୯[illegible]

ପ୍ରଚ୍ଛଦପଟ୍ଟ ଶିଳ୍ପୀ

ଶ୍ରୀ ପ୍ରମୋଦ କୁମାର ମହାପାତ୍ର

ମୂଲ୍ୟ--ଟ ୨୦-୦୦ (କୋଡ଼ିଏ ଟଙ୍କା ମାତ୍ର)

(ବନ୍ଧାଇ ସହ ମୂଲ୍ୟ ପଚିଶ ଟଙ୍କା)

ଶ୍ରୀ ଭଜମନ ବେହେରା
ବି.ଏସ୍.ସି. (ଇଞ୍ଜିନିୟରିଂ)
ମନ୍ତ୍ରୀ
ହରିଜନ ଓ ଆଦିବାସୀ କଲ୍ୟାଣ,
ଓଡ଼ିଶା



ଚିଠି ନଂ ----------
ଭୁବନେଶ୍ୱର
ତା ________ ୧୯୮

ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନରେ ଯେଉଁ ମନୀଷିମାନେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ଡକ୍ଟର ଭୀମ ରାଓ ଆମ୍ବେଦକର ଅନ୍ୟତମ । ସାମ୍ବିଧାନିକ ବ୍ୟବସ୍ଥା ମାଧ୍ୟମରେ ସମାଜରେ ଅବହେଳିତ ଆଦିବାସୀ ଓ ହରିଜନମାନଙ୍କର ଉନ୍ନତି ପାଇଁ ସେ ଯେଉଁ ଉଦ୍ୟମ କରିଯାଇଛନ୍ତି ତାହା ତାଙ୍କୁ ଇତିହାସରେ ସ୍ୱତନ୍ତ୍ର ସ୍ଥାନ ଦେଇଛି । ଏବେ ମଧ୍ୟ ଭାରତର ଆଦିବାସୀ ଓ ହରିଜନ ନାଗରିକମାନେ ଶିକ୍ଷା ଓ ନିଯୁକ୍ତି ପ୍ରଭୃତି କ୍ଷେତ୍ରରେ ଯେଉଁ ସୁବିଧା ହାସଲ କରୁଛନ୍ତି, ତାହା ଡକ୍ଟର ଆମ୍ବେଦକରଙ୍କ ସୁଦୂରପ୍ରସାରୀ ଚିନ୍ତାଧାରାର ଫଳ । ଅଥଚ ଏପରି ଜଣେ ମହାନ ବ୍ୟକ୍ତିଙ୍କର ଜୀବନୀ ଓ କାର୍ଯ୍ୟାବଳୀ ସମ୍ପର୍କରେ ଖୁବ୍ କମ୍ ଲେଖା ଓଡ଼ିଆ ଭାଷାରେ ଦେଖିବାକୁ ମିଳେ । ତେଣୁ ଏହି ପୁସ୍ତକର ରଚୟିତା ଶ୍ରୀ ନାରାୟଣ ଚନ୍ଦ୍ର ଦାସ ବାବାସାହେବ ଆମ୍ବେଦକରଙ୍କର ଜୀବନୀ ଓ ବକ୍ତୃତାକୁ ଓଡ଼ିଆ ଭାଷାରେ ସଙ୍କଳନ କରିବାକୁ ପଦକ୍ଷେପ ନେଇଥିବାରୁ ବିଶେଷଭାବେ ଧନ୍ୟବାଦାର୍ହ । ସମାଜରୁ ଅସ୍ପୃଶ୍ୟତା ରୂପକ ବ୍ୟାଧିକୁ ଦୂରକରି ଏକତା ପ୍ରତିଷ୍ଠା କରିବା ପାଇଁ ଏହି ପୁସ୍ତକ ବିଶେଷ ସହାୟକ ହେବ ବୋଲି ଆଶା କରୁଛି ।

(ଭଜମନ ବେହେରା)
ମନ୍ତ୍ରୀ
ହରିଜନ ଓ ଆଦିବାସୀ କଲ୍ୟାଣ, ଓଡ଼ିଶା

ଡମ୍ବରୁଧର ଉଲକା

ରାଷ୍ଟ୍ରମନ୍ତ୍ରୀ

ଗୃହନିର୍ମାଣ ଓ ନଗର ଉନ୍ନୟନ

ଓଡ଼ିଶା




ଚିଠି ନଂ—— —— ——

ଭୁବନେଶ୍ୱର

ତା———— ୧୯୮

ସ୍ୱାଧୀନତାପୂର୍ବ କାଳରେ ଯେଉଁ କେତେଜଣ ନିଜର ସାଧନା, ନିଷ୍ଠା ଅଧ୍ୟବସାୟ ଓ ଆଦର୍ଶ ବଳରେ ସାଂପ୍ରତିକ ସାମାଜିକ ତଥା ରାଜନୈତିକ ଜୀବନକୁ ଗଭୀର ଭାବେ ପ୍ରଭାବିତ କରିଛନ୍ତି ସେମାନଙ୍କ ମଧ୍ୟରେ ଡକ୍ଟର ଭିମରାଓ ରାମଜୀ ଆମ୍ବେଦକର ଅନ୍ୟତମ । ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣେତା ଭାବରେ ନୂତନ ଗଣତନ୍ତ୍ରର ଉଦ୍ଘାଟନ କରି ମାନବବାଦର ଯେଉଁ ମହାନ ଓ ମୌଳିକ ଆଦର୍ଶ ସେ ପ୍ରତିପାଦିତ କରିଛନ୍ତି, ତାହା ତାଙ୍କୁ ବିଶ୍ୱ ଇତିହାସରେ ମୃତ୍ୟୁଂଜୟୀ କରି ରଖିବ । ତାଙ୍କପରି ଏକ ବହୁମୁଖୀ ଅମ୍ଳାନ ପ୍ରତିଭାଙ୍କର ଘଟଣାବହୁଳ, ତଥ୍ୟ ସମ୍ବଳିତ ଜୀବନାବଳୀ ଉପରେ ଆଧାରିତ "ବାବା ସାହେବ ଆମ୍ବେଦକର" ପୁସ୍ତକଟି ବାସ୍ତବରେ ଏକ ଆୟାସସାଧ୍ୟ ପ୍ରଚେଷ୍ଟା । ଏହି ଉପାଦେୟ ସଙ୍କଳନ ପାଇଁ ଲେଖକ ଶ୍ରୀ ନାରାୟଣ ଦାସଙ୍କୁ ମୁଁ ସାଧୁବାଦ ଜଣାଉଛି ।

ଅସ୍ପୃଶ୍ୟତାପରି, ଏକ ସାମାଜିକ କଳଙ୍କ ବିଲୁପ୍ତ କରି ସମାଜରେ ସଂହତି, ଏକତା ଓ ସଂପ୍ରିତିର ଉଦାର ପରିବେଶ ସୃଷ୍ଟି କରିବାରେ ଏହି କ୍ଷୁଦ୍ର ପୁସ୍ତକ ମହାନ ଦାୟିତ୍ୱ ବହନ କରିଛି । ପାଠକ ପାଠିକାମାନେ ଏହାର ମର୍ମବାଣୀ ଉପଲବ୍ଧି କଲେ ଲେଖକଙ୍କର ଶ୍ରମ ସାର୍ଥକ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

(ଡମ୍ବରୁଧର ଉଲକା)

ରାଷ୍ଟ୍ରମନ୍ତ୍ରୀ

ଗୃହ ନିର୍ମାଣ ଓ ନଗର ଉନ୍ନୟନ, ଓଡ଼ିଶା

# ପଦେ ଅଧେ

ଓଡ଼ିଆ ଭାଷାର ଗ୍ରନ୍ଥାଗାରରେ ବାବାସାହେବ ଡଃ ବି.ଆର. ଆମ୍ବେଦକରଙ୍କ ସମ୍ବନ୍ଧରେ ଖୁବ୍ କମ୍ ଲେଖା ଦେଖିବାକୁ ମିଳେ । ତାଙ୍କପରି ଜଣେ ମହାନ୍ ଜାତୀୟତାବାଦୀ ନେତା, ଅଦ୍ୱିତୀୟ ଚିନ୍ତାଶୀଳ, ମାନବତାବାଦୀ ସମାଜ ସଂସ୍କାରକଙ୍କ ପ୍ରତିଭା ଓଡ଼ିଆ ଭାଷାକୁ ବିଶେଷ ଆକର୍ଷଣ କରିପାରି ନାହିଁ । ତା'ର କାରଣ ହୋଇପାରେ, ତାଙ୍କର ବିଜ୍ଞାନ ସମ୍ମତ ବିଶ୍ଳେଷଣାତ୍ମକ ଆଦର୍ଶ ଚିନ୍ତାଧାରା ଓଡ଼ିଶାବାସୀଙ୍କ ପାଖରେ ବିଶେଷ ପରିଚିତ ହୋଇ ପାରି ନାହିଁ । ଯେଉଁ ସମ୍ବିଧାନର ଧାରା ଅନୁଯାୟୀ ଆଜି ସାରା ଭାରତବର୍ଷର ଶାସନଯନ୍ତ୍ର ପରିଚାଳିତ, ସେହି ସମ୍ବିଧାନର ମୁଖ୍ୟ ପ୍ରଣେତାଙ୍କର ବାସ୍ତବ ଆଦର୍ଶ, ଜୀବନ ଦର୍ଶନ ଓ ବିଚାରଧାରାର ଅପରିପ୍ରକାଶ ଆମ୍ଭମାନଙ୍କ ପାଖରେ ନିଶ୍ଚିତଭାବରେ କିଛି ନା କିଛି ଅଭାବ ସୃଷ୍ଟି କରୁଛି ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାରେ ଦଳିତ ଶ୍ରେଣୀର ଯେଉଁ ଅଗଣିତ ଅଧିବାସୀ ଅଦ୍ୟାବଧି, ଅର୍ଥାଭାବ, ଅଜ୍ଞତା, ଅଶିକ୍ଷା, ସାମାଜିକ ନିର୍ଯ୍ୟାତନା ଓ ଅଚେତନଶୀଳତାର ଅନ୍ଧକାର ଗହ୍ୱର ମଧ୍ୟରେ ସଡ଼ୁଛନ୍ତି; ବାବାସାହେବଙ୍କର ଦୀପ୍ତିମନ୍ତ ଜ୍ଞାନାଲୋକ ଚତୁର୍ଦ୍ଦିଗରେ ଉଦ୍ଭାସିତ ହୋଇ ସେମାନଙ୍କୁ ସୁଶିକ୍ଷିତ, ସୁସଂଗଠିତ ଓ ସଚେତନଶୀଳ କରୁ, ଏହି ଉଦ୍ଦେଶ୍ୟରେ ବାବାସାହେବଙ୍କର ଓଜସ୍ୱୀନି ବକ୍ତୃତାମାଳା, ବିଜ୍ଞାନ ସମ୍ମତ ପଦ୍ଧତିର ବ୍ୟାଖ୍ୟାନ ଓ ତାଙ୍କ ଜୀବନ ସଂଗ୍ରାମର ଜ୍ୱଳନ୍ତ ଉଦାହରଣ ହିନ୍ଦି ଓ ଇଂରାଜୀ ଭାଷାର ବିଭିନ୍ନ ଉପାଦେୟ ପୁସ୍ତକମାନଙ୍କରୁ ଓଡ଼ିଆ ଭାଷାନ୍ତର କରି ଓଡ଼ିଆ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପନ କରିଛି । ଉଦାର ହୃଦୟ ପାଠକଗଣଙ୍କର ମହାନୁଭବତାରୁ, ବାବାସାହେବଙ୍କର ଉଚ୍ଚକୋଟୀର ମାନବତାବାଦ ସମ୍ପନ୍ନ ମୌଳିକ ଦର୍ଶନ, ଯାହାର କ୍ଷୀଣ ଆଭାସମାତ୍ର ଉକ୍ତ ଅନୁବାଦିତ ପୁସ୍ତକରେ ପ୍ରତିଫଳିତ ହୋଇଛି; ଯଦି ସାମାନ୍ୟ କିଛି ଅନୁପ୍ରାଣିତ କରିପାରେ ଓ ଅଧିକରୁ ଅଧିକ ଭାବେ ସେମାନଙ୍କର ଜିଜ୍ଞାସୁ ହୃଦୟକୁ ବାବାସାହେବଙ୍କର ଅଗାଧ ପାଣ୍ଡିତ୍ୟପୂର୍ଣ୍ଣ, ଜ୍ଞାନ ଗର୍ଭକ ଚିନ୍ତାଧାରା ଆଡ଼କୁ ଆକର୍ଷଣ କରିବାକୁ ସକ୍ଷମ ହୁଏ ଏବଂ ସେମାନଙ୍କର ବାସ୍ତବ ଜୀବନ-ଦର୍ପଣରେ ପ୍ରତିବିମ୍ବିତ ହୋଇ ଏହି ଅଗଣିତ ମୂକ, ଦଳିତ ଶ୍ରେଣୀଙ୍କର

ହୃଦୟପଟରେ ପ୍ରତିଫଳିତ ହୋଇ ପାରେ, ତାହାହେଲେ ମୋର ସମସ୍ତ ଶ୍ରମ ସାର୍ଥକ ହୋଇ ପାରିବ ।

ସାମାଜିକ ଓ ଜାତୀୟ ସମନ୍ୱୟର ସୁବିସ୍ତୃତ କେଳିଭୂମିରେ ମୋର ଏହି ସାମାନ୍ୟତମ ପ୍ରଚେଷ୍ଟା ପାଇଁ ବହୁ ସମ୍ମାନାସ୍ପଦ ହିତାକାଂକ୍ଷୀଙ୍କର ପ୍ରେରଣା ଓ ଆଶ୍ୱାସନା ମୋ ପକ୍ଷରେ ଯେପରି ଅବିସ୍ମରଣୀୟ, ଠିକ୍ ସେହିପରି ମୋର ସୁହୃଦୟ ବନ୍ଧୁ ଓ ସହକର୍ମୀମାନଙ୍କର ସହଯୋଗ ଓ ସଦିଚ୍ଛା ଚିର ସ୍ମରଣୀୟ । ମୁଁ ହୃଦୟର ଗଭୀରତମ ପ୍ରଦେଶରୁ ସେମାନଙ୍କ ପାଖରେ କୃତଜ୍ଞତା ପ୍ରକାଶ କରୁଅଛି ।

ନାରାୟଣ ଚନ୍ଦ୍ର ଦାସ

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|




# ଯୁଗସ୍ରଷ୍ଟା ବାବାସାହେବ ଡକ୍ଟର ଆମ୍ବେଦକର

ମହାମନା ବାବାସାହେବ ଡକ୍ଟର ଭୀମରାଓ ଆମ୍ବେଦକର, ଭାରତ ପରି ଏକ ଉପ ମହାଦେଶରେ ଯେଉଁ ନୂତନ ଦିଗ୍‌ଦର୍ଶନ ତାଙ୍କର ଜୀବନ ବ୍ୟାପି ସଂଗ୍ରାମ ମଧ୍ୟରେ ଦେଇ ଗଲେ, ତାହାର ଫଳ ସ୍ୱରୂପ ଦେଶରେ ଏକ ନୂତନ ଯୁଗ ପ୍ରତିଷ୍ଠା କରାଯାଇ ପାରିଛି କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କଠାରେ ଅପାର ବିଦ୍ୟା, ଅଗାଧ ପାଣ୍ଡିତ୍ୟ, ଅସାଧାରଣ ସ୍ମରଣ ଶକ୍ତି, ବିଶୁଦ୍ଧ ମାନବିକତା, ଅବର୍ଣ୍ଣନୀୟ ଦେଶ ଭକ୍ତି ଓ ଉଚ୍ଚକୋଟିର ସଜ୍ଜନତା ପୂର୍ଣ୍ଣ ଥିଲା । ସେ ଭାରତୀୟ ସାମାଜିକ ଜୀବନରେ ଦୀନ ଦୁର୍ବଳମାନଙ୍କ ପ୍ରତି ହଜାର ହଜାର ବର୍ଷ ଧରି କରାଯାଇ ଆସୁଥିବା ଅକଥନୀୟ ଅମାନୁଷିକ ଅତ୍ୟାଚାର ବିରୁଦ୍ଧରେ ତାଙ୍କର ଜୀବନ ବ୍ୟାପି ସଂଗ୍ରାମ ଚଳାଇ ବର୍ଣ୍ଣ-ବୈଷମ୍ୟ ଯୁକ୍ତ ରୁଢ଼ିମନ୍ତ ଭେଦଭାବ ପୂର୍ଣ୍ଣ ହିନ୍ଦୁ ସମାଜର ମୂଳାଧାରରେ ଏକ ବିରାଟ ପରିବର୍ତ୍ତନ ଆଣିବାକୁ ସକ୍ଷମ ହୋଇ ପାରିଥିଲେ । ସେ ଥିଲେ ମିତଭାଷୀ କର୍ମୋନ୍ନିଧାନ ଓ ନିଷ୍କଳଙ୍କ ଚରିତ୍ର । ତାଙ୍କର ଅମୃତବାଣୀ ଜ୍ଞାନାଲୋକ ବିକିରଣ କରୁଥିଲା ଓ ତାଙ୍କ ସୁନିର୍ଦ୍ଦେଶ ଭ୍ରାନ୍ତ ମାନବକୁ ପଥ ପ୍ରଦର୍ଶନ କରୁଥିଲା ।

ଡକ୍ଟର ଆମ୍ବେଦକରଙ୍କର ଅସ୍ପୃଶ୍ୟତା ନିବାରଣୀ କାର୍ଯ୍ୟାବଳୀକୁ ଦେଖି ଆମେରିକାର ପଣ୍ଡିତମାନେ ତାଙ୍କୁ 'ଭାରତର ଲିଙ୍କନ' ବୋଲି କହୁଥିଲେ । ତାଙ୍କର କ୍ରାନ୍ତିକାରୀ ସମାଜ ସଂସ୍କାର ମୂଳକ ବିଚାର ଧାରାକୁ ଦେଖି ତାଙ୍କୁ 'ମାର୍ଟିନ୍ ଲୁଥର'ଙ୍କ ସହ ତୁଳନା କରୁଥିଲେ । ତାଙ୍କର ସମତା ସଂଘର୍ଷକୁ ଦେଖି ବଡ ବଡ ଅର୍ଥନୀତିଜ୍ଞ-ମାନେ ତାଙ୍କୁ "ଭାରତୀୟ ମାର୍କସ" ବୋଲି ଆଖ୍ୟା ଦେଇଥିଲେ । ହିନ୍ଦୁ ଶାସ୍ତ୍ରରେ ତାଙ୍କର ଥିବା ପାରଦର୍ଶିତା, ପଣ୍ଡିତମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଉଥିଲା ଓ ସେମାନେ ତାଙ୍କୁ "ମହର୍ଷି" ଆଖ୍ୟା ଦେଇଥିଲେ । ତାଙ୍କର ବୌଦ୍ଧ ଧର୍ମ ପ୍ରତି ଥିବା ଗଭୀର ନିଷ୍ଠା ଓ ଅଭୂତପୂର୍ବ ଅଧ୍ୟୟନଶୀଳତାକୁ ଦେଖି ବୌଦ୍ଧ ବିଦ୍ୱାନ୍ ଭିକ୍ଷୁ ମହାସ୍ଥବିର ମାନେ ତାଙ୍କୁ "ବୋଧିସତ୍ତ୍ୱ" ଉପାଧିରେ ଭୂଷିତ କରିଥିଲେ । ସମ୍ରାଟ ଅଶୋକଙ୍କ ବ୍ୟତୀତ ସେ ବୌଦ୍ଧ ଧର୍ମର ଜଣେ ସବୁଠାରୁ ବଡ଼ ଧର୍ମ ପ୍ରବର୍ତ୍ତକ ବୋଲି ସ୍ୱୀକୃତ ମଧ୍ୟ ହୋଇଥିଲେ । ତାଙ୍କର ତତ୍ତ୍ୱାବଧାନରେ ନିର୍ମିତ ଭାରତର ସମ୍ବିଧାନ

ଓ ସେ ସମ୍ବନ୍ଧୀୟ ପ୍ରବଚନକୁ ପୃଥିବୀର ସର୍ବଶ୍ରେଷ୍ଠ ରାଜନୀତି ବିଶାରଦମାନେ ପୃଥିବୀର ସର୍ବଶ୍ରେଷ୍ଠ ସମ୍ବିଧାନ ବୋଲି ମତପ୍ରଦାନ କରିଥିଲେ । ଯଦିଓ ବ୍ରାହ୍ମଣ ପଣ୍ଡିତମାନେ ସେମାନଙ୍କର ଦୁଷ୍ଟବସିକ-ବ୍ୟଙ୍ଗୋକ୍ତିରେ ତାଙ୍କୁ "କଳିଯୁଗ ମନୁ" ଆଖ୍ୟା ଦେଇ ଅନ୍ତର୍ନିହିତ ବିଷୋଦ୍‌ଗାର କରିଥିଲେ, ମାତ୍ର ବାବାସାହେବ ଡକ୍ଟର ଆମ୍ବେଦକର ସେ ସବୁର ବହୁ ଊର୍ଦ୍ଧ୍ୱରେ ରହି ଭାରତୀୟ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ଏକ ମୌଳିକ ସଂସ୍କାର ଆଣି ଭାରତରେ ସର୍ବସମନ୍ୱୟ ସମ୍ପନ୍ନ ଏକ ସାର୍ବଭୌମ ଗଣତନ୍ତ୍ର ପ୍ରତିଷ୍ଠା କରିବା ପାଇଁ ଦିଗ୍‌ଦର୍ଶନ କରିଯାଇଛନ୍ତି । ତାହା ପ୍ରତ୍ୟେକ ଚିନ୍ତାଶୀଳ ନାଗରିକଙ୍କ ହୃଦୟରେ ଏକ ନୂତନ ଯୁଗର ସନ୍ଧାନ ଦେଇ ପାରିଛି । ସେ ଯୁଗର ପ୍ରତିଷ୍ଠିତ ଆଦର୍ଶକୁ ଆଜି ସାରା ବିଶ୍ୱର ଜନନାୟକଗଣ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛନ୍ତି ।

ଅସ୍ଥିମଜ୍ଜାଗତ ଭାବେ ଜଡ଼ିତ ହୋଇ ରହିଥିବା ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ବୈଷମ୍ୟକୁ ନେଇ ଭାରତ ଭୂମିରେ ଏକ ସାମ୍ୟବାଦୀ ଲୋକତନ୍ତ୍ର ଶାସନ ପ୍ରତିଷ୍ଠା କରିବା ଦେଶର ଜନନାୟକମାନଙ୍କ ପକ୍ଷରେ ଏକ ବିରାଟ ସମସ୍ୟା ହୋଇ ଛିଡ଼ା ହୋଇଥିଲା । ହିନ୍ଦୁ ବହୁଳ ଭାରତବର୍ଷରେ ଯେଉଁ ପ୍ରକାର ଆଚାର ବିଚାର ଓ ସଂସ୍କୃତି ହଜାର ହଜାର ବର୍ଷ ଧରି ରହିଆସିଛି ତାହାର ମଧ୍ୟରେ ଏ ଦେଶର ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ସଂଖ୍ୟା ଲଘୁ ଗୋଷ୍ଠୀ ନିକ୍ଷେପିତ ହୋଇ ଅଦ୍ୟାବଧି ପଙ୍ଗୁ, ଅଥର୍ବ ଓ କ୍ରୀତଦାସଠାରୁ ମଧ୍ୟ ଅଧିକ ହୀନ ଅବସ୍ଥାରେ ପଡ଼ି ରହିଛନ୍ତି । ହିନ୍ଦୁ ଶାସ୍ତ୍ରରେ ଏହି ନିକ୍ଷେପିତ ଶୂଦ୍ର ଗୋଷ୍ଠୀଙ୍କ ପାଇଁ ଯେଉଁଭଳି ନିଷ୍ଠୁରତମ ବ୍ୟବହାର କରାଯାଇଛି ତାହା ବିଜିତ-ଶତ୍ରୁମାନଙ୍କ ବିରୁଦ୍ଧରେ ନିଆଯାଉଥିବା ପ୍ରତିହିଂସାପୂର୍ଣ୍ଣ ବ୍ୟବସ୍ଥାଠାରୁ ମଧ୍ୟ ନିଷ୍ଠୁରତର । ଏହି ଆର୍ଯ୍ୟାବର୍ତ୍ତରେ ଆଚଣ୍ଡାଳ ବ୍ରାହ୍ମଣ ସମସ୍ତେ ଭ୍ରାତୃତ୍ୱର ବନ୍ଧନରେ ଜଡ଼ିତ ଓ ଏକ ଭାରତ ମାତାର ସନ୍ତାନ, ଏହା ଭୁଲିଯିବା ଅନୁଚିତ୍ । ଅର୍ଥନୀତି ଯଦି ସମ୍ପୂର୍ଣ୍ଣ ମୁଷ୍ଟିମେୟଙ୍କ ଦ୍ୱାରା ପରିଚାଳିତ ହୁଏ ତାହା ସମଗ୍ର ସମାଜ ପକ୍ଷରେ ମଙ୍ଗଳକର ହେବନାହିଁ । କରାୟତ୍ତ ଅର୍ଥନୀତି ଦ୍ୱାରା ସାମାଜିକ ବୈଷମ୍ୟ, ଅନ୍ଧବିଶ୍ୱାସ ଓ କୁସଂସ୍କାର ବୃଦ୍ଧି ଘଟେ ମାତ୍ର ବିଲୋପ ହୁଏନାହିଁ । ସେହି କାରଣରୁ ହିଁ ଦଳିତ ଶ୍ରେଣୀ ନାନାଦି ଅନ୍ଧବିଶ୍ୱାସ, ଅସ୍ପୃଶ୍ୟତା ପରି ଜଘନ୍ୟ ସାମାଜିକ ଅତ୍ୟାଚାର, ଶିକ୍ଷା ଓ ସଂସ୍କୃତିଗତ ବୌଦ୍ଧିକତାରେ ଜଡ଼ିତ ହୋଇ ଏକପ୍ରକାର ଜଡ଼ ଜୀବରେ ପରିଣତ ହୋଇଥିଲେ । ଉଚ୍ଚ ବର୍ଣ୍ଣର ହିନ୍ଦୁମାନେ ସମସ୍ତ ପ୍ରକାର ଅର୍ଥକାରୀ ସଂସ୍ଥାର ମାଲିକ ହୋଇ ବସିଲେ । ଫଳରେ ଦଳିତ ଶ୍ରେଣୀ ଅସ୍ପୃଶ୍ୟତାର

ତାଡ଼ନାରେ ସମସ୍ତ ପ୍ରକାର ଲାଭଜନକ ବେପାର ବାଣିଜ୍ୟରୁ ବଞ୍ଚିତ ରହିଲେ । ଅନ୍ଧବିଶ୍ୱାସରେ ଜଡ଼ିତ ରହି ଭୂମି ଓ ସ୍ୱର୍ଣ୍ଣାଦି ଅର୍ଥକାମ୍ୟ ଜାତିସ୍ୱ ସମ୍ପଦର ଅଧିକାରୀ ହୋଇ ପାରିଲେ ନାହିଁ । ଏପରିକି ଅଦୃଶ୍ୟ ଅନ୍ଧବିଶ୍ୱାସରେ ଆତଙ୍କିତ ହୋଇ ଲାଭଦାୟକ ବୃକ୍ଷ ନଡ଼ିଆ, ସେସବୁ ଫଳଗଛ ଲଗାଇ ଗଛର ଫଳ ମଧ୍ୟ ଖାଇବାକୁ ସାହସ କରୁନଥିଲେ । କେବଳମାତ୍ର ଶରୀର ଶ୍ରମ ଦ୍ୱାରା ଯେଉଁ ସର୍ବନିମ୍ନ ମଜୁରି ମିଳିଲା ତାହାହିଁ ହେଲା ଅବହେଳିତ ଦଳିତ ଜାତିର ଜୀବନ ଧାରଣର ଆର୍ଥିକ ମାନଦଣ୍ଡ ।

ଦେଶର ଶାସନ ପଦ୍ଧତି ପ୍ରତି ଦୃଷ୍ଟିପାତ କଲେ ଦେଖାଯାଏ ଯେ ସୁଦୂର ଅତୀତରୁ ହିଁ ଦେଶର ଶାସନ ଡୋର ସେହି ଉଚ୍ଚବର୍ଣ୍ଣ ହିନ୍ଦୁମାନଙ୍କ ହାତରେ ରହି ଆସିଅଛି । ରାଜତନ୍ତ୍ର ଶାସନର ଅବସାନ ପରେ ଏ ଦଳିତ ଜାତି ବିଦେଶୀ ଇଂରେଜ ଶାସକଙ୍କ କାଳରେ ହୁଏତ ଶାସନ କ୍ଷେତ୍ରରେ ଯୋଗ୍ୟତା ଅନୁଯାୟୀ କିଛି ନା କିଛି ସ୍ଥାନ ପାଇବେ ବୋଲି ଆଶା ପୋଷଣ କରିଥିଲେ । ମାତ୍ର ସେମାନଙ୍କର ଆଶା ନିରାଶାର ଅନ୍ଧକାର ମଧ୍ୟରେ ଲୀନ ହୋଇଗଲା । ଏତାଦୃଶ ପୂତିଗନ୍ଧମୟ ସାମାଜିକ ଅର୍ଥନୈତିକ ଓ ସାଂସ୍କୃତିକ ନୀତିର ନିରାଶା ଅନ୍ଧକାର ମଧ୍ୟରେ ସମଗ୍ର ଦଳିତ ଶ୍ରେଣୀ ଆର୍ତ୍ତନାଦ କରିବା ବ୍ୟତୀତ ଅନ୍ୟ କୌଣସି ଉପାୟ ପାଇନଥିଲା ।

ମାତ୍ର ଏହି ଆର୍ତ୍ତନାଦର କରୁଣ କ୍ରନ୍ଦନ ଧ୍ୱନି କର୍ମବୀର, ବାବାସାହେବ ଡକ୍ଟର ଭୀମ ରାଓ ଆମ୍ବେଦକରଙ୍କ ହୃଦୟ ଗହ୍ୱରରେ ନିନାଦିତ ହେଲା । ସେହି ଆର୍ତ୍ତନାଦ ଯେତେବେଳେ ବାବାସାହେବଙ୍କ ହୃଦୟ କନ୍ଦରରୁ ଓଜସ୍ୱିନୀ ବକ୍ତୃତା ଓ ମାନବିକ ଯୁକ୍ତିସମ୍ପନ୍ନ ବ୍ୟାଖ୍ୟାନମାଳା ଆକାରରେ ପ୍ରତିଧ୍ୱନିତ ହେଲା ତାହା ସାରା ବିଶ୍ୱକୁ ବିସ୍ମୟାଭିଭୂତ କରିପକାଇଲା । ଭାରତର ତୁଙ୍ଗ ସ୍ୱାଧୀନତା ସଂଗ୍ରାମୀ ଜାତୀୟତାବାଦୀ ନେତାମାନଙ୍କୁ ବିଚଳିତ କରିଦେଇଥିଲା । ସେହି ପ୍ରତିଧ୍ୱନିର ବହ୍ନିର ଜ୍ୱଳିଲା ଇଂଲଣ୍ଡର ଗୋଲଟେବୁଲ ବୈଠକରେ । ବାବା ସାହେବ ଗୁରୁଗମ୍ଭୀର ଧ୍ୱନିରେ ସର୍ବପ୍ରଥମେ ଉପସ୍ଥାପନ କଲେ "ସ୍ୱାଧୀନ ଭାରତରେ ଦଳିତଶ୍ରେଣୀଙ୍କର ରାଜନୈତିକ ଅଧିକାର" । ଦ୍ୱିତୀୟରେ ଉପସ୍ଥାପନ କଲେ "ଭାରତ ସମ୍ବିଧାନରେ ଦଳିତ ଶ୍ରେଣୀର ଶାସନ ଅଧିକାର" । ସର୍ବଶେଷରେ ଉପସ୍ଥାପନ କଲେ "ସୈନ୍ୟ ବିଭାଗରେ ଦଳିତଶ୍ରେଣୀଙ୍କର ନିଯୁକ୍ତି" । କେବଳ ସେତିକି ନୁହେଁ, ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସେ ପ୍ରତିଧ୍ୱନିର ଜବାବ, ପ୍ରତ୍ୟେକ ଦଳିତ ଜନତାର ହୃଦୟରେ ନିନାଦିତ ହୋଇ-ଉଠିଲା ଓ ଦେଖାଦେଲା ଦଳିତ ଶ୍ରେଣୀର ମୁକ୍ତି ଆଶାର ଆଲୋକ । ବାବା ସାହେବ

ସମସ୍ତ ଦଳିତ ଜାତିକୁ ଡାକରା ଦେଲେ 'ଏକତ୍ରିତ ହୁଅ' 'ଜ୍ଞାନ ଅର୍ଜନ କର' ଓ ନିଜ ମାନବୀୟ ଅଧିକାର ପାଇଁ ଆନ୍ଦୋଳନ କର । ସେ ସୁସ୍ପଷ୍ଟ ଭାବରେ ଆହ୍ୱାନ ଦେଲେ ଭାରତ ସ୍ୱାଧୀନତା ଲାଭକରିବାର ଅବ୍ୟବହିତ ପୂର୍ବରୁ ମୁସଲମାନମାନେ ଯେଉଁଭଳି ଜିନ୍ନାଙ୍କ ନେତୃତ୍ୱରେ ପାକିସ୍ତାନ ଦାବୀକଲେ ଠିକ୍ ସେହିପରି ଦଳିତ ଜାତିମାନଙ୍କ ପାଇଁ 'ଅଚ୍ଛୁତ ସ୍ଥାନ' ଗଠିତ ହେଉ । ତାଙ୍କର ଏ ଆହ୍ୱାନରେ ସମଗ୍ର ଭାରତ ବିଚଳିତ ହୋଇପଡ଼ିଲା । ମହାତ୍ମାଗାନ୍ଧୀ ଏ ଆହ୍ୱାନକୁ ଏଡାଇ ଦେଇ ଅଖଣ୍ଡ ଭାରତବର୍ଷ ଗଠନ ପାଇଁ ଆମରଣ ଅନଶନ ଆରମ୍ଭକଲେ । ସର୍ବଶେଷରେ ଦଳିତ ଶ୍ରେଣୀଙ୍କୁ ସେମାନଙ୍କର ନ୍ୟାଯ୍ୟ ଅଧିକାର ଦିଆଯିବା ପାଇଁ ପୁନାଠାରେ ଏକ ସମ୍ମିଳନୀ ବସିଲା । ଆମ୍ବେଦକରଙ୍କ ଅକ୍ଲାନ୍ତ ଯୁକ୍ତି ଯୋଗୁଁ ଦଳିତ ଶ୍ରେଣୀର ମାନବିକ ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ସର୍ବଶେଷରେ ପୁନା ପ୍ୟାକ୍ଟ ସ୍ୱାକ୍ଷରିତ ହୋଇ, ପାକିସ୍ଥାନକୁ ବାଦ ଦେଇ ଅଖଣ୍ଡ ଭାରତର ପୂର୍ବ ଢଗରେ ସମାଜବାଦୀ ଗଣତାନ୍ତ୍ରିକ ଶାସନ ପଦ୍ଧତିର ନୂତନ ସୂର୍ଯ୍ୟ ଦେଖାଦେଲା । ସର୍ବସମ୍ମତିକ୍ରମେ ଡକ୍ଟର ଆମ୍ବେଦକରଙ୍କ ହାତରେ ଭାରତର ସମ୍ବିଧାନ ପ୍ରଣୟନର ଦାୟିତ୍ୱ ଅର୍ପଣ କରାଗଲା । ସମସ୍ତ ଭାରତବର୍ଷରେ ଚିର ଅବହେଳିତ ଦଳିତ ଜାତିକୁ ସେମାନଙ୍କର ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଓ ରାଜନୈତିକ ନ୍ୟାଯ୍ୟାଧିକାରକୁ ଆଖି ଆଗରେ ରଖି ତାଙ୍କର ପୃଷ୍ଠପୋଷକତାରେ ଯେଉଁ ସମ୍ବିଧାନ ପ୍ରଣୟନ କରାଗଲା ତାହା ହଜାର ହଜାର ବର୍ଷ ଧରି ଚାଲିଆସୁଥିବା ରୁଢ଼ିମନ୍ତ୍ର ଯୁଗକୁ ଏକ ନୂତନ ସାମ୍ୟ, ଶାନ୍ତି ଓ ମୈତ୍ରୀ ଯୁଗର ସନ୍ଧାନ ଦେଇ ପାରିଲା । ଏହି ନୂତନ ଯୁଗର ସ୍ରଷ୍ଟା ଆମ୍ବେଦକରଙ୍କର ଏହି ଅମର କୀର୍ତ୍ତି ଚିରଦିନ ପାଇଁ ମାନବ ସମାଜକୁ ଦିଗ୍‌ଦର୍ଶନ କରୁଥିବ ।

# ବାବାସାହେବଙ୍କ ଜୀବନ ସଂଗ୍ରାମ

ଊନବିଂଶ ଶତାବ୍ଦୀର ଶେଷଭାଗ । ସେତେବେଳେ ଭାରତବର୍ଷରେ ହିନ୍ଦୁ ଧର୍ମ ମଧ୍ୟରେ ଉଚ୍ଚ ବର୍ଣ୍ଣ ହିନ୍ଦୁମାନଙ୍କର ନୀଚ ବର୍ଣ୍ଣମାନଙ୍କ ଉପରେ ଅଖଣ୍ଡ ଆଧିପତ୍ୟ । ଅସ୍ପୃଶ୍ୟତା ଅସ୍ଥି ମଜ୍ଜାଗତ । ବ୍ରାହ୍ମଣ ପ୍ରାଧାନ୍ୟ ସମାଜରେ ଅସ୍ପୃଶ୍ୟମାନଙ୍କ ସ୍ଥିତି ଅତି ଦୟନୀୟ ସ୍ତରେ ସବୁଠାରୁ ତଳେ । ସେମାନଙ୍କ ପାଇଁ ଦେବତା ମନ୍ଦିରର ଦ୍ୱାର ରୁଦ୍ଧ, ଯଦିଓ ସେମାନେ ହିନ୍ଦୁ ଓ ସେହି ଦେବତାଙ୍କୁ ପୂଜା କରନ୍ତି । କୂଅ ପୋଖରୀର ଜଳ ସ୍ପର୍ଶ କରିବା ନିଷେଧ । ସବର୍ଣ୍ଣଙ୍କ ଠାରୁ ସେମାନଙ୍କ ସ୍ଥାନ ବହୁ ଦୂରରେ । ସେମାନଙ୍କ ବସବାସ ଗ୍ରାମର ଅପବିତ୍ର ପରିତ୍ୟକ୍ତ ଅସ୍ୱାସ୍ଥ୍ୟକର ସ୍ଥାନରେ । ଶିକ୍ଷା ସଂସ୍କୃତିର ପରିଚର୍ଯ୍ୟା ସେମାନଙ୍କ ପାଇଁ ନୁହେଁ । କୁକୁର ବିରାଡ଼ି ପଶୁ ହେଲେ ମଧ୍ୟ ସେମାନେ ସ୍ପୃଶ୍ୟ । ଖ୍ରୀଷ୍ଟିଆନ୍, ମୁସଲମାନ ଆଦି ଅନ୍ୟ ଧର୍ମର ଲୋକ ହେଲେ ମଧ୍ୟ ସେମାନେ ସ୍ପୃଶ୍ୟ । ମାତ୍ର ଏକ ଦେବତାର ଉପାସକ, ଏକ ଧର୍ମର ଅନ୍ତର୍ଭୁକ୍ତ ହେଲେ ମଧ୍ୟ ସେମାନେ ଅସ୍ପୃଶ୍ୟ ।

ଯେଉଁ ହିନ୍ଦୁ ସମାଜର ବୈଦିକ ଯୁଗରେ କୌଣସି ଜାତି ପ୍ରଥା ନଥିଲା, ଯେଉଁ ହିନ୍ଦୁ ସମାଜରେ ଦିନେ ବୁଦ୍ଧ, ରାମାନୁଜ, ବାମଦେବେଶ୍ୱର, ରାମାନନ୍ଦ, କବୀର, ଚୈତନ୍ୟ, ଏକନାଥ, ତୁକାରାମ ଓ ରାଜା ରାମମୋହନ ରାଏ ଆଦି ଜନ୍ମ ଗ୍ରହଣ କରି ଏହି ଜଘନ୍ୟ ଜାତିପ୍ରଥା ଓ ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱରୋତ୍ତୋଳନ କରିଥିଲେ ସେହି ହିନ୍ଦୁ ସମାଜର ଏତାଦୃଶ କୁତ୍ସିତ ଓ ବିକଳାଙ୍ଗ ରୂପ ସେମାନଙ୍କର ସମସ୍ତ ପ୍ରଚେଷ୍ଟା, ସମସ୍ତ ଉପଦେଶକୁ ଆଜି ବିଫଳତାରେ ପରିଣତ କରିଛି । ସେମାନେ ମୁକ୍ତ କଣ୍ଠରେ ପ୍ରଚାର କରିଯାଇଥିଲେ, ସମସ୍ତେ ଈଶ୍ୱରଙ୍କର ସନ୍ତାନ, ସେହି ଈଶ୍ୱରଙ୍କ ନିକଟରେ କେହି ଉଚ୍ଚ ବା ନୀଚ ନୁହଁନ୍ତି । ସେ ସମସ୍ତ ବାଣୀ ନିରର୍ଥକ ହୋଇଯାଇଛି । ସାମାଜିକ କୂଟଚକ୍ରାନ୍ତରେ ଗୋଟିଏ ନିରୀହ ଗୋଷ୍ଠୀ, ଅସ୍ପୃଶ୍ୟତା, ଅଜ୍ଞତା ଓ ଅନ୍ଧବିଶ୍ୱାସର ବିଷଜାଲରେ ପଡ଼ି, ଅଥର୍ବ ଓ ଅଚେତନ ହୋଇ ପଡ଼ିଅଛି ।

ଠିକ୍ ଏହି ସମୟରେ ମହାରାଷ୍ଟ୍ରର ରତ୍ନଗିରି ଜିଲାରେ ଆମ୍ବାଦାବେ ଗ୍ରାମରେ ୧୮୯୧ ମସିହା ଏପ୍ରିଲ ୧୪ ତାରିଖରେ ଏକ ମାହାର ପରିବାରରେ ଜନ୍ମ ଗ୍ରହଣ କଲେ, 'ବାବାସାହେବ ଡ଼କ୍ଟର ଭୀମରାଓ ରାମଜୀ ଆମ୍ବେଦକର । ତାଙ୍କର ପିତା ରାମଜୀ ସକପାଲ ସନ୍ଥ କବୀରଙ୍କର ଶିଷ୍ୟ ଥିଲେ ଓ ଈଶ୍ୱରଙ୍କ ପ୍ରତି ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ରାମଜୀ ସକପାଲ କୌଣସି ଜାତି ବା ଧର୍ମ ଭେଦରେ ବିଶ୍ୱାସ କରୁ-ନଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଯେଉଁମାନେ ହରି ଭଜନ କରନ୍ତି ସେମାନେ ଈଶ୍ୱରଙ୍କ ସତ୍ତା ଅନୁଭବ କରି ପାରନ୍ତି । ଆମ୍ବେଦକରଙ୍କର ଜନ୍ମ ବିଷୟରେ ଗୋଟିଏ ଗଳ୍ପ ଅଛି । ରାମଜୀ ସକପାଲଙ୍କ କକା ଜଣେ ସନ୍ୟାସୀ ଥିଲେ । ସେ ଥରେ ସକପାଲଙ୍କୁ ଡାକି କହିଲେ—ତୁମର ଗୋଟିଏ ପୁଅ ଜନ୍ମ ହେବ । ସେ ପୃଥିବୀର ଜଣେ ପ୍ରସିଦ୍ଧ ଲୋକ ହୋଇ ପାରିବ । ଠିକ୍ କିଛି ଦିନ ପରେ ଭୀମରାଓ ଆମ୍ବେଦକର ତାଙ୍କ ପିତା-ମାତାଙ୍କର ଚତୁର୍ଦ୍ଦଶ ସନ୍ତାନ ରୂପେ ଜନ୍ମ ଗ୍ରହଣ କଲେ । ତାଙ୍କ ଜନ୍ମ ହେବାର ପାଞ୍ଚ ବର୍ଷ ପରେ ମାଆ ଦେହତ୍ୟାଗ କରିଥିଲେ ।

ଯେତେବେଳେ ଆମ୍ବେଦକର ଅବୋଧ ଶିଶୁ, ବିଦ୍ୟାଳୟରେ ପାଠ ପଢ଼ା ଆରମ୍ଭ କରିବାକୁ ଯାଉଥିଲେ, ସେହି ସମୟରେ ସେ ଅସ୍ପୃଶ୍ୟତାର ମର୍ମଭେଦୀ ଲାଞ୍ଛନାର ଶିକାର ହୋଇଥିଲେ । ସେ ଅନ୍ୟ ପିଲାଙ୍କ ସହିତ ଶ୍ରେଣୀରେ ବସି ପାରୁ-ନଥିଲେ । ଅନ୍ୟ କେହି ପାଣି ଢାଳିଦେଲେ ସେ ଗୋଟାଏ ହାତ, ପାଟି ପାଖରେ ଧରି ପାଣି ପିଉଥିଲେ । ଥରେ ଭୀମରାଓ ସ୍କୁଲରେ ପଢୁଥିବା ବେଳେ, ଗୃହକଷ୍ଟ କ୍ଷେତ୍ରରେ ଥିବା ତାଙ୍କର ବାପାଙ୍କୁ ଦେଖିବା ପାଇଁ ବଡ଼ଭାଇଙ୍କ ସହିତ ଯାଉଥିଲେ । ସେମାନେ ମସୁର ରେଳଷ୍ଟେସନରେ ଓହ୍ଲାଇ ଗୋଟିଏ ଗୋରୁ ଗାଡ଼ି ଭଡ଼ା କଲେ । ସେମାନେ କିଛି ବାଟ ଯିବା ପରେ ଗାଡ଼ିଆଳଟି ଜାଣିବାକୁ ପାଇଲା ଯେ ସେମାନେ ମାହାର ଜାତିର ପିଲା ଅଟନ୍ତି । ସେ ସଙ୍ଗେ ସଙ୍ଗେ ଗାଡ଼ିରୁ ଓହ୍ଲାଇପଡ଼ି ତାର ଗୋଟିଏ ମୁଣ୍ଡରୁ ଏପରି ପେଲି ଦେଲା ଯେ ପିଲା ଦୁଇଟି ଛିଟିକି ହୋଇ ତଳେ ପଡ଼ିଲେ । ଗାଡ଼ିଆଳଟି ଚିତ୍କାର କରି ମନଇଚ୍ଛା ଗାଳିଦେଲା । ସେତେବେଳେ ଉଦୁଉଦିଆ ଖରାବେଳ । ପିଲା ଦୁଇଟି ଖୁବ୍ ତୃଷାର୍ତ୍ତ ହୋଇ ପଡ଼ିଥିଲେ । ଘଣ୍ଟା ଘଣ୍ଟା ଧରି ପିଲା ଦୁଇଟି ପାଣି ଟୋପେ ପାଇଁ ଆଖପାଖରେ ଥିବା ଲୋକମାନଙ୍କୁ ଅନୁରୋଧ କରିଥିଲେ ମଧ୍ୟ କେହି ହେଲେ ପାଣି ଟୋପେ ଦେଉନଥିଲେ । ପାଣି ଦେବା ତ ଦୂରର କଥା, ଲୋକମାନେ ପାଖରେ ଥିବା କୂଅ ଓ ପୋଖରୀର ପାଖକୁ ମଧ୍ୟ ଛାଡ଼ୁ-ନଥିଲେ ।

କିଛିଦିନ ପରେ, ଆଉ ଦିନେ ଭୀମରାଓ ଅତି ତୃଷାର୍ତ୍ତ ହୋଇ ଗୋଟିଏ କୂଅରୁ ପାଣି କାଢ଼ି ପିଇଲେ । ଦୁର୍ଭାଗ୍ୟକୁ କେହି ଜଣେ ଏହା ଦେଖି ପକାଇଲା । ସଙ୍ଗେ ସଙ୍ଗେ ଆଖପାଖର ଲୋକେ ତାଙ୍କୁ ଘେରି ଗଲେ । ନାନା କୁଭାଷାରେ ଗାଳି ଦେବା ସଙ୍ଗେ ସଙ୍ଗେ ନିର୍ମମ ଭାବରେ ପ୍ରହାର କରିବାକୁ ଛାଡ଼ିଲେ ନାହିଁ । ଏହା ଛଡ଼ା ଭୀମରାଓ ନିଜେ ନିଜର ବାଳ କାଟୁଥିଲେ । ଯେଉଁ ବାରିକମାନେ ମଇଁଷି ଓ ଘୋଡ଼ାଙ୍କ ବାଳ କାଟି ସାଇଜ୍ କରନ୍ତି, ସେମାନେ ମଧ୍ୟ ତାଙ୍କ ବାଳ କାଟି ଦେଉ-ନଥିଲେ । ଦିନେ ଭୀମରାଓ ସ୍କୁଲ ଯାଉଥିବା ବେଳେ ବହୁତ ବର୍ଷା ହେଲା । ସେ ବର୍ଷାରୁ ରକ୍ଷାପାଇବା ପାଇଁ ଜଣଙ୍କ ଘରର କାନ୍ଥ କଡ଼ରେ ଟିକେ ଆଶ୍ରୟ ନେଲେ । ମାତ୍ର ସେ ଘରର ମାଲିକାଣି ଏହା ଦେଖି ବହୁତ ରାଗିଗଲେ ଓ ତାଙ୍କୁ ଅକଥ୍ୟ ଭାଷାରେ ଗାଳିଦେଲେ ଓ ତାଙ୍କୁ ସେହି ବର୍ଷାପାଣି କାଦୁଅରେ ବୁଡ଼ିଥିବା ଦାଣ୍ଡକୁ ଠେଲି-ଦେଲେ । ଆମ୍ବେଦକର କଚଡ଼ା ହୋଇ ପଡ଼ିବାରୁ ତାଙ୍କର ବହି ଖାତା ଓ ପୋଷାକପତ୍ର ସବୁ ତିନ୍ତି ଜୁବୁଜୁବୁ ହୋଇଗଲା । ବାଲ୍ୟକାଳରୁ ଆମ୍ବେଦକର ଏହିପରିଭାବରେ ବାରମ୍ବାର ଲାଞ୍ଛିତ ଅପମାନିତ ହୋଇ ବିଚଳିତ ହୋଇପଡ଼ିଥିଲେ । ଏହିସବୁ ନିର୍ଯ୍ୟାତନାର ତିକ୍ତତା ମଧ୍ୟରେ ତାଙ୍କର ଶିଶୁମନ ଏକ ସୁପ୍ତ ଆଗ୍ନେୟ ଗିରିରେ ପରିଣତ ହୋଇଗଲା । ବାଳକ ଆମ୍ବେଦକର ଜାଣିପାରି ନଥିଲେ କାହିଁକି ତାଙ୍କ ପ୍ରତି ଏପରି ନିର୍ମମ ବ୍ୟବହାର କରୁଅଛନ୍ତି । ଭଲଭାବରେ ଜାଣିଥିଲେ ଯେ ସେ କୌଣସି ପାପ ବା ଅନ୍ୟାୟ କରିନାହାଁନ୍ତି । ତାଙ୍କର ଏକମାତ୍ର ଦୋଷ ହେଲା, ସେ ମାହାର ଜାତିରେ ଜନ୍ମଗ୍ରହଣ କରିଛନ୍ତି । ଅନ୍ୟ ହିନ୍ଦୁମାନଙ୍କର ଏହା ବିଶ୍ୱାସ, ଯେ ଏହା ଏକ ଶ୍ରେଷ୍ଠ ଜାତି ଏବଂ ଏ ଜାତିରେ ଯେଉଁମାନେ ଜନ୍ମଗ୍ରହଣ କରିଛନ୍ତି ସେମାନଙ୍କୁ ଅନ୍ୟ ଜାତିର ଲୋକେ ଛୁଇଁବେ ନାହିଁ । ମାହାରମାନଙ୍କ ପରି ଆଉ କେତେକ ଜାତି ମଧ୍ୟ ଅଛନ୍ତି ଯେଉଁମାନେ ହଜାର ହଜାର ବର୍ଷଧରି ସାମାଜିକ ନ୍ୟାୟରୁ ବଞ୍ଚିତ ହୋଇ ଆସୁଛନ୍ତି ।

ଏହି ଅପମାନଜନକ ଲାଞ୍ଛନା ଆମ୍ବେଦକରଙ୍କ କୋମଳ ଶିଶୁ ମନରେ ଗଭୀର ରେଖାପାତ କରିଥିଲା । ସେ ସେହି କାଳରୁ ହିଁ ଅନୁଭବକଲେ ହିନ୍ଦୁ ଧର୍ମ ମଧ୍ୟରେ ଏହି ଅସ୍ପୃଶ୍ୟତା ଏକ ସାମାଜିକ କଳଙ୍କ । ଏହି କଳଙ୍କକୁ ଦୂର କରିବା ପାଇଁ ଦୃଢ଼ ପ୍ରତିଜ୍ଞାବଦ୍ଧ ହେଲେ । ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ମାହାର ଜାତିର ଐତିହ୍ୟ ଓ ପରମ୍ପରାଗତ ନିଷ୍ଠା । ଏହି କାରଣରୁ ହିଁ ଆମ୍ବେଦକରଙ୍କ ପିତା ସକପାଲ ତତ୍କାଳୀନ ସୈନ୍ୟ ବିଭାଗରେ ଯୋଗ ଦେଇଥିଲେ । ଆମ୍ବେଦକରଙ୍କର ବାଲ୍ୟାବସ୍ଥାରୁ ହିଁ

ତାଙ୍କର ଏତାଦୃଶ ଦୃଢ଼ ମନୋଭାବର ସୂଚନା ମିଳିଥିଲା । ଥରେ ପ୍ରବଳ ବର୍ଷା ହେଉଥାଏ । ବାଳକ ଆମ୍ବେଦକର ବିଦ୍ୟାଳୟକୁ ଯିବା ପାଇଁ ବାହାରିପଡ଼ିଲେ । ତାଙ୍କର ସାଙ୍ଗମାନେ ଘୋର ବର୍ଷା ମଧ୍ୟରେ ବିଦ୍ୟାଳୟକୁ ନଯିବାପାଇଁ ପ୍ରବର୍ତ୍ତାଇଲେ କିନ୍ତୁ ଆମ୍ବେଦକର ତାଙ୍କର ଦୃଢ଼ ସିଦ୍ଧାନ୍ତରୁ ନିବର୍ତ୍ତିଲେ ନାହିଁ । ଆମ୍ବେଦକର ବିନା ଛତାରେ ସେଦିନ ବିଦ୍ୟାଳୟକୁ ଯାଇଥିଲେ ।

ବିଦ୍ୟାଳୟରେ ଆମ୍ବେଦକର ଜଣେ ମେଧାବୀ ଛାତ୍ର ଥିଲେ । ଜଣେ ବ୍ରାହ୍ମଣ ଶିକ୍ଷକ ଆମ୍ବେଦକରଙ୍କର ସତେଜ ଓ ସୂକ୍ଷ୍ମ ସ୍ମରଣଶକ୍ତିର ପରିଚୟ ପାଇ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ତାଙ୍କର ପାରିବାରିକ ନାମ ଆମ୍ବେଦେକର ଥିଲା । ଶିକ୍ଷକ ମହାଶୟ ଆମ୍ବେଦକରଙ୍କୁ ଏତେ ଭଲପାଉଥିଲେ ଯେ ସେ ତାଙ୍କର ନାମକୁ ଆମ୍ବେଦେକର ପରିବର୍ତ୍ତେ ଆମ୍ବେଦକର ବୋଲି ନାମିତ କରିଥିଲେ । ଆମ୍ବେଦକରଙ୍କ ପିତା ଯେତେବେଳେ ଦ୍ୱିତୀୟ ବିବାହ କଲେ ସେତେବେଳେ ତାଙ୍କ ମନରେ ଏକ ପରିବର୍ତ୍ତନ ଦେଖାଦେଲା । ସେ ସ୍ଥିରକଲେ ଯେ ଏହା ହେଉଛି ଏକ ମାତ୍ର ପନ୍ଥା ସ୍ୱାବଲମ୍ବନଶୀଳ ହୋଇ ଭଲଭାବରେ ପାଠ ପଢ଼ିବା । ତାଙ୍କ ମନରେ ଦେଖାଗଲା ସେ କାହିଁକି ବମ୍ବେ ଯାଇ ପାଠ ପଢ଼ି ନପାରିବେ ? ଏଥିପାଇଁ ତାଙ୍କର ରେଳ ଖର୍ଚ୍ଚ ଯୋଗାଡ଼ କରିବାକୁ ଟଙ୍କା ଦରକାର । ସେ ଧନ ଜନ ଧରି ବିଭିନ୍ନ ସୂତ୍ରରୁ ଚେଷ୍ଟା କରି ବିଫଳ ହେଲେ । ଶେଷରେ ତାଙ୍କ ନାନୀଙ୍କ ପକେଟରୁ ଚୋରି କରିବାକୁ ସ୍ଥିର କଲେ । ତାଙ୍କ ପକେଟରୁ ମାତ୍ର ୩ଟି ପଇସା ପାଇଲେ । ତା ପରେ ସେ ଖୁବ୍ ଲଜ୍ଜିତ ହେଲେ ଓ ଏଥିପାଇଁ ଗଭୀର ଅନୁତାପ କଲେ ।

ସେ ସ୍ଥିରକଲେ ଯେତେ ଦୁଃଖ କଷ୍ଟ ଆସୁନା କାହିଁକି ସେ ନିଜ ଗୋଡ଼ରେ ଛିଡ଼ା ହେବାପାଇଁ ଆପ୍ରାଣ ଚେଷ୍ଟା କରିବେ । ସବୁ ଶେଷରେ ସେ ବମ୍ବେର ଇଲଫିନ୍ ଷ୍ଟୋନ୍ ହାଇସ୍କୁଲରେ ଯୋଗଦେଲେ । ବମ୍ବେରେ ତାଙ୍କର ରହିବା ପାଇଁ ଖଣ୍ଡିଏ ଘର ଯୋଗାଡ଼ କରିବା ଗୋଟିଏ ସମସ୍ୟା ହୋଇ ଛିଡ଼ା ହେଲା । ବହୁ ଖୋଜାଖୋଜି ପରେ ତାଙ୍କୁ ଖଣ୍ଡିଏ ଘର, ଯେଉଁ ଅଞ୍ଚଳରେ ଅତି ଦରିଦ୍ର ଲୋକ ବାସକରନ୍ତି ସେହି ଅଞ୍ଚଳରେ ପାଇଲେ । ସେହି ଘରଟି ସମ୍ପୂର୍ଣ୍ଣ ଗୋଟିଏ ଲୋକ ଶୋଇବା ପାଇଁ ଯଥେଷ୍ଟ ନଥିଲା । ତାଙ୍କର ମୁଣ୍ଡ ପାଖରେ ଗୋଟିଏ ଇଟା, ଅଟାପେଷା ଚକି ଓ ଗୋଡ଼ ପାଖରେ ଗୋଟିଏ ଛେଳି ବନ୍ଧାହୁଏ । ତାଙ୍କର ବାପା ରାତି ଦୁଇଟା ପର୍ଯ୍ୟନ୍ତ ନଶୋଇ ରହିଥାଆନ୍ତି । ସେ ତାପରେ ଶୋଇପଡ଼ନ୍ତି ଓ ଭୀମରାଓ ଗୋଟିଏ

କଟ୍ରେସିକ ଉବ୍ବ ଆଗରେ ରଖି ପଢ଼ିବସନ୍ତି । ହାଇସ୍କୁଲ୍ ସ୍ତରରେ ସେ ଗୋଟିଏ ମର୍ମମ ଆଘାତ ପାଇଥିଲେ । ତାଙ୍କୁ ସଂସ୍କୃତ ପଢ଼ିବାକୁ ଦିଆଯାଉ ନଥିଲା । ଅନ୍ୟ ହିନ୍ଦୁ ଜାତିର ଛାତ୍ରମାନେ କିନ୍ତୁ ସଂସ୍କୃତ ପଢ଼ୁଥିଲେ । ଏପରିକି ସେମାନଙ୍କୁ ବେଦ ଅଧ୍ୟୟନ କରିବାକୁ ମଧ୍ୟ ସୁବିଧା ଦିଆ ଯାଉଥିଲା । ଏତାଦୃଶ ପକ୍ଷପାତ ମଧ୍ୟ ଅଧ୍ୟୟନ ଆମ୍ବେଦକରଙ୍କ ମନରେ ତିକ୍ତତା ସୃଷ୍ଟି କରିଥିଲା । ସେ ତାଙ୍କ ଜୀବନକାଳ ମଧ୍ୟରେ ସଂସ୍କୃତ ଅଧ୍ୟୟନ କରି, ସେହି ଭାଷାରେ ପାଣ୍ଡିତ୍ୟ ଲାଭ କରିବାକୁ ଦୃଢ଼ ସଙ୍କଳ୍ପବଦ୍ଧ ହେଲେ ଓ ପରିଶେଷରେ ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିବାକୁ ସକ୍ଷମ ହୋଇପାରିଥିଲେ ।

ଆମ୍ବେଦକର ୧୭ ବର୍ଷ ବୟସରେ ମାଟ୍ରିକ ପାସ୍ କଲେ । ବାପ୍ପିକୁହାଙ୍କର ଗୋଟିଏ ଛୁମୁଝିଆ ତଳେ ତାଙ୍କର ବିବାହ ରମାବାଈଙ୍କ ସହିତ ଅନୁଷ୍ଠିତ ହୋଇ-ପାରିଥିଲା । ଆମ୍ବେଦକର ଇଲ୍‌ଫିନଷ୍ଟୋନ କଲେଜରୁ ଇଣ୍ଟରମିଡ଼ିଏଟ୍ ପରୀକ୍ଷାରେ ପାସକଲେ ଓ ୧୯୧୨ ମସିହାରେ ବି. ଏ. ଡିଗ୍ରୀ ପାଇଲେ । ଆମ୍ବେଦକରଙ୍କ ପିତାଙ୍କର ଠିକ୍ ତାର ପରବର୍ଷ ୧୯୧୩ ମସିହାରେ ଦେହାନ୍ତ ହୋଇଗଲା । ସେତେବେଳକୁ ଆମ୍ବେଦକର ମହାରାଜା ବରୋଦାଙ୍କ ଅଧୀନରେ ଚାକିରୀ ଆରମ୍ଭ କରିଥିଲେ ।

ଏହାପରେ ଆମ୍ବେଦକରଙ୍କ ଜୀବନ ସଂଗ୍ରାମର ପ୍ରଥମ ଅଧ୍ୟାୟ ଅତିବାହିତ ହୋଇ ଦ୍ୱିତୀୟ ଅଧ୍ୟାୟର ସୂତ୍ରପାତ ହେଲା । ମହାରାଜା ବରୋଦା ତାଙ୍କୁ ଉଚ୍ଚଶିକ୍ଷା ପାଇଁ ଆମେରିକାକୁ ପଠାଇଲେ । ଆମେରିକାରେ ଆମ୍ବେଦକର ନୂତନ ଜୀବନର ସନ୍ଧାନ ପାଇଲେ । ତାହା ହେଉଛି ସେଠାରେ ଅସ୍ପୃଶ୍ୟତା ନାହିଁ । ଏହି ପାରି-ପାର୍ଶ୍ୱିକ ଅବସ୍ଥା ମଧ୍ୟରେ ଆମ୍ବେଦକର ତାଙ୍କର ଜଣେ ସାଥୀଙ୍କ ପାଖକୁ ପ୍ରଖ୍ୟାତ ନାଟ୍ୟକାର ସେକ୍ସପିଅରଙ୍କର ଗୋଟିଏ ମନ୍ତ୍ର ଉଦ୍ଧାର କରି ଲେଖିଥିଲେ "ମଣିଷ ଜୀବନରେ କେତେବେଳେ କେମିତି ଗୋଟିଏ ସୁଉଚ୍ଚ ତରଙ୍ଗ ସୃଷ୍ଟି ହୁଏ । ଯଦି ଜଣେ ସେହି ସୁଯୋଗର ସଦ୍‌ବ୍ୟବହାର କରିପାରେ ତାହାହେଲେ ତାହା ତାକୁ ତାର ଚରମ ସୌଭାଗ୍ୟ ଦିଗକୁ ନେଇଯାଏ ।" ଆମ୍ବେଦକର ଗୋଟିଏ ଖୁବ ଜ୍ଞାନଗର୍ଭକ ସନ୍ଦର୍ଭ ଲେଖି ପି: ଏଚ୍: ଡ଼ି: ଉପାଧି ପାଇଲେ । ସେ ୨୧-୮-୧୯୧୭ ମସିହାରେ ଭାରତକୁ ଫେରିଲେ । ଆମ୍ବେଦକରଙ୍କ ଧାରାବାହିକ ଶିକ୍ଷା ମଧ୍ୟରୁ ଏକ ଜାଣିବାର କଥା ହେଉଛି, ସେ ଭାରତରେ ହିଁ ଇଂରାଜୀ ଓ ପରସିଆନ୍ ଭାଷା ଅଧ୍ୟୟନ କରିଥିଲେ । ଆମେରିକାରେ ସେ ପଲିଟିକାଲସାଇନ୍ସ୍, ଏଥିକସ୍, ଆନ୍ଥ୍ରୋପୋଲୋଜି, ସୋସିଆଲ ସାଇନସ୍ ଓ ଇକୋନୋମିକସ୍ ଆଦି ବହୁ ବିଷୟ ଅଧ୍ୟୟନ କଲେ ଓ

ଡକ୍ଟରେଟ୍ ପାଇଲେ । ଏପରିକି ସେହି ବାଲ୍ୟକାଳରୁ ତାଙ୍କ ମନ ମଧ୍ୟରେ ଯେଉଁ ବିଦ୍ରୋହର ନିଆଁ ଜଳୁଥିଲା, ତାର ପ୍ରତିକାର ସ୍ୱରୂପ ଅବହେଳିତ ଜାତିଗୁଡ଼ିକ ପ୍ରତି କରାଯାଉଥିବା ଅବିଚାରର ମୂଳୋତ୍ପାଟନ କରିବାପାଇଁ ସେ ଏକ ଦୃଢୋକ୍ତି ପ୍ରକାଶ କଲେ ଓ ଏଥିପାଇଁ ହିନ୍ଦୁଧର୍ମ ମଧ୍ୟରେ ଏକ ଆଲୋଡନ ସୃଷ୍ଟି କରିବାକୁ ଆରମ୍ଭ କଲେ । ମାତ୍ର ସେ ଜଣେ ଆନ୍ଦୋଳନ କାରୀ ହେବା ପୂର୍ବରୁ ପୁଙ୍ଖାନୁପୁଙ୍ଖ ଭାବରେ ଏସବୁ ସମସ୍ୟା ଓ ତାର ସମାଧାନ ବିଷୟରେ ଗଭୀର ଜ୍ଞାନ ଆହରଣ କରି ଶକ୍ତିଶାଳୀ ଯୁକ୍ତି ଉପସ୍ଥାପନ କରିବାକୁ ସକ୍ଷମ ହେବାପାଇଁ ପ୍ରସ୍ତୁତ ହୋଇପାରୁଥିଲେ । ତାଙ୍କର ସବୁ ଯୁକ୍ତି ଦୃଢ଼ ଭିତ୍ତି ଭୂମି ଉପରେ ପ୍ରତିଷ୍ଠିତ ହୋଇଥିବାରୁ ସେଗୁଡ଼ିକୁ ଏଡ଼ାଇ ଦେବା ପାଇଁ କେହି ସକ୍ଷମ ହୋଇ ପାରୁନଥିଲେ । ସେହି ଯୁକ୍ତିଯୁକ୍ତ ସମସ୍ୟାର ସମାଧାନ ପାଇଁ ପରବର୍ତ୍ତୀ କାଳରେ ତାଙ୍କୁ ସମ୍ବିଧାନ ପ୍ରଣୟନର ଦାୟିତ୍ୱ ଦିଆ-ଯାଇଥିଲା ।

ଆମ୍ବେଦକରଙ୍କର ଉଚ୍ଚଶିକ୍ଷାଗତ ଯୋଗ୍ୟତା ଓ ଅଗାଧ ପାଣ୍ଡିତ୍ୟ ସର୍ବୋପରି ଲାଭକରିଥିବା ଡକ୍ଟରେଟ୍ ଉପାଧି ପାଇଁ ତାଙ୍କୁ ବରୋଦା ରାଜ୍ୟରେ ଏକ ଉଚ୍ଚ ଅଫିସରେ [War Secretery] ଉଚ୍ଚ ଦାୟିତ୍ୱରେ ନିଯୁକ୍ତ ଦିଆଗଲା । କିନ୍ତୁ ଯେଉଁ ମୁହୂର୍ତ୍ତରେ ସେ ଭାରତ ଭୂମିରେ ପାଦ ଦେଲେ ଠିକ୍ ସେହି ମୁହୂର୍ତ୍ତରେ ସେ ଅସ୍ପୃଶ୍ୟତାର ଶିକାର ହେଲେ । ଏତେ ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇଥିଲେ ମଧ୍ୟ ସେ ଯେତେବେଳେ ବରୋଦାରେ ପହଞ୍ଚିଲେ ସେତେବେଳେ ତାଙ୍କୁ କେହି ସମ୍ବର୍ଦ୍ଧନା ଜଣାଇବାକୁ ଆସିଲେ ନାହିଁ । ଏହାଠାରୁ ଆହୁରି ଜଘନ୍ୟ କଥା, ଅଫିସର ଚାକରମାନେ, ଏପରିକି ତାଙ୍କର ପିଅନ ମଧ୍ୟ ତାଙ୍କ ହାତକୁ ଫାଇଲ ନଦେଇ ଫାଇଲଗୁଡ଼ିକୁ ଟେବୁଲ ଉପରକୁ ଫିଙ୍ଗି ଦେଉଥିଲେ । କେହି ହେଲେ ତାଙ୍କୁ ପିଇବାପାଇଁ ପାଣି ଗ୍ଲାସେ ମଧ୍ୟ ଦେଉନଥିଲେ । ରହିବା ପାଇଁ ଘର ଖଣ୍ଡିଏ ମଧ୍ୟ ପାଇଲେ ନାହିଁ । ଆମ୍ବେଦକର ଏଥିପାଇଁ ମହାରାଜା ବରୋଦାଙ୍କଠାରେ ଅଭିଯୋଗ କରିଥିଲେ, ମାତ୍ର ତାର କୌଣସି ପ୍ରତିକାର ହୋଇ ପାରିଲା ନାହିଁ । ଏପରିକି ଅଣହିନ୍ଦୁମାନେ ମଧ୍ୟ ଉପଯୁକ୍ତ ବ୍ୟବହାର କଲେନାହିଁ । ଆମ୍ବେଦକରଙ୍କ ମନରେ ହିନ୍ଦୁମାନଙ୍କ ବିରୁଦ୍ଧରେ ବିଦ୍ରୋହ ନିଆଁ ଜଳି ଉଠିଲା । ଅଳ୍ପଦିନ ମଧ୍ୟରେ ସେ ବରୋଦାରୁ ବମ୍ବେ ପଳାଇ ଆସିଲେ ।

୧୯୨୦ ମସିହାରେ ଆମ୍ବେଦକର ଆହୁରି ଅଧିକ ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଗଲେ । ଲଣ୍ଡନର ବ୍ରିଟିଶ ମିଉଜିୟମଠାରେ ଗୋଟିଏ ଖୁବ୍ ଉଚ୍ଚକୋଟିର ଲାଇବ୍ରେରୀ

ଅଛି । ତାହା ସକାଳ ଆଠଟାରୁ ଖୋଲୁଥିଏ । ଆମ୍ବେଦକର ପ୍ରତିଦିନ ସକାଳ ଆଠଟା ଠାରୁ ସନ୍ଧ୍ୟା ପାଞ୍ଚଟା ପର୍ଯ୍ୟନ୍ତ ସେଠାରେ ଅଧ୍ୟୟନ କରନ୍ତି । ସେ ସେଠାରେ ଆସୋନଡ୍‌କର୍ ନାମକ ଜଣେ ଧନୀ ଗ୍ରନ୍ଥଙ୍କୁ ଜାଣିବାକୁ ପାଇଲେ । ସେ ପଢିବା ପାଇଁ ବିଶେଷ ଆଗ୍ରହୀ ନଥିଲେ । ଆମ୍ବେଦକର ତାଙ୍କୁ ଡାକି କହିଲେ ତୁମେମାନେ ପ୍ରଚୁର ଧନ ଗଚ୍ଛିତ କରି ରଖିପାର, କିନ୍ତୁ ମନେରଖ ତୁମେ ଜଣେ ମନୀଷୀର ସନ୍ତାନ, ତୁମେ କଣ କରିବାକୁ ଆସିଛ ? ମା ସରସ୍ୱତୀଙ୍କ ଆଶୀର୍ବାଦ, ତୁମେ ଯେତେ-ବେଳେ ଗ୍ରହିବ ପାଇ ପାରିବ ନାହିଁ । ମ୍ନେମାନେ ତାଙ୍କ ଆଶୀର୍ବାଦ ସେତିକି-ବେଳେ ପାଇବା ଯେତେବେଳେ ସେ ସନ୍ତୁଷ୍ଟ ହେବେ ।

ଆମ୍ବେଦକର ୧୯୨୨ ମସିହାରେ ଜଣେ ବାରିଷ୍ଟର ହେଲେ ଓ ତାର ପରବର୍ତ୍ତୀ ବର୍ଷ ଭାରତକୁ ଫେରିଲେ । ଅସ୍ପୃଶ୍ୟମାନେ ଭୋଗୁଥିବା ନିର୍ଯ୍ୟାତନା-ଗୁଡ଼ିକୁ ଲୋକ ଲୋଚନକୁ ଆଣିବା ପାଇଁ ଓ ସମାଜରେ ସମାନ ଅଧିକାର ପ୍ରତିଷ୍ଠା ପାଇଁ "ମୂକ ନାୟକ" ନାମରେ ଏକ ସାମାଜିକ ପତ୍ରିକା ପ୍ରକାଶ ପାଇଲା । ଆମ୍ବେଦକର ଏହାକୁ ସମର୍ଥନ କଲେ ଓ ଏହାର ପ୍ରଥମ ପ୍ରକାଶନ ପାଇଁ ସେ ଯେଉଁ ଲେଖା ଦେଲେ ସେଥିରେ, ସେ ଲେଖିଲେ "ହିନ୍ଦୁ ଧର୍ମ ହେଉଛି ଏକ ବହୁତଳ ପ୍ରାସାଦ-ବିଶିଷ୍ଟ ଦୁର୍ଗ । ଏଥିରେ କୌଣସି ସିଡ଼ି ନାହିଁ କିମ୍ବା ବାହାରକୁ ଯିବା ପାଇଁ କୌଣସି ଦ୍ୱାର ନାହିଁ । ଏହା ଏକ ଏପରି ସମାଜ ଯେଉଁଥିରେ ନିର୍ଜୀବ ବସ୍ତୁଠାରେ ଈଶ୍ୱରଙ୍କ ସତ୍ତା ଅନୁଭବ କରାଯାଏ, ମାତ୍ର ଯେଉଁ ଲୋକମାନେ ସେହି ସମାଜର ଏକ ଗୁରୁତ୍ୱ-ପୂର୍ଣ୍ଣ ଅଂଶବିଶେଷ ସେମାନେ ହୁଅନ୍ତି ଅସ୍ପୃଶ୍ୟ" ।

ଏହାରି ଫଳରେ ଯେଉଁ ସ୍ୱର ଉତ୍ତୋଳନ କରାଗଲା ତାହାରି ଫଳରେ ହିନ୍ଦୁ ସମାଜ ବୁଝିବାକୁ ଆରମ୍ଭ କଲା ଯେ ଅସ୍ପୃଶ୍ୟତା ହେଉଛି ଅନ୍ୟାୟ । କୋଲାପୁରର ସାହୁ-ମହାରାଜ ଅସ୍ପୃଶ୍ୟମାନଙ୍କ ପାଇଁ କାର୍ଯ୍ୟ ଯୋଗାଇ ଦେବାର ବ୍ୟବସ୍ଥା କଲେ । ୧୯୨୪ ରେ ଭୀର ସାବର କର, ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ, ଆଣ୍ଡାମାନ ଜେଲରୁ ମୁକ୍ତ ହେଲେ । ସେ ମଧ୍ୟ ଅସ୍ପୃଶ୍ୟତା ବିରୁଦ୍ଧରେ ସଂଗ୍ରାମ କଲେ । ମହାତ୍ମାଗାନ୍ଧୀ ମଧ୍ୟ ଅସ୍ପୃଶ୍ୟତା ଲୋପ ପାଇଁ ବାସ୍ତବ ପଦକ୍ଷେପ ଗ୍ରହଣ କଲେ ।

ସାମାଜିକ ନିର୍ଯ୍ୟାତନା ଓ ଅସ୍ପୃଶ୍ୟତା ସମ୍ବନ୍ଧରେ ଆମ୍ବେଦକରଙ୍କର ଯେଉଁ ବ୍ୟକ୍ତିଗତ ଅଭିଜ୍ଞତା ଥିଲା ସେଥିରୁ ସେ ବୁଝିପାରିଥିଲେ ଯେ ଅନ୍ୟମାନଙ୍କର ଦୟା

ଉପରେ ନିର୍ଭର କରି ଅସ୍ପୃଶ୍ୟମାନେ ନିରବ ରହନ୍ତୁ । ତାଙ୍କ ମତରେ ଅନ୍ୟମାନେ ଅସ୍ପୃଶ୍ୟମାନଙ୍କୁ ଉଠାଇ ପାରିବେ ନାହିଁ । ଅନ୍ୟାୟର ଉପରେ ଯେଉଁମାନେ ନିର୍ଯାତିତ, ସେମାନେହିଁ ନ୍ୟାୟ ହାସଲ କରିବା ଉଚିତ୍ । ଆମ୍ବେଦକର ଅନୁଭବ କଲେ ଅସ୍ପୃଶ୍ୟମାନେ ଶତାବ୍ଦୀ ଶତାବ୍ଦୀ ଧରି ସେମାନଙ୍କ ବ୍ୟକ୍ତିତ୍ୱ ହରାଇ ବସିଛନ୍ତି । ସେମାନଙ୍କୁ କେବଳ ଭାଷଣ ଓ ସ୍ଲୋଗାନ୍ ଦ୍ୱାରା ଉଦ୍ଧାର କରିବା ସମ୍ଭବ ନୁହେଁ । ସେ ସ୍ଥିର କଲେ ହିନ୍ଦୁମାନଙ୍କ ଅନ୍ଧବିଶ୍ୱାସ ବିରୁଦ୍ଧରେ ବିଦ୍ରୋହ କରିବେ । ଚୌଦାର ଜଳାଶୟ ସତ୍ୟାଗ୍ରହ ଥିଲା ତାଙ୍କର ସେହି ସିଦ୍ଧାନ୍ତର । ସେତେବେଳକୁ ବମ୍ବେ ବିଧାନ ସଭା ଗୋଟିଏ ବିଲ୍ ପାସ କରି ସାରିଥିଲେ । ସେହି ବିଲ୍ ଅନୁଯାୟୀ ସରକାର ସ୍ଥିର କରିଥିଲେ ଯେ ସମସ୍ତ ସର୍ବସାଧାରଣ କୂଅ ଓ ପୁଷ୍କରିଣୀମାନଙ୍କୁ ବ୍ୟବହାର କରି ପାରିବେ । କୋଲବ ଜିଲ୍ଲାର ମାହାଡ଼ ମ୍ୟୁନିସପାଲିଟି ଘୋଷଣା କରିଥିଲେ ଯେ ଚୌଦାର ପୁଷ୍କରିଣୀ ଅସ୍ପୃଶ୍ୟମାନଙ୍କଦ୍ୱାରା ବ୍ୟବହାର କରାଯାଇ ପାରିବ । ମାତ୍ର ତାହା କାର୍ଯ୍ୟକାରୀ ହେଉନଥିଲା । ଆମ୍ବେଦକର ଏହି ପୁଷ୍କରିଣୀର ଜଳ ବ୍ୟବହାର କରି ସେଠାରେ ଏକ ସାମାଜିକ ସାମ୍ୟତାର ପତାକା ଉତ୍ତୋଳନ କରିଥିଲେ । ନିର୍ଦ୍ଦିଷ୍ଟ ଦିନ ଆମ୍ବେଦକର ସର୍ବପ୍ରଥମେ ସେହି ଜଳ ସ୍ପର୍ଶ କରିଥିଲେ । ତା ପରେ ତାଙ୍କର ବହୁ ଅନୁଗାମୀ ଜଳ ପାନ କଲେ । ସେ ପର୍ଯ୍ୟନ୍ତ ଅସ୍ପୃଶ୍ୟମାନେ ସେ ଜଳ ସ୍ପର୍ଶ କରି ନଥିଲେ ଓ ପୋଖରୀ ପାଖକୁ ମଧ୍ୟ ଯାଇ ପାରୁନଥିଲେ । ସେ ପ୍ରମାଣ କରିଦେଲେ ଯେ ଜଳ ସମସ୍ତଙ୍କ ପାଇଁ ଈଶ୍ୱରଙ୍କର ଏକ ଅବଦାନ । କିନ୍ତୁ ଠିକ୍ ଦୁଇଘଣ୍ଟା ପରେ କେହି ପ୍ରଚାର କରିଦେଲା ଯେ ବିରେଶ୍ୱର ମନ୍ଦିରକୁ ମଧ୍ୟ ପ୍ରବେଶ କରିବେ । ଅନ୍ୟ ହିନ୍ଦୁମାନେ ଆମ୍ବେଦକର ଓ ତାଙ୍କର ଅନୁଗାମୀମାନଙ୍କୁ ଆକ୍ରମଣ କଲେ ଯେଉଁଥିରେ କି ଆମ୍ବେଦକର କ୍ଷତବିକ୍ଷତ ହେଲେ ।

ଏହି ଘଟଣା ଭାରତୀୟ ସାମାଜିକ ଜୀବନରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା । ବହୁ ବର୍ଣ୍ଣବନ୍ତ ହିନ୍ଦୁ ଆମ୍ବେଦକରଙ୍କୁ କରାଯାଇଥିବା ଆଘାତକୁ ନିନ୍ଦା କଲେ । ସେମାନେ ଘୋଷଣା କରିବାକୁ ଆରମ୍ଭ କଲେ ଯେ, ପୁଷ୍କରିଣୀରୁ ଜଳ ଗ୍ରହଣ କରି ଅସ୍ପୃଶ୍ୟମାନେ କୌଣସି ଭୁଲ କାର୍ଯ୍ୟ କରିନାହାନ୍ତି । ଆମ୍ବେଦକରଙ୍କ ଯୁକ୍ତି ଥିଲା ଅସ୍ପୃଶ୍ୟମାନେ ହିନ୍ଦୁ, ସେମାନେ ହିନ୍ଦୁମାନଙ୍କର ଦେବତାମାନଙ୍କୁ ପୂଜା କରନ୍ତି, ତେଣୁ ଦେବତାମାନଙ୍କର ମନ୍ଦିର ସେମାନଙ୍କ ପାଇଁ ଖୋଲା ରହିବା ଉଚିତ୍ । ଯେବେ ଖ୍ରୀଷ୍ଟିଆନ ଓ ମୁସଲମାନମାନେ ହିନ୍ଦୁମାନଙ୍କୁ ଛୁଇଁବାରେ କୌଣସି

ବାଧା ନାହିଁ, ତେବେ ସେମାନେ ନିଜ ଜାତିର ଲୋକଙ୍କୁ ଛୁଇଁଲେ ବାଧା କାହିଁକି ? ସେ ତାଗିଦ୍ ଦେଲେ ଯେ ଯେଉଁମାନେ ଅସ୍ପୃଶ୍ୟତାକୁ ଗ୍ରହଣ କରନ୍ତି ସେମାନେ ଦଣ୍ଡିତ ହେବା ଉଚିତ୍ । କେତେକ ଯୁକ୍ତି କଲେ ଅସ୍ପୃଶ୍ୟମାନେ ଅନ୍ୟମାନଙ୍କ ସହିତ ସମକକ୍ଷ ହେବା ପାଇଁ ସକ୍ଷମ ନୁହନ୍ତି । ଯେତେବେଳେ ସ୍ୱାଧୀନତା ଓ ଗଣତନ୍ତ୍ର ପାଇଁ ସ୍ୱର ଉତ୍ତୋଳନ କରାଗଲା, ସେତେବେଳେ ଆମ୍ବେଦକର ଦର୍ଶାଇଲେ ଯେଉଁ ଦେଶରେ ଗୋଟିଏ ଗୋଷ୍ଠୀ ଅନ୍ୟ କେତେକ ପଛୁଆ ଗୋଷ୍ଠୀଙ୍କ ସ୍ୱାଧୀନତା ଓ ସାମାଜିକ ସ୍ଥିତିକୁ ବିପର୍ଯ୍ୟସ୍ତ କରିଆସନ୍ତି, ସେମାନେ କେଉଁ ଯୁକ୍ତିରେ ଦେଶର ତଥା ଦେଶବାସୀଙ୍କର ଗଣତାନ୍ତ୍ରିକ ଅଧିକାର ଆଶା କରନ୍ତି ? ସେ ବଳିଷ୍ଠ ଗମ୍ଭୀର ସ୍ୱରରେ ଘୋଷଣା କଲେ, ଯେତେଦିନ ପର୍ଯ୍ୟନ୍ତ ଅସ୍ପୃଶ୍ୟ ତଥା ପଛୁଆ ଗୋଷ୍ଠୀର ଲୋକମାନେ ହିନ୍ଦୁ ସମାଜରେ ସାମାଜିକ ନ୍ୟାୟ ନପାଇ ପାରିଛନ୍ତି ସେ ପର୍ଯ୍ୟନ୍ତ ଗଣତାନ୍ତ୍ରିକ ଅଧିକାର ଓ ନ୍ୟାୟ ଦାବୀ କରିବାକୁ ସେମାନଙ୍କର ଅଧିକାର ନାହିଁ ।

୧୯୨୭ ମସିହାରେ ଗୋଟିଏ ବଡ଼ ସମ୍ମିଳନୀ ହେଲା, ଯେଉଁଥିରେ ଘୋଷଣା କରାଗଲା ଯେ ହିନ୍ଦୁ ଧର୍ମରେ କୌଣସି ଜାତିଭେଦ ରହିବ ନାହିଁ । ସବୁ ଜାତିର ଲୋକ ପୂଜକ ହିସାବରେ ମନ୍ଦିର ମଧ୍ୟରେ ଉପାସନା କରି ପାରିବେ । ଇତି ମଧ୍ୟରେ ଚୌଦାର ପୁଷ୍କରିଣୀ ବିବାଦର ବିଗୁର ହୋଇ ରାଏ ବାହାରିପଡ଼ିଲା । ସେଥିରେ ଘୋଷଣା କରାହୋଇଥିଲା ଯେ ସେ ପୁଷ୍କରିଣୀଟି ସର୍ବସାଧାରଣର ସମ୍ପତ୍ତି ।

ହଜାର ହଜାର ବର୍ଷ ଧରି ଅସ୍ପୃଶ୍ୟ ଓ ଲାଞ୍ଛିତ ହୋଇ ଆସୁଥିବା ଲୋକ-ମାନଙ୍କୁ କିପରି ନ୍ୟାୟ ଦିଆଯାଇ ପାରିବ ସେଥିପାଇଁ ଆମ୍ବେଦକର ନିମ୍ନୋକ୍ତ ନିର୍ଦ୍ଦିଷ୍ଟ ପଦକ୍ଷେପଗୁଡ଼ିକ ସ୍ଥିର କଲେ । (୧) ହିନ୍ଦୁ ଧର୍ମର କୌଣସି ସଂପ୍ରଦାୟକୁ ମନ୍ଦିର ବାସନ୍ଦ କରାଯିବ ନାହିଁ । (୨) ବିଧାନସଭାମାନଙ୍କୁ ଅସ୍ପୃଶ୍ୟମାନଙ୍କ ମଧ୍ୟରୁ ଅଧିକ ସଂଖ୍ୟକ ପ୍ରତିନିଧି ନିଆଯିବ । ଏହି ପ୍ରତିନିଧିମାନେ ସରକାରଙ୍କ ଦ୍ୱାରା ମନୋନୀତ ନହୋଇ ଲୋକମାନଙ୍କ ଦ୍ୱାରା ନିର୍ବାଚିତ ହେବେ । (୩) ସୈନ୍ୟ ଓ ପୋଲିସ ବିଭାଗରେ ସରକାର ଅସ୍ପୃଶ୍ୟମାନଙ୍କୁ ବହୁ ସଂଖ୍ୟାରେ ନିଯୁକ୍ତି ଦେବେ । (୪) ଯେଉଁମାନେ ହିନ୍ଦୁ ସମାଜରେ ନିର୍ଯ୍ୟାତିତ ହେଉଥିବେ ସେମାନଙ୍କୁ ନିରପେକ୍ଷ ନ୍ୟାୟ ପ୍ରଦାନ କରାଯିବ । ଏହିଗୁଡ଼ିକ ଆମ୍ବେଦକରଙ୍କ କଠୋର ସିଦ୍ଧାନ୍ତ ଥିଲା । ଏହି ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରିବା ପାଇଁ ସେ ଯେ କୌଣସି ପ୍ରତିରୋଧର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ଥିଲେ ।

ଏହି ସମୟରେ ବ୍ରିଟିଶ୍ ସରକାର କେତେକ ଭାରତୀୟ ନେତାଙ୍କୁ ଭାରତର ସମସ୍ୟା ବିଷୟରେ ଆଲୋଚନା କରିବା ପାଇଁ ନିମନ୍ତ୍ରଣ କଲେ । ଏହି ବୈଠକ ଲଣ୍ଡନଠାରେ ଗୋଲଟେବୁଲ ବୈଠକ ନାମରେ ପ୍ରସିଦ୍ଧ । ଗାନ୍ଧିଜୀ ମଧ୍ୟ ଏହି ବୈଠକରେ ଅଂଶ ଗ୍ରହଣ କରିଥିଲେ । ସେହି ଗୋଲ ଟେବୁଲ ବୈଠକରେ ଆମ୍ବେଦକର ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯେ କି ପ୍ରତ୍ୟକ୍ଷ ଭାବରେ ସରକାରଙ୍କ ବିରୁଦ୍ଧରେ ଉତ୍ତେଜିତ ଭାବରେ ତିକ୍ତ ସମାଲୋଚନା କରିଥିଲେ । ସେ କହିଥିଲେ ଯେ, ପଛୁଆ ଜାତିର ଲୋକଙ୍କ ପାଇଁ କିଛି କରି ପାରିନାହାନ୍ତି । ସେମାନେ ବ୍ରିଟିଶ ସରକାରଙ୍କ ଅଧୀନରେ ଅନ୍ୟ ଜାତିର ଲୋକମାନଙ୍କ ସହିତ କୌଣସି କ୍ଷେତ୍ରରେ ସମାନ ଅଧିକାର ପାଇ ପାରିନାହାନ୍ତି । ବ୍ରିଟିଶ ସରକାର କେବଳ ହିନ୍ଦୁମାନଙ୍କ ପଦାଙ୍କ ଅନୁସରଣ କରି ଯାଇଅଛନ୍ତି ।

ସେତେବେଳେ ମହାତ୍ମାଗାନ୍ଧୀ ଭାରତରେ ଖୁବ୍ ଲୋକପ୍ରିୟ ନେତା । ଲକ୍ଷ ଲକ୍ଷ ଲୋକ ଭକ୍ତିର ସହ ତାଙ୍କର ପଦାଙ୍କ ଅନୁସରଣ କରୁଥିଲେ । କିଭଳି ଅସ୍ପୃଶ୍ୟମାନଙ୍କୁ ନ୍ୟାୟ ଦିଆଯାଇ ପାରିବ, ଏ ବିଷୟ ନେଇ ଆମ୍ବେଦକର ଗାନ୍ଧିଜୀଙ୍କ ମତାମତକୁ ଖୋଲଖୋଲି ଭାବେ ପ୍ରତିରୋଧ କଲେ । ତାଙ୍କୁ ଯାହା ଠିକ୍ ଅନୁଭୂତ ହେଲ ସେ ତାହାହିଁ ଅକୁଣ୍ଠିତ ଭାବରେ ସମର୍ଥନ କଲେ । ୧୯୩୦ରେ ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ ଆମ୍ବେଦକର ଅସ୍ପୃଶ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳ ପାଇଁ ଦାବୀ ଉପସ୍ଥାପନ କଲେ । ଫଳରେ ଅସ୍ପୃଶ୍ୟମାନେ ସେମାନଙ୍କର ପ୍ରତିନିଧିମାନଙ୍କୁ ଅଲଗା ନିର୍ବାଚନ କରିବା ପାଇଁ ସକ୍ଷମ ହୋଇ ପାରିବେ ।

ଗାନ୍ଧିଜୀ ଅନୁଭବ କଲେ ଯେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳ ଅସ୍ପୃଶ୍ୟମାନଙ୍କୁ ହିନ୍ଦୁମାନଙ୍କଠାରୁ ଅଲଗା କରି ଦେବ । ହିନ୍ଦୁମାନେ ଭାଗ ଭାଗ ହୋଇଯିବେ । ଏହି ଚିନ୍ତା ତାଙ୍କୁ ବହୁତ ଦୁଃଖ ଦେଲ । ଏହି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳ ବିରୁଦ୍ଧରେ ସେ ଆମରଣ ଅନଶନ ଆରମ୍ଭ କଲେ । ବହୁ କଂଗ୍ରେସ ନେତା ଗାନ୍ଧିଜୀଙ୍କୁ ବଞ୍ଚାଇବା ପାଇଁ ଆମ୍ବେଦକରଙ୍କ ପାଖକୁ ଧାଇଁଲେ । ଆମ୍ବେଦକର ଦୃଢଭାବରେ ସୂଚନା ଦେଲେ, ଗାନ୍ଧିଜୀ ମୁସଲମାନ, ଖ୍ରୀଷ୍ଟିୟାନ୍ ଓ ଶିଖମାନଙ୍କ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳି ଅଧିକାରକୁ ବିରୋଧ କରୁନଥିବାବେଳେ ହରିଜନମାନଙ୍କ ପାଇଁ ବିରୋଧ କରିବାର କୌଣସି ଯୁକ୍ତି ନାହିଁ । ଯଦି ତୁମ୍ଭେମାନେ ଅସ୍ପୃଶ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳର ପ୍ରସ୍ତାବରେ ଏକମତ ନହୁଅ ତାହାହେଲେ ଏହାର ସମାଧାନ କଣ ?

ଗାନ୍ଧିଜୀଙ୍କୁ ବଞ୍ଚାଇବା ନିଶ୍ଚିତଭାବେ ଗୁରୁତ୍ୱପୂର୍ଣ୍ଣ । ମାତ୍ର ସେ ଘୋଷଣା କଲେ ଗାନ୍ଧିଜୀଙ୍କ ପରି ଜଣେ ଲୋକକୁ ବଞ୍ଚାଇବା ପାଇଁ ଚିର ଅବହେଳିତ ପଛୁଆ ଜାତିର ଲୋକମାନଙ୍କ ସ୍ୱାର୍ଥକୁ ମୁଁ ତ୍ୟାଗ କରିପାରିବି ନାହିଁ । ଯଦି ଅସ୍ପୃଶ୍ୟମାନଙ୍କ ପାଇଁ ସବୁ କ୍ଷେତ୍ରରେ ସ୍ଥାନ ସଂରକ୍ଷଣ କରାଯାଇ ପାରିବ ତେବେ ମୁଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳର ଦାବୀରୁ ଓହରି ଯାଇପାରେ । ସର୍ବଶେଷରେ କଂଗ୍ରେସ ନେତା ଓ ଆମ୍ବେଦକରଙ୍କ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଏହି ରାଜିନାମାର ଚୁକ୍ତି ପୁନାଠାରେ ସ୍ୱାକ୍ଷରିତ ହୋଇଥିବାରୁ ଏହା ପୁନା ପ୍ୟାକ୍ଟ୍ ନାମରେ ପ୍ରସିଦ୍ଧ । ଏହି ପ୍ୟାକ୍ଟ୍ ଅନୁଯାୟୀ ପଛୁଆ ଜାତିମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ସ୍ଥିର ହୋଇ ପାରିଲା । ଆମ୍ବେଦକର ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳର ଦାବୀକୁ ପରିତ୍ୟାଗ କଲେ ଓ ଗାନ୍ଧିଜୀଙ୍କର ଅନଶନର ଅବସାନ ଘଟିଲା ।

ଆମ୍ବେଦକରଙ୍କର ଏହା ଦୃଢ଼ ଧାରଣା ଥିଲା ଯେ ଅସ୍ପୃଶ୍ୟତା ହେଉଛି ଜାତି ପ୍ରଥାର ଏକ ଶାଖା । ଯେତେଦିନ ପର୍ଯ୍ୟନ୍ତ ଜାତି ପ୍ରଥାର ମୂଳପୋଛ ନହୋଇଛି ସେତେଦିନ ପର୍ଯ୍ୟନ୍ତ ଅସ୍ପୃଶ୍ୟତା ଯିବନାହିଁ । ସେ ଯୁକ୍ତି ବାଢ଼ିଥିଲେ ଯେ ଜାତି ପ୍ରଥାକୁ ଦୂର କରିବାକୁ ହେଲେ ରାଜନୈତିକ ଅଧିକାର ଦରକାର । ସେ ବିଶ୍ୱାସ କରନ୍ତି, ଧର୍ମ ମଣିଷ ପାଇଁ ଏକାନ୍ତ ଆବଶ୍ୟକ । କିନ୍ତୁ ସେ ବିଦ୍ରୋହ କଲେ ସେହି-ମାନଙ୍କ ବିରୋଧରେ, ଯେଉଁମାନେ ଧର୍ମନାମରେ ସେହି ଧର୍ମର ଲୋକମାନଙ୍କୁ ପଶୁଠାରୁ ହୀନ ବ୍ୟବହାର କରନ୍ତି । ଏଥିପାଇଁ ବହୁତ ଲୋକ ତାଙ୍କୁ ସମାଲୋଚନା କଲେ । କେତେକ ଖବର କାଗଜ ମଧ୍ୟ ତାଙ୍କ ବିରୁଦ୍ଧରେ ସମାଲୋଚନାମୂଳକ ଲେଖା ପ୍ରକାଶ କଲେ । ଏପରି ବହୁତ ସମୟ ଆସିଛି, ଆମ୍ବେଦକରଙ୍କ ଜୀବନ ମଧ୍ୟ ସଙ୍କଟାପନ୍ନ ହୋଇ ପଡ଼ିଛି । ଆମ୍ବେଦକର ଏହା ମଧ୍ୟ ଜାଣିଥିଲେ ଯେ ଯେତେ ପ୍ରତିଭାବାନ ଲୋକ ହେଲେ ମଧ୍ୟ, ଏହି ଜାତି ପ୍ରଥା ଯୋଗୁ ସେ କୌଣସିମତେ ଲୋକଲୋଚନକୁ ଆସି ପାରିବ ନାହିଁ । ଲୋକମାନେ ତାର ଜାତିକୁ ଗୁରୁତ୍ୱ ଦେଇ ତାର ସମସ୍ତ କ୍ଷମତାକୁ ନଷ୍ଟକରି ଦିଅନ୍ତି । ଆମ୍ବେଦକର ଜାତିପ୍ରଥା ବିରୁଦ୍ଧରେ ସଂଗ୍ରାମ କଲେ । ସଙ୍କୀର୍ଣ୍ଣ ମନୋଭାବାପନ୍ନ ଲୋକଙ୍କଠାରୁ ନ୍ୟାୟ ପାଇବା କଭଳି କଷ୍ଟ ସାଧ୍ୟ ଏ ବିଷୟ ନେଇ ସେ ବ୍ୟତିବ୍ୟସ୍ତ ହୋଇ ପଡ଼ୁଥିଲେ । ଶେଷରେ ସେ କହିଲେ ହିନ୍ଦୁଧର୍ମ ବରଂ ଛାଡ଼ି ଦେବା ଭଲ ମାତ୍ର ସେହି ଧର୍ମ ମଧ୍ୟରେ ରହି ସେହି ଧର୍ମର ଲୋକଙ୍କଠାରୁ ଘୃଣିତ ଲାଞ୍ଛିତ ଓ ଅପମାନିତ ହୋଇ ନ୍ୟାୟ ନପାଇ ପାରିବା ମଧ୍ୟରେ କୌଣସି ଶାନ୍ତି ନାହିଁ ।

ମୁସଲମାନ ଓ ଖ୍ରୀଷ୍ଟିୟାନ ପୁରୋଧାମାନେ ତାଙ୍କର ଏହି ଘୋଷଣାକୁ ଜାଣିପାରି ତାଙ୍କୁ ତାଙ୍କର ଧର୍ମ ପ୍ରତି ଆକୃଷ୍ଟ କରିବାକୁ ପ୍ରବଳ ଚେଷ୍ଟା କଲେ । ସେମାନେ ତାଙ୍କୁ ଭେଟି ଭରସା ଦେଲେ ଯେ ଯଦି ଅସ୍ପୃଶ୍ୟମାନେ ଧର୍ମ ପରିବର୍ତ୍ତନ କରି ତାଙ୍କର ଧର୍ମକୁ ଗ୍ରହଣ କରନ୍ତି ତାହାହେଲେ ତାଙ୍କୁ ସେମାନଙ୍କ ସମାଜ ମଧ୍ୟରେ ସମ୍ପୂର୍ଣ୍ଣ ଭାବେ ସମାନ ଅଧିକାର ଦିଆଯିବ । କିନ୍ତୁ ଆମ୍ବେଦକର ସେମାନଙ୍କର ଏହି ପ୍ରଲୋଭନମୟ ଭରସାରେ ଆସ୍ଥା ରଖି ପାରିଲେ ନାହିଁ । ଅବିଚଳିତ ଭାବରେ ନିଜ ସିଦ୍ଧାନ୍ତରେ ଅଟଳ ରହି ଅସ୍ପୃଶ୍ୟମାନଙ୍କୁ ସେମାନଙ୍କର ନିର୍ଯାତନାରୁ ରକ୍ଷା କରିବା ପାଇଁ ଦୃଢ଼ସଂକଳ୍ପ ହେଲେ ।

ଭାରତବାସୀ ବିଦେଶୀ ଶାସନ କବଳରୁ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ମୁକ୍ତ ହେଲେ ସତ କିନ୍ତୁ ସେମାନଙ୍କ ଆଗରେ ଏକ ବିରାଟ ସମସ୍ୟା ଆସି ଦେଖାଦେଲା । ସେହି ସମସ୍ୟାମାନଙ୍କ ମଧ୍ୟରେ ମୁଖ୍ୟ ସମସ୍ୟା ହେଲା କିଭଳି ଭାରତ ପରି ଏକ ବିଶାଳ ରାଷ୍ଟ୍ରର କୋଟି କୋଟି ଲୋକଙ୍କୁ ନେଇ ଶାସନ କରାଯାଇ ପାରିବ । କିଭଳି ନିର୍ବାଚନ ହେବ । ଲୋକମାନଙ୍କର କେଉଁ କେଉଁ ଅଧିକାର ରହିବ । କେଉଁ ସବୁ ଆଇନ ପ୍ରଣୟନ ହେବ । ସରକାର କିପରି ପରିଚାଳନା ହେବ । ବିଭିନ୍ନ ବିଭାଗକୁ କିପରି ସମସ୍ତଙ୍କୁ ନ୍ୟାୟ ଦେଲାଭଳି ପରିଚାଳନା କରାଯାଇ ପାରିବ । ଏସବୁ ନିୟମାନୁସାରେ ବ୍ୟବସ୍ଥାଗୁଡ଼ିକୁ ନେଇ ସମ୍ବିଧାନ ପ୍ରସ୍ତୁତ କରିବା ହିଁ ଥିଲା ଏକମାତ୍ର ପନ୍ଥା । ଏହି ଗୁରୁ ଦାୟିତ୍ୱ ବହନ କରିବା ପାଇଁ ଯେଉଁ ଦକ୍ଷ ଅଭିଜ୍ଞ ଓ ଉଚ୍ଚ ଶିକ୍ଷାବିତ୍‌ମାନଙ୍କୁ ନିଯୁକ୍ତ କରାଗଲା ସେମାନଙ୍କ ମଧ୍ୟରେ ଡକ୍ଟର ଆମ୍ବେଦକର ହେଉଛନ୍ତି ଅନ୍ୟତମ । ସାରା ଭାରତର ଜନ୍ମାଗଣିତ ଲୋକେ ସମ୍ବିଧାନ ନିର୍ମାଣ ସଭାର ସଭାପତି ପାଇଁ ତାଙ୍କୁ ହିଁ ଆଖି ଆଗରେ ଦେଖିବାକୁ ପାଇଲେ । ତାଙ୍କୁ ମଧ୍ୟ ସ୍ୱାଧୀନ ଭାରତର ପ୍ରଥମ ଆଇନ ମନ୍ତ୍ରୀ କରାଗଲା ।

ଭାରତ ସମ୍ବିଧାନ ପ୍ରଣୟନ କରିବା ଭଳି ତାଙ୍କର ସେହି ଅସାଧାରଣ ଦକ୍ଷତା ପାଇଁ ତାଙ୍କୁ ଆଜି ଭାରତ ଇତିହାସ ମଧ୍ୟରେ ସ୍ମରଣ କରାଯାଉଛି । ଭାରତ ଏପରି ଏକ ରାଷ୍ଟ୍ର, ଯେଉଁଠାରେ ବିଭିନ୍ନ ଭାଷା, ବିଭିନ୍ନ ଜାତି ଓ ବିଭିନ୍ନ ସମ୍ପ୍ରଦାୟ ସମାହାର ହୋଇ ରହିଛି । ଏହି ସବୁ କାରଣରୁ ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ସମସ୍ୟାମାନଙ୍କରେ, ଭାରତୀୟ ଜାତୀୟ ଜୀବନ ଅତିବ ଜଟିଳ

ହୋଇ ପଡ଼ିଥିଲା । ଏ ପରିସ୍ଥିତିରେ ସମସ୍ତଙ୍କୁ ସମାନ ଅଧିକାର ଓ ନ୍ୟାୟ ଦେଇ-ପାରିବା ଭଳି ଏକ ସମ୍ବିଧାନ ପ୍ରସ୍ତୁତ କରିବା କମ କଷ୍ଟସାଧ୍ୟ କାର୍ଯ୍ୟ ନୁହେଁ । ଏଥିପାଇଁ ଭାରତୀୟ ଇତିହାସ ଓ ଆଇନ ସମ୍ବନ୍ଧରେ ଗଭୀର ଜ୍ଞାନ, ଭାରତୀୟ ସମାଜବିତ୍‌ମାନଙ୍କର ମତାମତର ତୁଳନାତ୍ମକ ସମୀକ୍ଷା ଓ ବିଭିନ୍ନ ଦେଶମାନଙ୍କର ସମ୍ବିଧାନରେ ଥିବା ଗଣତାନ୍ତ୍ରିକ ସୁବ୍ୟବସ୍ଥାର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଏକାନ୍ତ ଆବଶ୍ୟକ । ଏହି ସବୁ ଚିନ୍ତାଧାରାକୁ ଆଧାରରେ ରଖି ୧୯୪୭ ମସିହା ଅଗଷ୍ଟ ୨୯ ତାରିଖରେ ଗୋଟିଏ କମିଟି ଭାରତ ସମ୍ବିଧାନ ପ୍ରଣୟନ ପାଇଁ ଗଠନ କରାଗଲା । ଆମ୍ବେଦକର ସର୍ବସମ୍ମତିକ୍ରମେ ସେହି କମିଟିର ଚେୟାରମ୍ୟାନ ବାଛି ହେଲେ । ଶ୍ରୀ ଟି.ଟି. କୃଷ୍ଣମାଚାରୀ ସେହି କମିଟିର ଜଣେ ସଭ୍ୟ ହିସାବରେ କହିଲେ,-"ଯଦିଓ ୭ ଜଣ ଲୋକଙ୍କୁ ନେଇ ଗୋଟିଏ କମିଟି ଗଠନ କରାଗଲା, ଜଣେ ସଭ୍ୟ ମରି-ଗଲେ ମଧ୍ୟ ତାଙ୍କ ସ୍ଥାନରେ କାହାକୁ ନିଆଗଲା ନାହିଁ । ଜଣେ ସଭ୍ୟ ସରକାରୀ କାର୍ଯ୍ୟରେ ବ୍ୟସ୍ତ ରହିଲେ । ସ୍ୱାସ୍ଥ୍ୟ କାରଣରୁ ଦୁଇଜଣ ଦିଲ୍ଲୀରୁ ଦୂରରେ ରହିଲେ । ଯାହା ଫଳରେ ଡକ୍ଟର ଭୀମରାଓ ଆମ୍ବେଦକରଙ୍କୁ ସମ୍ବିଧାନ ଚିଠା ପ୍ରସ୍ତୁତ କରିବା ପାଇଁ ସମ୍ପୂର୍ଣ୍ଣ ଦାୟିତ୍ୱ ବହନ କରିବାକୁ ପଡ଼ିଲା ।" ଆଶ୍ଚର୍ଯ୍ୟ ଜନକ ଭାବେ ଆମ୍ବେଦକର ତାହା ସମାପନ କଲେ । ଆଇନମନ୍ତ୍ରୀ ହିସାବରେ ଡକ୍ଟର ଆମ୍ବେଦ-କର ସମ୍ବିଧାନ ଚିଠା ତା ୪।୧୧।୪୮ରେ କନଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିରେ ଉପସ୍ଥାପନ କଲେ । ସମ୍ବିଧାନ ବିଷୟକ ବହୁ ଜଟିଳ ପ୍ରଶ୍ନର ଯଥାଯଥ ଉତ୍ତର ଆମ୍ବେଦକର ଦକ୍ଷତାର ସହିତ, ସମ୍ବିଧାନ ନିର୍ମାଣ ସଭାରେ ଉପସ୍ଥାପନ କରିବାକୁ ସକ୍ଷମ ହୋଇଥିଲେ । ସମ୍ବିଧାନରେ ଥିବା ଅସ୍ପୃଶ୍ୟତା ଦୂରୀକରଣ ବିଧିଗଟି ତା ୨୯।୧୧।୧୯୪୮ ରେ ସମ୍ବିଧାନ ନିର୍ମାଣ ସଭା ଦ୍ୱାରା ଗ୍ରହଣ କରାଗଲା ।

ଏହାହିଁ ଥିଲା ଆମ୍ବେଦକରଙ୍କ ଜୀବନ ସଂଗ୍ରାମର ଏକ ବିଜୟ ଧ୍ୱଜା ସ୍ୱରୂପ । ସାରା ଭାରତରେ ଏକ ନୂତନ ସାମାଜିକ ଜୀବନର ଅଧ୍ୟାୟ ଆରମ୍ଭ ହେଲା । ଠିକ୍ ସେହି ଦିନଠାରୁ ସମ୍ବିଧାନ ନିର୍ମାଣ ସଭାର ଆଲୋଚନାର ଉତ୍ତରରେ ଆମ୍ବେଦକର ଯେଉଁସବୁ ଯୁକ୍ତି ଦର୍ଶାଇଥିଲେ ତାହା ବାସ୍ତବରେ ମନେ ରଖିବା ଉଚିତ୍ । ସେ ତାଙ୍କ ବକ୍ତବ୍ୟରେ ଯୁକ୍ତିଯୁକ୍ତ ଭାବେ ଦର୍ଶାଇଥିଲେ "ଭାରତ ତାର ସ୍ୱାଧୀନତା ହରାଇଥିଲା, ତାର ନିଜ ଲୋକଙ୍କ ବିଶ୍ୱାସ ଘାତକତା ଯୋଗୁଁ । ସିନ୍ଧୁ ରାଜ୍ୟର ରାଜା 'ଦାହିର' ମହମ୍ମଦ ବିନ୍‌କାସିମଙ୍କ ଦ୍ୱାରା ପରାସ୍ତ ହେଲେ । କାରଣ ଦାହିରଙ୍କ ସୈନ୍ୟମାନେ କାସିମ୍‌ଙ୍କଠାରୁ ଲାଞ୍ଚ ଗ୍ରହଣ କରିଥିବା ଯୋଗୁଁ ସେମାନେ ଯୁଦ୍ଧ କ୍ଷେତ୍ରରେ ରାଜାଙ୍କ ପାଇଁ ସଂଗ୍ରାମ କଲେନାହିଁ । ରାଜା ଜୟଚନ୍ଦ୍ର ହିଁ ମହମ୍ମଦ ଘୋରିଙ୍କୁ ଆମନ୍ତ୍ରଣ କରି ଆଣିଥିଲେ, ରାଜା ପୃଥିରାଜଙ୍କ ବିରୁଦ୍ଧରେ ସଂଗ୍ରାମ କରିବା

ପାଇଁ । ଯେତେବେଳେ ଶିବାଜି ହିନ୍ଦୁମାନଙ୍କ ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିଲେ । ଅନ୍ୟ ମରହଟ୍ଟା ନେତାମାନେ ଓ ରାଜପୁତମାନେ ମୋଗଲ ପକ୍ଷରେ ସଂଗ୍ରାମ କରୁଥିଲେ । ନେତାମାନେ କେବଳ ନୀରବ ଦ୍ରଷ୍ଟା ହୋଇ ରହିଲେ ଚଳିବନାହିଁ । ଏହାର ପୁନରାବୃତ୍ତି ଯେପରି ନହୁଏ ଏଥିପାଇଁ ପ୍ରତ୍ୟେକ ଯେପରି ସ୍ଥିର ସିଦ୍ଧାନ୍ତ ନେବେ ଯେ ସ୍ୱାଧୀନତା ରକ୍ଷା ପାଇଁ ସେମାନେ ସେମାନଙ୍କର ଶେଷ ରକ୍ତବିନ୍ଦୁ ଦେଇ ସଂଗ୍ରାମ କରିବେ ।

ସମ୍ବିଧାନ ନିର୍ମାଣ ସଭା ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମ୍ବିଧାନର ଡୋରା ଗ୍ରହଣ କଲେ । ଡକ୍ଟର ଆମ୍ବେଦକରଙ୍କ ଅସାଧାରଣ ମେଧାଶକ୍ତି ଅଗାଧ ପାଣ୍ଡିତ୍ୟ, ଦୃଢ଼ ସଙ୍କଳ୍ପ ଯୋଗୁଁ ସେ ସମାଜର ସୁଉଚ୍ଚ ସମ୍ମାନକୁ ଉଠି ପାରିଥିଲେ ଓ ଭାରତଭଳି ଏକ ରାଷ୍ଟ୍ରର ସମ୍ବିଧାନ ପ୍ରସ୍ତୁତ କରି ପାରିଥିଲେ । ତେଣୁ ତାଙ୍କୁ ଭାରତର ଆଧୁନିକ ମନୁ ଆଖ୍ୟା ଦିଆଯାଇଥିଲା ।

ଆମ୍ବେଦକରଙ୍କ ପ୍ରଥମ ସ୍ତ୍ରୀ ରମାବାଈଙ୍କର ଦେହାନ୍ତ ହୋଇଯିବାରୁ ସେ ଡକ୍ଟର ସାରଦା କବିର୍‌ଙ୍କୁ ବିବାହ କରିଥିଲେ । କେନ୍ଦ୍ର ମନ୍ତ୍ରୀମଣ୍ଡଳ ମଧ୍ୟରେ ସୃଷ୍ଟି ହୋଇଥିବା କେତେକ ନୀତିଗତ ମତ ପାର୍ଥକ୍ୟ ଯୋଗୁଁ ଆମ୍ବେଦକର ୧୯୫୧ ମସିହାରେ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇଥିଲେ । ୧୯୫୨ ନିର୍ବାଚନରେ ସେ ଲୋକସଭାକୁ ନିର୍ବାଚିତ ହୋଇ ପାରି ନଥିଲେ ମଧ୍ୟ ତାଙ୍କୁ ରାଜ୍ୟସଭାକୁ ନିର୍ବାଚିତ କରି ନିଆଯାଇଥିଲା । ରାଜ୍ୟ ସଭାରେ ସେ ଯେତେବେଳେ ଅନୁଭବ କଲେ 'ସରକାର ହରିଜନମାନଙ୍କୁ ଉପଯୁକ୍ତ ନ୍ୟାୟ ଦେଉ ନାହାନ୍ତି, ସେତେବେଳେ ସେ ଅତି ରୂକ୍ଷ ଭାବରେ ସରକାରଙ୍କୁ ସମାଲୋଚନା କରିବାକୁ ପଛାଉ ନଥିଲେ । ୧୯୫୩ ମସିହାରେ ସରକାର ରୋକିଏ ବିଲ ଆଣିଲେ, ଯେଉଁଥିରେ ବ୍ୟବସ୍ଥା ରହିଲା ଯେଉଁମାନେ ଅସ୍ପୃଶ୍ୟତାକୁ ଅଭ୍ୟାସ କରିବେ ସେମାନଙ୍କୁ କାରାବରଣ ଓ ଜୋରିମାନାରେ ଦଣ୍ଡିତ କରାଯିବ । ସରକାରୀ ଚାକିରିରେ ଥିଲେ ସେମାନଙ୍କୁ ଚାକିରିରୁ ବହିଷ୍କାର ଓ ବ୍ୟବସାୟରେ ଥିଲେ, ତାଙ୍କର ଅନୁମତି ପତ୍ର ରଦ କରାଯିବ ଆସିବ ।

ଭାରତ ସମ୍ବିଧାନ ପ୍ରସ୍ତୁତ ହୋଇ ସାରିବା ପରେ ଆମ୍ବେଦକରଙ୍କ ମନ ବୌଦ୍ଧ ଧର୍ମ ଆଡ଼କୁ ଆକର୍ଷିତ ହେଲା । ତାଙ୍କ ହୃଦୟକୁ ନ୍ୟାୟ ଓ ଶାନ୍ତିର ତୃଷ୍ଣା ବିଚଳିତ କରି ପକାଇଲା ସେ ୧୯୫୨ ମସିହାରେ ଶ୍ରୀଲଙ୍କାଠାରେ ହେଉଥିବା ବୌଦ୍ଧ ସମ୍ମିଳନୀରେ ଯୋଗଦେଲେ । ଯଦିଓ ହିନ୍ଦୁ ଆଧିପତ୍ୟ ସମାଜପ୍ରତି ତାଙ୍କର ତିକ୍ତତା ବଢି ଚାଲିଥିଲା ତଥାପି ସେ ଖ୍ରୀଷ୍ଟ ବା ମୁସଲମାନ ଧର୍ମପ୍ରତି ଆକୃଷ୍ଟ ହୋଇନଥିଲେ ।

ସଙ୍ଗେସଙ୍ଗେ ସ୍ଥିର ନିଶ୍ଚିତ ହୋଇ ବୌଦ୍ଧ ଧର୍ମ ଗ୍ରହଣ କଲେ । ଗମ୍ଭୀର ଚିନ୍ତା ଓ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା ପରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଥିଲେ । ବହୁ ଲୋକଙ୍କ ମନରେ ପ୍ରଶ୍ନ ଉଠିଲା–ଆମ୍ବେଦକର କାହିଁକି ବୌଦ୍ଧ ଧର୍ମ ଗ୍ରହଣ କଲେ ? ତାର ଉତ୍ତରରେ ଅମ୍ବେଦକର କହିଥିଲେ ଯେ ସେ ତାଙ୍କ ଜୀବନର ସାଧ୍ୟଂ କାଳରେ ଅନୁଭବ କରୁଛନ୍ତି, ପୃଥିବୀର ଚତୁଃପାର୍ଶ୍ବସ୍ଥ ବିଭିନ୍ନ ଦେଶମାନଙ୍କରୁ ତାଙ୍କର ଅନୁନ୍ନତ ଶ୍ରେଣୀର ଲୋକମାନଙ୍କ ପ୍ରତି ଥିବା ଚିନ୍ତାଧାରା ଉପରେ ପ୍ରଚଣ୍ଡ ଆକ୍ରମଣ କରାଯାଉଛି । ଏହି ଆକ୍ରମଣାତ୍ମକ ଚିନ୍ତାଧାରାର ବନ୍ୟାରେ ଏହି ଲୋକମାନେ ପଥହରା ହୋଇଯାଉଛନ୍ତି । ଏହି ଦେଶର ମୂଳ ଜୀବନ-ସ୍ରୋତ ବା ସଂସ୍କୃତି ଠାରୁ ସେମାନଙ୍କୁ ବିଚ୍ଛିନ୍ନ କରି ବିଦେଶାଗତ ସଂସ୍କୃତି ମଧ୍ୟରେ ସାମିଲ କରିଦେବା ପାଇଁ ପ୍ରବଳ ଚେଷ୍ଟା ଚାଲିଛି । ଏହି ମନୋଭାବ ଦ୍ରୁତଗତିରେ ଆଗେଇ ଚାଲିଛି । ଏପରି ତାଙ୍କର କେତେକ ସହକର୍ମୀ ଯେଉଁମାନେକି ଅସ୍ପୃଶ୍ୟତା, ଦରିଦ୍ରତା ଓ ଅସମାନତା ପ୍ରତି ବୀତସ୍ପୃହ ଥିଲେ ସେମାନେ ମଧ୍ୟ ଏହି ସ୍ରୋତର ବିପକ୍ଷରେ ଛିଡ଼ାହେବା ପାଇଁ ସାମର୍ଥ୍ୟ ହରାଇ ବସିଥିଲେ । ତାଙ୍କର ଇଚ୍ଛାଥିଲା ସେମାନେ ଏହି ମୂଳ ଜାତୀୟ ସ୍ରୋତରୁ ବିଚ୍ଛିନ୍ନ ହୋଇ ନ ଯାଆନ୍ତୁ । ସେ, ସେମାନଙ୍କୁ ଗୋଟିଏ ସର୍ବୋତ୍କୃଷ୍ଟ ପଥ, ଯାହାକି ସେମାନଙ୍କର ଆର୍ଥିକ, ରାଜନୈତିକ ଜୀବନରେ ପରିବର୍ତ୍ତନ ଆଣି ପାରିବ ସେହି ପଥର ଅନୁସନ୍ଧାନରେ ଯାଇ ବୌଦ୍ଧ ଧର୍ମର ପଥକୁ ଏକ ସର୍ବୋତ୍କୃଷ୍ଟ ପଥ ଭାବରେ ଦେଖିବାକୁ ପାଇଥିଲେ । ତେଣୁ ସେ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ ।

ହଜାର ହଜାର ବର୍ଷ ଧରି ଯେଉଁ ଜୀବନଧାରା ଏହି ଭାରତ ବର୍ଷରେ ବହି ଆସିଛି, ସେ ସ୍ରୋତର ସ୍ଥିତି ଖୁବ୍ ସୁଦୃଢ଼ । କେବଳ ବୌଦ୍ଧଧର୍ମ ହିଁ ସେହି ପ୍ରବଳ ସ୍ରୋତର ସମ୍ମୁଖରେ କୌଣସି ବାଧା ସୃଷ୍ଟି ନକରି ଏକ ସଦ୍ଭାବ ମୂଳକ ପରିବର୍ତ୍ତନ ଆଣିପାରିବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ନ୍ୟାୟ ଓ ଶାନ୍ତି ଦେଇପାରିବ । ଅନୁନ୍ନତ ଶ୍ରେଣୀର ଲୋକେ ନିଶ୍ଚିତ ଭାବରେ ତାଙ୍କ ପ୍ରତି ହେଉଥିବା ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରିବାକୁ ସକ୍ଷମ ହୋଇ ପାରିବେ । ସେମାନେ ଏହି ଅନ୍ୟାୟର ନିଶ୍ଚିତ ଭାବେ ମୂଳପୋଛ କରିପାରିବେ । ମାତ୍ର ହିନ୍ଦୁ ସମାଜରେ ଅସ୍ପୃଶ୍ୟତା ଏକ ସମସ୍ୟା । ଏହାକୁ ସମାଧାନ କରିବା ପାଇଁ ସେ ଘୋଷଣା କରିଥିଲେ ଯେ, ଏପରି ଏକ ପଥ ଗ୍ରହଣ କରାଯିବ, ଯାହାଦ୍ୱାରା ଭାରତୀୟ ସଂସ୍କୃତି ଓ ତାର ଇତିହାସର କୌଣସି କ୍ଷତି କରାଯାଇ ପାରିବ ନାହିଁ । ସେହି ପଥହିଁ ହେଉଛି ବୌଦ୍ଧ ଧର୍ମର ପଥ । ଏହା ହିଁ ଥିଲା ତାଙ୍କର ମୌଳିକ ଚିନ୍ତାଧାରା ।

ଅମ୍ବେଦକର କୌଣସି କାଳ୍ପନିକ ଘଟଣା ଉପରେ ବିଶ୍ୱାସ କରୁନଥିଲେ । ସେ ବିଶ୍ୱାସ କରୁଥିଲେ, ଆର୍ଯ୍ୟମାନେ ଅନ୍ୟ ସ୍ଥାନରୁ ଆସି ଏ ଦେଶର ଦସ୍ୟୁ ବା ଦ୍ରାବିଡ଼ ମାନଙ୍କୁ ପରାସ୍ତ କରିଥିଲେ । ବେଦରେ ଏହାର କୌଣସି ଭିତ୍ତି ନାହିଁ । ବେଦରେ ଆର୍ଯ୍ୟ ଶବ୍ଦ କେବଳ ସାମାଜିକ ଅର୍ଥ ବ୍ୟବହାର କରାଯାଇଅଛି-ସମ୍ଭ୍ରାନ୍ତ ବା ସୁକୁଳଜନଙ୍କର ବିଶେଷଣ ଭାବେ । ମହାଭାରତ ଓ ରାମାୟଣରେ ଦସ୍ୟୁ ଶବ୍ଦ ବ୍ୟବହୃତ କରାଯାଇଛି ସବୁ ବର୍ଣ୍ଣ ବା ଜାତିର ଜୀବନ ଅବସ୍ଥା ମଧ୍ୟରେ । ଏପରି ଭାବରେ ଆମ୍ବେଦକର ନିଜର ମତକୁ ଦୃଢ଼ତାର ସହିତ ସମର୍ଥନ କରୁଥିଲେ । ୧୯୫୬ ମସିହା ଅକ୍ଟୋବର ମାସ ୧୪ ତାରିଖ ଦିନ ଆମ୍ବେଦକର ତାଙ୍କର ସ୍ତ୍ରୀ ସହିତ ନାଗପୁରଠାରେ ଏକ ବିରାଟ ଉତ୍ସବରେ ବୌଦ୍ଧଧର୍ମ ଗ୍ରହଣ କଲେ ।

ଅମ୍ବେଦକର, ନିଜକୁ ତାଙ୍କର ଜୀବନବ୍ୟାପୀ ସଂଗ୍ରାମ ମଧ୍ୟରେ, ସମ୍ପୂର୍ଣ୍ଣ ଭାବେ ଅଛୁଆମାନଙ୍କ ଉଦ୍ଦେଶ୍ୟରେ, ସେମାନଙ୍କୁ ସମାଜିକ ନ୍ୟାୟ ଓ ସମାନତା ଦେବାପାଇଁ ଉତ୍ସର୍ଗୀକୃତ କରିଥିଲେ । ସେ ବହୁ ସମୟରେ କହୁଥିଲେ "ଈଶ୍ୱର ମୋତେ ଅଛୁଆମାନଙ୍କ ପାଇଁ ଉଦ୍ଦିଷ୍ଟ କରି ପଠାଇଅଛନ୍ତି । ମୋର ସେ କାର୍ଯ୍ୟ ସମାପ୍ତ ହେବା ପର୍ଯ୍ୟନ୍ତ ସାହାଯ୍ୟ କରନ୍ତୁ ।" ମାତ୍ର ୧୯୫୬ ମସିହା ଡିସେମ୍ବର ମାସ ୬ ତାରିଖ ଦିନ ବାବା ସାହେବଙ୍କର ଦେହାବସାନ ହୋଇ-ଯାଇଥିଲା ।

## ଆମ୍ବେଦକରଙ୍କ ଜୀବନର ଗୁରୁତ୍ୱପୂର୍ଣ୍ଣ ଘଟଣା

| ମସିହା | ଘଟଣାବଳୀ . |
|---|---|
| ୧୮୯୧ ଏପ୍ରିଲ ୧୪ | ତାରିଖ-ଜନ୍ମ । ପିତା-ରାମଜୀ ମାଲୋଜୀ ସକପାଲ । ମାତା-ଭୀମବାଈ । |
| ୧୯୦୫— | ୧୪ ବର୍ଷ ବୟସରେ ରମାବାଈଙ୍କ ସହ ବିବାହ । |
| ୧୯୦୮ | — ବମ୍ବେର ଏଲଫିନଷ୍ଟୋନ ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ମାଟ୍ରିକ ପାସ୍ । |
| ୧୯୧୨ | — ଏଲଫିନଷ୍ଟୋନ କଲେଜରୁ ବି.ଏ. ପାସ୍ । |
| ୧୯୧୫ | — ଭାରତରେ ଜାତି ପ୍ରଥା, ସେଗୁଡ଼ିକର ଗଠନ ପ୍ରଣାଳୀ, ସୃଷ୍ଟି ଓ ବିସ୍ତାର ସମ୍ବନ୍ଧରେ ଲେଖା । |
| ୧୯୧୬ | — ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଅର୍ଥ ଶାସ୍ତ୍ରରେ ଏମ.ଏ. ପାସ୍ । ପି.ଏଚ୍.ଡ଼ି. ଲାଭ । |
| ୧୯୧୬ | — ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସ, ରାଜନୀତିକ ବିଜ୍ଞାନ ଓ 'ଗ୍ରେ'ଙ୍କ 'ଇନ'ରେ ଯୋଗଦାନ । |
| ୧୯୧୮-୨୦ | — ବମ୍ବେର ସିଡ଼େନହାମ ଇକୋନୋମିକ୍ସ ଏଣ୍ଡ କମର୍ସ କଲେଜରେ ଇକୋନୋମିକ୍ସ ଅଧ୍ୟାପକ ଭାବେ ଶିକ୍ଷା ପ୍ରଦାନ । |
| ୧୯୧୯ | — ଭାରତର ଦଳିତ ଜାତିଙ୍କର ରାଜନୈତିକ ଅଧିକାର ଦାବୀ କରି ସାଉଥବ୍ୟୁରୋ ରିଫରମସ୍ କମିଟିରେ ସାକ୍ଷ୍ୟ ପ୍ରଦାନ । |
| ୧୯୨୦ ଜୁନ | — "ମୂକ ନାୟକ" ନାମକ ଏକ ପାକ୍ଷିକ ପତ୍ରିକା ପ୍ରକାଶ କରିଥିଲେ । |
| ୧୯୨୧ | — ଇଂଲଣ୍ଡରେ ଏମ.ଏସ.ସି. ଡ଼ିଗ୍ରୀ ଲାଭ କଲେ । |
| ୧୯୨୩ | — ଡ଼ି.ଏସ.ସି ଡ଼ିଗ୍ରୀ ଲାଭ, ଆଇନ ବ୍ୟବସାୟରେ ଯୋଗଦାନ ଓ ଟଙ୍କାର ସମସ୍ୟା ଉପରେ ଗବେଷଣା ମୂଳକ ପ୍ରବନ୍ଧ ଲେଖିଥିଲେ । |
| ୧୯୨୬ ଜୁନ | — ବମ୍ବେ ହାଇକୋର୍ଟରେ ଆଇନ ବ୍ୟବସାୟ, ଜଣେ ରାଜନୀତିଜ୍ଞ, ଲେଖକ, ଓ ଶିକ୍ଷାବିତ୍ ଭାବେ ସମାଜ ସେବା କାର୍ଯ୍ୟରେ ନିଜକୁ ନିୟୋଗ । |

୧୯୨୪ — ଅଛୁଆଁ ମାନଙ୍କର ନୈତିକ ଓ ଭୌତିକ ଉନ୍ନତି ପାଇଁ "ବହିଷ୍କୃତ ହିତକାରିଣୀ ସଭା"ର ଆରମ୍ଭ ।

୧୯୨୫-୩୦ —ଅଛୁଆଁ ଛାତ୍ରମାନଙ୍କ ପାଇଁ ବମ୍ବେ ପ୍ରେସିଡେନସିରେ ୪ଟି ଛାତ୍ରାବାସ ପ୍ରତିଷ୍ଠା ।

୧୯୨୬-୩୪ —ବମ୍ବେ ବିଧାନ ସଭାକୁ ମନୋନୀତ ସଭ୍ୟ ହେଲେ ।

୧୯୨୭ ଏପ୍ରିଲ —ପାକ୍ଷୀକ ପତ୍ରିକା "ବହିଷ୍କୃତ ଭାରତ" ଆରମ୍ଭ କଲେ ।

୧୯୨୭ ସେପ୍ଟେମ୍ବର— ସବର୍ଣ୍ଣ ଓ ଅସବର୍ଣ୍ଣ ମଧ୍ୟରେ ସାମାଜିକ ଅଧିକାର ସମ୍ବନ୍ଧରେ ପ୍ରଚାର ପାଇଁ "ସମାଜ ସମତା ସଂଘ" ଗଠନ କଲେ ।

୧୯୨୭ ଡିସେମ୍ବର — ମାହାଡଠାରେ ଅଛୁଁଆ ମାନଙ୍କର ସର୍ବସାଧାରଣ ଜଳାଶୟ (ଚୌଦାର ପୋଖରୀ) ରୁ ଜଳ ବ୍ୟବହାର କରିବାର ସାମାଜିକ ଅଧିକାର ସାବ୍ୟସ୍ତ କରିବା ପାଇଁ ସତ୍ୟାଗ୍ରହ କଲେ । ପରେ ୧୯୩୭ ମାର୍ଚ୍ଚ ମାସରେ ବମ୍ବେ ହାଇକୋର୍ଟରେ ଜୟଲାଭ କଲେ ।

୧୯୨୮ —ବମ୍ବେ ଲଅ କଲେଜରେ ପ୍ରଫେସର ଭାବେ ନିଯୁକ୍ତି ପାଇଲେ । ପରେ ପ୍ରିନସିପାଲ ପଦରେ ନିଯୁକ୍ତ ହେଲେ ।

୧୯୨୯ ମାର୍ଚ୍ଚ — ସମତା ସଂଗଠନ ଆରମ୍ଭ କଲେ ।

୧୯୩୦ —"ଦି ଜନତା" ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କଲେ ।

୧୯୩୦ ମାର୍ଚ୍ଚ — ନାସିକଠାରେ 'କଲାରାମ' ମନ୍ଦିରରେ ପ୍ରବେଶ ଅଧିକାର ପାଇଁ ସତ୍ୟାଗ୍ରହ ଚଳାଇଲେ ।

୧୯୩୦-୩୩ —ମନୋନୀତ ପ୍ରତିନିଧି ଭାବେ ଲଣ୍ଡନଠାରେ ୩ଟି ଗୋଲ୍ ଟେବୁଲ ବୈଠକରେ ଯୋଗଦାନ କଲେ ।

୧୯୩୧ ନଭେମ୍ବର — ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକରେ ସଂଖ୍ୟାଲଘୁ କମିଟିରେ ଅଛୁଆଁ ମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ଦାବୀକୁ ଗାନ୍ଧୀ ବିରୋଧ କରୁଥିଲେ ।

୧୯୩୨ ଅଗଷ୍ଟ — ଅଛୁଆଁ ମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କମୁନାଲ ଆୱାର୍ଡ ଘୋଷଣା କରାଗଲା ।

୧୯୩୨-ସେପ୍ଟେମ୍ବର— ଗାନ୍ଧିଜୀଙ୍କର ଅନଶନ ଓ ସର୍ବଶେଷରେ ୟୁରବଧା ଜେଲ୍‌ରେ ପୁନା ପ୍ୟାକ୍ଟ ସ୍ୱାକ୍ଷର ।

୧୯୩୫- — ଜୁରିସ୍ ପ୍ରୁଡେନ୍‌ସିର ପେରି ପ୍ରଫେସର ଭାବେ ନିଯୁକ୍ତ ।

୧୯୩୫-ଅକ୍ଟୋବର ୧୩— ନାସିକ୍ ଜିଲ୍ଲାର ୟୋଲାଠାରେ ଗୋଟିଏ ସାଧାରଣ ସଭାରେ ଘୋଷଣା କଲେ ଯେ ଅଚ୍ଛୁଆମାନେ ହିନ୍ଦୁ ଶୃଙ୍ଖଳକୁ ତ୍ୟାଗ କରିବେ ଓ ଅନ୍ୟଧର୍ମ ଗ୍ରହଣ କରିବେ ।

୧୯୩୬-ଅକ୍ଟୋବର— ଭାରତର 'ସ୍ୱାଧୀନ ଶ୍ରମିକ ଦଳ' ଗଠନ କଲେ ।

୧୯୪୨- — ସର୍ବଭାରତୀୟ ରାଜନୈତିକ ଦଳ ଭାବେ ସିଡ୍ୟୁଲଡ୍ କାଷ୍ଟ ଫେଡ଼େରେସନ ଗଠନ କଲେ ।

୧୯୪୩- — ରାନାଡେ, ଗାନ୍ଧୀ ଓ ଜିନ୍ନା ଉପରେ ଏକ ସନ୍ଦର୍ଭ ଲେଖିଲେ ।

୧୯୪୨-ଜୁଲାଇ ଠାରୁ
୧୯୪୬-ମାର୍ଚ୍ଚ — ଗଭର୍ଣ୍ଣର ଜେନେରଲ୍ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ସଭ୍ୟ ହିସାବରେ ସିଡ୍ୟୁଲଡ୍ କାଷ୍ଟଙ୍କର ଶିକ୍ଷା ପାଇଁ ଯଥେଷ୍ଟ ଅର୍ଥ ସରକାରଙ୍କ ଦ୍ୱାରା ବ୍ୟବସ୍ଥା କରିପାରିଲେ ଓ କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ଚାକିରି କ୍ଷେତ୍ରରେ ସେମାନଙ୍କ ପାଇଁ ସ୍ଥାନ ସଂରକ୍ଷଣର ବ୍ୟବସ୍ଥା କରିପାରିଲେ ।

୧୯୪୫- — ପିପୁଲ୍‌ସ୍ ଏଜୁକେସନ ସୋସାଇଟି ଗଠନ କଲେ । ଯାହା ଫଳରେ ବମ୍ବେ ପ୍ରେସିଡେନ୍‌ସି ଠାରେ ସିଡ୍ୟୁଲଡ୍ କାଷ୍ଟ ଛାତ୍ରଙ୍କପାଇଁ ବହୁ କଲେଜ ବ୍ୟବସ୍ଥା ହୋଇପାରିଲା ।

୧୯୪୬- — କେଉଁମାନେ ଶୂଦ୍ର ଓ କିପରି ସେମାନେ ଇଣ୍ଡୋ-ଏରିଆନ୍ ସମାଜର ଚତୁର୍ବର୍ଣ୍ଣ ମଧ୍ୟକୁ ଆସିଲେ ସେ ସମ୍ବନ୍ଧରେ ଏକ ପ୍ରବନ୍ଧ ଲେଖିଲେ ।

୧୯୪୬-୪୭ — କଂଗ୍ରେସ ଦ୍ୱାରା ସେ କନ୍‌ଷ୍ଟିଚୁଏଣ୍ଟ ଆସେମ୍ବ୍ଲିକୁ ମନୋନୀତ ହେଲେ । ସେ ମଧ୍ୟ ନେହେରୁ କ୍ୟାବିନେଟ୍‌ରେ ଆଇନ ମନ୍ତ୍ରୀ ରୂପେ ଯୋଗଦେଲେ । ଭାରତ ସମ୍ବିଧାନ ପ୍ରଣୟନ କମିଟିର ଚେୟାରମ୍ୟାନ୍ ଭାବେ ଦକ୍ଷତାର ସହିତ ବିଲ୍‌ଟିକୁ ପାସ୍ କରାଇ ପାରିଲେ । ହିନ୍ଦୁ କୋଡ

ବିଲ୍ ପାଇଁ ପ୍ରସ୍ତୁତ କରାଯାଇଥିବା ଡ୍ରାଫ୍ଟ ପାଇଁ ତାଙ୍କୁ "ଆଧୁନିକ ମନୁ" ଆଖ୍ୟା ଦିଆଯାଇଥିଲା । ସେ କ୍ୟାବିନେଟ୍‌ରୁ ଇସ୍ତଫା ଦେଲେ ।

୧୯୫୧- — ପାର୍ଲିଆମେଣ୍ଟ ନିର୍ବାଚନରେ ହାରିଲେ ।

୧୯୫୨-ଫେବୃଆରୀ — ବମ୍ବେ ଲେଜିସ୍ଲେଟରସ୍ ମାନଙ୍କ ଦ୍ୱାରା କାଉନ୍‌ସିଲ୍ ଅଫ୍ ଷ୍ଟେଟ୍‌ରୁ ମନୋନୀତ ହେଲେ ।

୧୯୫୨-ମେ — ପାର୍ଲିଆମେଣ୍ଟ ନିର୍ବାଚନରେ ଦ୍ୱିତୀୟଥର ପାଇଁ ପରାଜିତ ହେଲେ ।

୧୯୫[illegible] ୫୫ — ଭାରତରେ ବୌଦ୍ଧଧର୍ମ ପ୍ରସାର ପାଇଁ ବୌଦ୍ଧ ମହାସଭା ଗଠନ କଲେ ।

୧୯୫୬-ଅକ୍ଟୋବର — ଭାଷାଭିତ୍ତିକ ରାଜ୍ୟ ଗଠନ ଉପରେ ପ୍ରବନ୍ଧ ଲେଖିଲେ ।

୧୯୫୬-ଡିସେମ୍ବର ୬ — ନାଗପୁରଠାରେ ଏକ ବିରାଟ ଉତ୍ସବ ମଧ୍ୟରେ ବୌଦ୍ଧ ଧର୍ମ ଗ୍ରହଣ କଲେ ଓ ସେହିବର୍ଷ ଶେଷ ନିଶ୍ୱାସ ତ୍ୟାଗକଲେ ।

# ଗୋଲଟେବୁଲ ବୈଠକରେ ବାବା ସାହେବଙ୍କ ଦ୍ୱାରା ଉପସ୍ଥାପନ କରାଯାଇଥିବା ଦୁଇଟି ସ୍ମାରକ ପତ୍ର

୧୯୩୦-୩୧ ମସିହାରେ ଲଣ୍ଡନଠାରେ ବସିବାକୁ ସ୍ଥିର ହୋଇଥିବା ଗୋଲଟେବୁଲ ବୈଠକ ପାଇଁ ଦଳିତ ଶ୍ରେଣୀଙ୍କ ତରଫରୁ ବାବା ସାହେବଙ୍କୁ ସର୍ବସମ୍ମତ କ୍ରମେ ପ୍ରତିନିଧିତ୍ୱ କରିବାକୁ ବଛିଥିଲେ । ଡକ୍ଟର ଆମ୍ବେଦକର ଦକ୍ଷତାର ସହିତ ପ୍ରତିନିଧିତ୍ୱ କରିବାକୁ ସମର୍ଥ ହୋଇଥିଲେ । ମହାତ୍ମା ଗାନ୍ଧୀ ସେହି ବୈଠକରେ ଦଳିତ ଶ୍ରେଣୀଙ୍କ ନେତୃତ୍ୱକୁ ହେୟଜ୍ଞାନ କରି ଏକ ବ୍ୟଙ୍ଗାତ୍ମକ ଦୃଷ୍ଟିରେ ଦେଖୁଥିଲେ ଓ ଦଳିତ ମାନଙ୍କର ସମସ୍ୟାକୁ ଆମ୍ବେଦକରଙ୍କ ନେତୃତ୍ୱ ଯଥାର୍ଥଭାବେ ପ୍ରତିପାଦିତ କରି ପାରିବ ନାହିଁ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ମାତ୍ର ବାବାସାହେବଙ୍କର ଧୀମତା ଓ ସଫଳତା ଯୁକ୍ତିଯୁକ୍ତ ବ୍ୟାଖ୍ୟାନ ଶୁଣି ଗାନ୍ଧିଜୀ ଅଭିଭୂତ ହୋଇଯାଇଥିଲେ ଓ ବାବା ସାହେବଙ୍କ ନେତୃତ୍ୱକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ ।

ସେହି ଗୋଲଟେବୁଲ ବୈଠକରେ ବାବା ସାହେବ, ଦଳିତ ଶ୍ରେଣୀଙ୍କ ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଓ ସେମାନଙ୍କୁ ସଂଖ୍ୟା ଗରିଷ୍ଠ ହିନ୍ଦୁ ଶ୍ରେଣୀଙ୍କ ଅକଥନୀୟ ଅତ୍ୟାଚାର, ଅନାଚାର କବଳରୁ ରକ୍ଷା କରିବା ପାଇଁ ନିମ୍ନୋକ୍ତ ମତେ ଦୁଇଟି ସ୍ମାରକ ପତ୍ର ଉପସ୍ଥାପନ କରିଥିଲେ ।

## ସ୍ମାରକ ପତ୍ରର ସ୍ୱରୂପ ଓ ବ୍ୟାଖ୍ୟାନ

ଭାରତୀୟ ସ୍ୱାୟତ୍ତ ଶାସନର ଭବିଷ୍ୟତ ସମ୍ବିଧାନରେ ଦଳିତ ଶ୍ରେଣୀଙ୍କ ସୁରକ୍ଷା ପାଇଁ ଗୋଟିଏ ରାଜନୈତିକ ନିରାପତ୍ତାର ସଂକଳନା ଭାରତୀୟ ଗୋଲ-ଟେବୁଲ ବୈଠକ, ଲଣ୍ଡନଠାରେ ଉପସ୍ଥାପନା କରାଗଲା ।

ନିମ୍ନୋକ୍ତ ନିର୍ଦ୍ଦିଷ୍ଟ ସର୍ତ୍ତାବଳୀ ଉପରେ ଦଳିତ ଶ୍ରେଣୀ, ନିଜକୁ ଭାରତୀୟ ସ୍ୱାୟତ୍ତଶାସନାଧୀନ ରହିବାକୁ ସ୍ୱୀକୃତି ପ୍ରଦାନ କରିବାକୁ ସମର୍ଥ ହୋଇପାରିବେ ।

୧ ମ ସର୍ତ୍ତ—

**ସମନାଗରୀକତା :-** ଦଳିତ ଶ୍ରେଣୀ, ବର୍ତ୍ତମାନଯାଏ ଚାଲି ଆସୁଥିବା ସେମାନଙ୍କ ପାରମ୍ପରିକ ଦାସତ୍ୱ ଅବସ୍ଥାରେ ଆଉ ସଂଖ୍ୟାଧିକଙ୍କ ଶାସନ ବ୍ୟବସ୍ଥା

ପାଖରେ ଅଧୀନତା ସ୍ୱୀକାର କରିବାକୁ କେବେହେଲେ ସମ୍ମତ ହେବେ ନାହିଁ । ସଂଖ୍ୟାଧିକ ଶାସନ ବ୍ୟବସ୍ଥା ପ୍ରତିଷ୍ଠା ହେବା ପୂର୍ବରୁ ଅଛୁଆଁ ପ୍ରଥାରୁ ସେମାନଙ୍କୁ ନିସ୍ତାର ମିଳିବା ସୁହୃଦସୂଚକ ବିଷୟ ହେବ । ଏହାକୁ ସେହି ସଂଖ୍ୟାଧିକଙ୍କ ଇଚ୍ଛା ବା ଦୟା ଉପରେ ଛାଡ଼ି ଦେବା କୌଣସି ମତରେ ଉଚିତ ହେବନାହିଁ । ଦଳିତ ଶ୍ରେଣୀ ରାଜ୍ୟର ଅନ୍ୟ ନାଗରିକମାନଙ୍କ ପରି ସମସ୍ତ ଅଧିକାର ଲାଭ କରି ସ୍ୱାଧୀନ ନାଗରିକ ହେବାକୁ ଯୋଗ୍ୟ ବା ସକ୍ଷମ ହେବା ଉଚିତ ।

(କ) ଅସ୍ପୃଶ୍ୟତା ଦୂର କରିବା ପାଇଁ ଓ ସମାନ ନାଗରିକ ଅଧିକାର ପ୍ରତିଷ୍ଠା କରିବା ପାଇଁ ଏହି ପ୍ରସ୍ତାବ ଉପସ୍ଥାପନ କରାଯାଉଛି ଯେ ନିମ୍ନଲିଖିତ ମୌଳିକ ଅଧିକାରମାନ ଭାରତୀୟ ସମ୍ବିଧାନର ଅନ୍ତର୍ଭୁକ୍ତ କରାଯାଉ ।

**ମୌଳିକ ଅଧିକାର :**

Ref:—U. S. A. Constitution Amendment XIV and Govt: of Ireland Act 1920, 10 & 11 Geo V. Ch. 67 See. 5 (2). This is so, in all Constitution.See Prof Keith's remarks in end 207 P.56.

ଭାରତର ସମସ୍ତ ରାଜ୍ୟବାସୀ ଆଇନ ପାଖରେ ସମାନ ଓ ସମସ୍ତେ ସମାନ ସାମାଜିକ ଅଧିକାର ପାଇବେ । କୌଣସି ପ୍ରଚଳିତ ଆଇନ, ନିୟମ, ନିର୍ଦ୍ଦେଶ, ପ୍ରଥା ବା ଆଇନର ବ୍ୟାଖ୍ୟା ଯାହାଦ୍ୱାରା କୌଣସି ଦଣ୍ଡରେ ତ୍ରୁଟି ବା ଅକ୍ଷମତା ନିର୍ଦ୍ଧାର୍ଯ୍ୟ କରାଯାଇଥାଏ ବା କୌଣସି ବିଭେଦ, ଅସ୍ପୃଶ୍ୟତା ଦୃଷ୍ଟିରୁ ରାଜ୍ୟବାସୀଙ୍କ ବିରୁଦ୍ଧରେ କରାଯାଇଥାଏ, ତାହା ଭାରତ ସମ୍ବିଧାନ କାର୍ଯ୍ୟକାରୀ ହେବା ମାତ୍ରେ ବନ୍ଦ ହୋଇଯିବ ।

(ଖ) ଭାରତ ସରକାର ଆକ୍ଟ ୧୯୧୯ର ୧୧୦ ଓ ୧୧୧ ଧାରା ଅନୁଯାୟୀ, କାର୍ଯ୍ୟନିର୍ବାହୀ ଅଧିକାରୀଗଣ ଯେଉଁ ରହିତ ବା ଛାଡ଼ ଉପଭୋଗ କରୁଥିଲେ ତାହା ଉଠାଇ ଦିଆଯିବ ଓ ସୁପ୍ରେସର ବ୍ରିଟିଶ ସରକାରଙ୍କର ଅଧିକାରୀମାନଙ୍କ ପରି ସେମାନଙ୍କର କାର୍ଯ୍ୟକ୍ଷମର ଦାୟିତ୍ୱ ବୃଦ୍ଧି କରାଯିବ ।

## ୨ୟ ସର୍ତ୍ତ

### ସମ ଅଧିକାରକୁ ଅବାଧରେ ଉପଭୋଗ କରିବା :—

ଦଳିତ ଶ୍ରେଣୀଙ୍କ ପାଇଁ ସମାନ ଅଧିକାର ଘୋଷଣାର କୌଣସି ଆବ-ଶ୍ୟକତା ନାହିଁ, ଯଦି ସେମାନଙ୍କୁ ଏହା ଅବାଧରେ ଉପଭୋଗ କରିବାକୁ ଦିଆ ନଯାଏ । ଏଥିରେ କୌଣସି ସନ୍ଦେହ ନାହିଁ ଯେ ଦଳିତ ଶ୍ରେଣୀ ଯଦି ସେମାନଙ୍କର ସମାନ ନାଗରିକ ଅଧିକାର ଉପଭୋଗ କରିବାକୁ ଚେଷ୍ଟା କରନ୍ତି, ତାହାହେଲେ ସେମାନଙ୍କୁ ରକ୍ଷଣଶୀଳ ସମାଜର ସମସ୍ତ ଶକ୍ତିଯୁକ୍ତ ପ୍ରତି-ରୋଧର ସମ୍ମୁଖୀନ ହେବାକୁ ପଡ଼ିବ । ଦଳିତ ଶ୍ରେଣୀ ସେଥିପାଇଁ ଅନୁଭବ କରନ୍ତି ଯେ ଯଦି ଏହି ଘୋଷଣା ସେମାନଙ୍କ ପାଇଁ କେବଳ ଏକ ପବିତ୍ର ଉଚ୍ଚାରଣ ମାତ୍ର ହୁଏ, ତାହା-ହେଲେ ଏହାକୁ ପ୍ରତ୍ୟେକଙ୍କ ଜୀବନର ବାସ୍ତବତା ମଧ୍ୟରେ ପ୍ରତିପାଦିତ କରି ହେବନାହିଁ । ପରନ୍ତୁ ସେମାନଙ୍କର ଏହି ଘୋଷିତ ଅଧିକାରକୁ ଉପଭୋଗ କ୍ଷେତ୍ରରେ ହେଉଥିବା ହସ୍ତକ୍ଷେପରୁ ଆବଶ୍ୟକ ମତେ ଶାସ୍ତି ଓ ଦଣ୍ଡ ଦ୍ୱାରା ରକ୍ଷା କରାଯାଇ ପାରିବ ।

(କ) ଏଣୁ ଦଳିତ ଶ୍ରେଣୀ ପ୍ରସ୍ତାବ କରନ୍ତି ଯେ, ଉପରୋକ୍ତ ଧାରାଟିକୁ ୧୯୧୯ ମସିହାର ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟର ୧୧ଦଶ ଭାଗ ସହ ଏ ସମ୍ବନ୍ଧୀୟ ଅପରାଧ, ତାର ପ୍ରକ୍ରିୟା ଓ ଦଣ୍ଡ ବିଧାନର ବ୍ୟବସ୍ଥା ଯୋଗ କରାଯାଉ ।

### ନାଗରିକତା ବିଧି ଲଙ୍ଘନ ଅପରାଧ :—

U.S. Status at large civil rights protection Acts of April 9th 1966 and of March 15th 1875 passed in the interest of the Negroes of after their emancipation.

ଯେ କେହି, କୌଣସି ବ୍ୟକ୍ତିକୁ ଆଇନଗତ କାରଣ ବ୍ୟତୀତ, ଉକ୍ତ ବ୍ୟକ୍ତିର ଅସ୍ପୃ-ଶ୍ୟତା ଯୋଗୁଁ; ବସବାସ, ଆଶ୍ରୟ ନେବାର ସୁବିଧାସୁଯୋଗ, ଶିକ୍ଷା ଅନୁଷ୍ଠାନ, ରାସ୍ତାଘାଟ, ପୋଖରୀ, କୂଅ ଓ ଅନ୍ୟ ଜଳାଶୟ, ସାଧା-ରଣ ଚଳାଚଳ ସ୍ଥାନ, ପ୍ରେକ୍ଷାଳୟ କିମ୍ବା ଅନ୍ୟାନ୍ୟ ଆମୋଦ ପ୍ରମୋଦ ସ୍ଥାନ, ଯେଉଁଥି ପାଇଁ ସେମାନେ ମଧ୍ୟ ଅଭିପ୍ରେତ ବା ଅନୁମତି ପ୍ରାପ୍ତ ହୋଇଥାନ୍ତି; ବାରଣ କରେ,

ତାହାହେଲେ ସେ ନିଶ୍ଚିତ ଭାବରେ ନିର୍ଦ୍ଧାରିତ ସମୟ ପାଇଁ ଜେଲ ଦଣ୍ଡ ଭୋଗିବ, ଯାହାକି ୫ ବର୍ଷ ପର୍ଯ୍ୟନ୍ତ ବୃଦ୍ଧି କରାଯାଇ-ପାରେ ଓ ଅର୍ଥ ଦଣ୍ଡରେ ଦଣ୍ଡିତ ହୋଇପାରେ ।

(ଖ) ଦଳିତ ଶ୍ରେଣୀଙ୍କ ପାଇଁ, ସେମାନଙ୍କର ଅଧିକାର ଉପଭୋଗ ରକ୍ଷଣଶୀଳ ବ୍ୟକ୍ତିଙ୍କର ପ୍ରତିରୋଧ, ଏକ ମାତ୍ର ଭୟ ନୁହେଁ । ସବୁଠାରୁ ଅତି ସହଜ, ସାଧାରଣ ଓ ମାରାତ୍ମକ ପ୍ରତିବନ୍ଧକ ହେଉଛି ସାମାଜିକ ବାସନ୍ଦ । ରକ୍ଷଣଶୀଳଙ୍କ ହାତରେ ଏହା ହେଉଛି ସବୁଠାରୁ ଭୟାବହ ମାରାତ୍ମକ ଅସ୍ତ୍ର ଯାହା ମାଧ୍ୟମରେ ଦଳିତ ଶ୍ରେଣୀ ସେମାନଙ୍କର ମୁକ୍ତି ଉଦ୍ଦେଶ୍ୟରେ ଯେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରନ୍ତୁ ନା କାହିଁକି, ସେ ସବୁକୁ ଅତିକ୍ରମ କରିଯିବାକୁ ସକ୍ଷମ ହୁଅନ୍ତି । ଯେଉଁ-ଭାବରେ ଏହା କାର୍ଯ୍ୟ କରେ ଓ ଯେଉଁ ଘଟଣାମାନଙ୍କ ମାଧ୍ୟମରେ ଏହା କାର୍ଯ୍ୟକାରୀ ହୁଏ ତାହା ବିଶଦ ଭାବରେ ୧୯୨୮-ମସିହାରେ ବମ୍ବେ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିବା କମିଟିର ରିପୋର୍ଟରେ ଭଲ ଭାବରେ ବର୍ଣ୍ଣନା କରାଯାଇଛି ।

“ରାଜ୍ୟର ଦଳିତ ଶ୍ରେଣୀ ଓ ଆଦିମ ଅଧିବାସୀଙ୍କର ଶିକ୍ଷା, ଅର୍ଥନୀତି ଓ ସାମାଜିକ ଅବସ୍ଥାର ତଦନ୍ତ କରାଯାଇ ସେମାନଙ୍କର ଉନ୍ନତି ପାଇଁ ବିହିତ ବ୍ୟବସ୍ଥାର ସୁପାରିସ କରାଗଲା ।”

ନିମ୍ନରେ ତାହାର ଉଦ୍ଧୃତାଂଶ ଦିଆଗଲା :—

## ଦଳିତ ଶ୍ରେଣୀ ଓ ସାମାଜିକ ବାସନ୍ଦ

“୧୦୨. ଯଦିଓ ଆମ୍ଭେମାନେ ଦଳିତ ଶ୍ରେଣୀଙ୍କର ସର୍ବସାଧାରଣ ଅଧିକାର ପାଇଁ ବିଭିନ୍ନ ପ୍ରକାରର ପ୍ରତିକାର ସୁପାରିସ କରିଅଛୁଁ, ତଥାପି ଭୟ ହୁଏ,

ସେମାନେ ତାହା କାର୍ଯ୍ୟକାରୀ କରିବା ପାଇଁ ତାଙ୍କୁ ବହୁ ଦିନ ଧରି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ । ପ୍ରଥମ ଅସୁବିଧା ହେଉଛି ରକ୍ଷଣଶୀଳ ଶ୍ରେଣୀମାନଙ୍କ ବିରୁଦ୍ଧରେ ଖୋଲ୍ଲା ଖୋଲି ଭାବେ ବିଦ୍ରୋହ କରିବେ । ଏହା ଦେଖିବାର କଥା ଯେ ଦଳିତ ଶ୍ରେଣୀ ପ୍ରତ୍ୟେକ ଗ୍ରାମରେ ସଂଖ୍ୟାଲଘୁ ଅଟନ୍ତି । ଦଳିତ ଶ୍ରେଣୀ ତାଙ୍କର ଅଧିକାର ସାବ୍ୟସ୍ତ କରି ସୁବିଧା ସୁଯୋଗ ଉପଭୋଗରେ ସଂଖ୍ୟାଧିକ ରକ୍ଷଣଶୀଳଙ୍କ ସ୍ୱାର୍ଥରେ ଆଞ୍ଚଲଗିଲେ ସେମାନେ ଯେ କୌଣସି ମତେ ସେମାନଙ୍କର ସ୍ୱାର୍ଥ ମର୍ଯ୍ୟାଦା ରକ୍ଷା କରିବାକୁ ଦୃଢ଼ ପରିକର ହେବେ । ପୋଲିସ ଦ୍ୱାରା ଅଭିଯୁକ୍ତ ହେବାର ଭୟ, ରକ୍ଷଣଶୀଳଙ୍କ ହିଂସାତ୍ମକ କାର୍ଯ୍ୟକଲାପକୁ କିଛି ଅଂଶରେ ସଂଯତ କରିପାରିଛି । ଫଳରେ ତାହା କ୍ୱଚିତ୍ ଦେଖାଯାଏ ।''

ଦ୍ୱିତୀୟ ବାଧା ହେଉଛି ଅର୍ଥନୈତିକ ଅବସ୍ଥା ପାଇଁ, ଯେଉଁଥିରେ ଦଳିତ ଶ୍ରେଣୀ ଅଦ୍ୟାବଧି ଦୃଢ ସର୍ବସ୍ୱ । ରାଜ୍ୟର ଅଧିକାଂଶ ସ୍ଥାନରେ ଦଳିତ ଶ୍ରେଣୀଙ୍କର ଅର୍ଥନୈତିକ ସ୍ୱାଧୀନତା ନାହିଁ । ସେମାନଙ୍କ ମଧ୍ୟରୁ କେତେକ ଅନ୍ୟ ରକ୍ଷଣଶୀଳ ଗୋଷ୍ଠୀଙ୍କର ଇଚ୍ଛାଧୀନ ପ୍ରଜା ହିସାବରେ ରହି ସେମାନଙ୍କର ଜମି ଚାଷ କରନ୍ତି । ଅନ୍ୟମାନେ ରକ୍ଷଣଶୀଳଙ୍କ କ୍ଷେତ ମଜୁରିଆ ଭାବେ ନିଯୁକ୍ତ ପାଇ ସେହି ଆୟ ଉପରେ ନିର୍ଭର କରି ଚଳନ୍ତି । ବାକିତକ ଚଳନ୍ତି ଗ୍ରାମ ଚାକିରିଆ ହିସାବରେ । ସେମାନଙ୍କୁ ମିଳୁଥିବା ଖାଦ୍ୟ ଓ ଶସ୍ୟ ଉପରେ ସେମାନେ ସମ୍ପୂର୍ଣ୍ଣ ନିର୍ଭରଶୀଳ । ଆମ୍ଭେମାନେ ଅସଂଖ୍ୟ ଉଦାହରଣ ଶୁଣିଛୁଁ ଯେଉଁଠାରେ ରକ୍ଷଣଶୀଳ ଗୋଷ୍ଠୀ ସେମାନଙ୍କର ଆର୍ଥିକ କ୍ଷମତାକୁ ଅସ୍ତ୍ର ରୂପେ ସେହି ଗ୍ରାମର ଦଳିତ ଶ୍ରେଣୀଙ୍କ ବିରୁଦ୍ଧରେ ପ୍ରୟୋଗ କରିଥାନ୍ତି । ଯେତେବେଳେ ଦଳିତ ଶ୍ରେଣୀ ନିଜର ଅଧିକାର ସାବ୍ୟସ୍ତ କରିବାକୁ ସାହାସ କରନ୍ତି, ସେତେବେଳେ ରକ୍ଷଣଶୀଳମାନେ ସେମାନଙ୍କୁ ନିଜ ଭୂମିରୁ ତଡ଼ି ଦିଅନ୍ତି । ଚାକିରିରୁ ବାହାର କରି ଦିଅନ୍ତି ଓ ଦରମା ବନ୍ଦ କରି ଦେଇ ଆର୍ଥିକ ଅନାଟନ ମଧ୍ୟରେ ଦଳିତ ଶ୍ରେଣୀଙ୍କୁ ଅସହାୟ କରି ପକାନ୍ତି । ଏହି ବାହାର, ସଦା ସର୍ବଦା ଏପରି ବହୁଳ ତଥା ଯୋଜନାବଦ୍ଧ ଭାବରେ କରାଯାଇ ଥାଏ, ତାହା ସହିତ ଦଳିତ ଶ୍ରେଣୀମାନଙ୍କୁ ସର୍ବସାଧାରଣ ବ୍ୟବହୃତ ରାସ୍ତା, ଦୋକାନ-ବଜାରରୁ ମଧ୍ୟ ବଞ୍ଚିତ କରିଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ କେତେକ ସମୟରେ ସାମାନ୍ୟ କାରଣ ଯୋଗୁଁ ମଧ୍ୟ ଦଳିତ ଶ୍ରେଣୀଙ୍କ ବିରୁଦ୍ଧରେ ସାମାଜିକ ବାସନ୍ଦ ଘୋଷଣା କରାଯାଇଥାଏ । ଏହାର ବାରମ୍ବାର ପ୍ରୟୋଗ ଫଳରେ ଦଳିତ ଶ୍ରେଣୀ ସେମାନଙ୍କର ସର୍ବସାଧାରଣ କୂଅ ବ୍ୟବହାରରୁ ବଞ୍ଚିତ ହୁଅନ୍ତି । ଏଭଳି ଘଟଣା ବିରଳ ନୁହେଁ, ଯେଉଁଥିରେ ଦଳିତ ଶ୍ରେଣୀଙ୍କ ବିରୁଦ୍ଧରେ ଅତି କଠିନ ବାସନ୍ଦ ବ୍ୟବସ୍ଥା ପ୍ରୟୋଗ କରାଯାଇଛି, ତାହାର କେବଳ କାରଣ ହେଉଛି ଜଣେ ଦଳିତ ଜାତି ପଇତା ପକାଇଲା, ଖଣ୍ଡିଏ ଜମି କିଣିଲା, ଖଣ୍ଡେ ଭଲ ଲୁଗା ପିନ୍ଧିଲା, ସୁନା

ଅଲଙ୍କାର ପିନ୍ଧିଲ, କିମ୍ବା ସର୍ବସାଧାରଣ ରାସ୍ତାରେ ସେମାନଙ୍କର ବରଯାତ୍ରୀ ଦଳ ଘୋଡ଼ା ଚଢି ଶୋଭାଯାତ୍ରା କରି ଯାଇଥିବା ଯୋଗୁଁ ।

ଆମ୍ଭେ ଜାଣୁନା, ଦଳିତ ଶ୍ରେଣୀଙ୍କୁ ନିଷ୍ପେଷିତ କରିବା ପାଇଁ ଏହି ସାମାଜିକ ବାସନ୍ଦ ଠାରୁ ଆଉ କଣ ଅଧିକ ମାରାତ୍ମକ ଅସ୍ତ୍ର ଥାଇପାରେ ? ଏହାର ଯେପରି ସୁଦୂର ପ୍ରସାରି ମାରାତ୍ମକ ପରିଣାମ ରହିଛି, ତା ବିରୁଦ୍ଧରେ ଯେକୌଣସି ପ୍ରକାରର ଖୋଲା ଖୋଲି ବିଦ୍ରୋହ ସମ୍ପୂର୍ଣ୍ଣ ରୂପେ ମଳିନ ପଡ଼ିଯିବ । ଏହା ଅଧିକ ଭୟଙ୍କର, କାରଣ ଏହା କାଳକ୍ରମେ ଆଇନ୍ ରୂପ ଧାରଣ କରି ଯୋଗା ଯୋଗ ବା ସମ୍ପର୍କ ସ୍ଥାପନ କରିପାରୁଥିବା ଚ ସ୍ୱାଧିନତାର ବିରୁଦ୍ଧାଚରଣ କରିବାରେ ଏକ ସୂତ୍ର ହୋଇଯାଏ । ଆମ୍ଭେମାନେ ଏକମତ ଯେ ସଂଖ୍ୟାଧିକଙ୍କ ଏକାଧିପତ୍ୟ ସ୍ୱେଚ୍ଛାଚାରିତା ଦୃଢ ହସ୍ତରେ ନିଶେଷ କରିବାକୁ ପଡ଼ିବ, ଯଦି ଦଳିତ ଶ୍ରେଣୀଙ୍କର କିଛି ଉନ୍ନତି ପାଇଁ ସେମାନଙ୍କୁ କହିବା ଓ ଚଳିବାର ସ୍ୱାଧୀନତା ଦେବାକୁ ଆମ୍ଭେମାନେ ନିଧାର୍ଯ୍ୟ କରିବା ।

ଦଳିତ ଶ୍ରେଣୀଙ୍କ ମତରେ ସେମାନଙ୍କର ଅଧିକାର ଓ ସ୍ୱାଧିନତା ପ୍ରତି ଥିବା ଏହିସବୁ ପ୍ରତିବନ୍ଧକ ଗୁଡ଼ିକୁ ଅତିକ୍ରମ କରିବାକୁ ଏକମାତ୍ର ଉପାୟ ହେଉଛି, କୌଣସି ପ୍ରକାରର ସାମାଜିକ ବାସନ୍ଦକୁ ଆଇନଗତ ଦଣ୍ଡନୀୟ ଅପରାଧ ରୂପେ ସାବ୍ୟସ୍ତ କରିବା । ସେମାନେ ଏହା ନିଧାର୍ଯ୍ୟ କରିବାକୁ ବାଧ୍ୟ ଯେ ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟ ୧୯୧୯ର ଏକାଦଶ ଖଣ୍ଡରେ ନିମ୍ନ ଲିଖିତ ଧାରାଗୁଡ଼ିକ ଯୋଗ କରାଯିବା ଉଚିତ୍ ଯେଉଁଥିରେ ଅପରାଧ, କାର୍ଯ୍ୟବିଧି ଓ ଦଣ୍ଡବିଧିର ନମୂନା ରହିଛି ।

## ୧ । ବାସନ୍ଦ ଅପରାଧର ବର୍ଣ୍ଣନା—

(କ) ଜଣେ, ଅନ୍ୟ ଜଣକୁ ବାସନ୍ଦ କରିବାକୁ ଦଣ୍ଡନୀୟ ବିବେଚିତ ହେବ, ଯିଏ—କୌଣସି ଗୃହ, ଜମି, କିମ୍ବା ମଜୁରି ସୂତ୍ରରେ କାର୍ଯ୍ୟ କରିବାକୁ, କିମ୍ବା ଅନ୍ୟ ସମ୍ବନ୍ଧିତ ବ୍ୟବସାୟ କରିବାକୁ, କିମ୍ବା କାହାକୁ ସେବା କରିବାକୁ ବା ସେବା ପାଇବାରେ ବାରଣ କରୁଥାଏ, କିମ୍ବା କୌଣସି ବ୍ୟବସାୟ ବା କାର୍ଯ୍ୟକୁ ସାଧାରଣ କ୍ରମେ ସମ୍ପାଦନ କରିବାକୁ ବାରଣ କରେ କିମ୍ବା

(ଖ) ସାମାଜିକ, ବୃତ୍ତିଗତ ବା ବ୍ୟବସାୟ ସୂତ୍ରରେ ଯାହା ଖୋଲାକ ପାଏ । ଏହି ସବୁ ପ୍ରଥା ସମାଜ ମଧ୍ୟରେ ଥିବା ସତ୍ତ୍ୱେ ଏହା ସମ୍ବିଧାନରେ ଏହି ଲୋକଙ୍କୁ

ସାଧାରଣ ଭାବେ ବ୍ୟବହାର କରି ସେମାନଙ୍କର ନାଗରିକ ସାର୍ବଭୌମ ଅଧିକାର ବା ଅନ୍ୟାନ୍ୟ ଅଧିକାରର ବିରୁଦ୍ଧାଚରଣ କରିବା କିମ୍ବା

(ଗ) କୌଣସି ମତେ ଆଘାତ କରିବା, ଅପମାନିତ କରିବା କିମ୍ବା ତାର ଆଇନଗତ ଅଧିକାର ଅନୁଯାୟୀ ଅନ୍ୟ କୌଣସି ବ୍ୟକ୍ତି ସତ୍ତ୍ୱର କାର୍ଯ୍ୟ କରିବାରେ ହସ୍ତକ୍ଷେପ କରିବା ।

(ଏହା ଏବଂ ନିମ୍ନୋକ୍ତ ଆଇନଗତ ବ୍ୟବସ୍ଥାଗୁଡ଼ିକ ଅଙ୍ଗାଙ୍ଗୀ ଭାବେ ୧୯୨୨ ମସିହାର ବର୍ମା ବାସନ୍ଦ ବିରୋଧୀ ଆକ୍ଟରୁ ଆବଶ୍ୟକ ମତେ ସାମାନ୍ୟ ପରିବର୍ତ୍ତନ ସହ ନିଆଯାଇଛି । )

୨ । ବାସନ୍ଦ ବିରୁଦ୍ଧରେ ଦଣ୍ଡବିଧି :—

ଯେ କେହି, କୌଣସି ବ୍ୟକ୍ତିକୁ ତାର କରିବାକୁ ଥିବା ଯଥାବିଧି କାର୍ଯ୍ୟ କରୁଥିବା ବେଳେ, କିମ୍ବା ବିଧିବଦ୍ଧ ଭାବରେ ନିର୍ଦ୍ଦେଶ ଦିଆଯାଇଥିବା କାର୍ଯ୍ୟକୁ ଯଦି ନ କରେ କିମ୍ବା ଉଦ୍ଦେଶ୍ୟମୂଳକ ଭାବେ କୌଣସି ଲୋକର ଆଇନ ପୂର୍ବକ ନ କରିବା କାର୍ଯ୍ୟକୁ କରିବା ପାଇଁ ବାଧ କରାଯାଏ କିମ୍ବା ଉଦ୍ଦେଶ୍ୟ ମୂଳକ ଭାବେ ସେହି ଲୋକକୁ ଶାରୀରିକ ମାନସିକ କ୍ଷତି କିମ୍ବା ଆର୍ଥିକ କିମ୍ବା ତାର ବ୍ୟବସାୟ, କିମ୍ବା ବୃତ୍ତିର ଅବଲମ୍ବନରେ ବାଧାଦେବା ଭଳି ବାସନ୍ଦ କରାଯାଏ କିମ୍ବା କୌଣସି ଲୋକ, ଯାହାଠାରେ ସେହି ଲୋକ ଆଗ୍ରହୀ, ସେ ଲୋକକୁ ଜେଲ ଦଣ୍ଡ ଦିଆଯିବ ଯାହାକି ୨ ବର୍ଷ ପର୍ଯ୍ୟନ୍ତ ବଢ଼ାଯାଇ ପାରିବ କିମ୍ବା ଜୋରିମାନା କିମ୍ବା ଉଭୟ ଭୋଗିବାକୁ ପଡ଼ିବ ।

ବିଶେଷ ଭାବରେ ଏହି ଧାରା ଅନୁଯାୟୀ କୌଣସି ଅପରାଧ କରିଥିବାର ବିବେଚିତ ହେବ ନାହିଁ, ଯଦି ନ୍ୟାୟାଳୟ ସନ୍ତୁଷ୍ଟ ହୁଏ ଯେ ଅପରାଧୀ ଲୋକ ଯଦି ଅନ୍ୟର ପ୍ରରୋଚନା, ସହଯୋଗ ବା କୌଣସି ଚକ୍ରାନ୍ତରେ ପଡ଼ି କୌଣସି ସର୍ତ୍ତ ବଶତଃ କିମ୍ବା ସାମାଜିକ ବାସନ୍ଦ କରିଥାଏ ।

୩-ବାସନ୍ଦ ପାଇଁ ପ୍ରବର୍ତ୍ତାଇବା ବା କରିବା ପାଇଁ ଦଣ୍ଡବିଧି :—

ଯଦି କେହି (କ) କୌଣସି ବାସନ୍ଦ ପ୍ରସ୍ତାବକୁ ସର୍ବସାଧାରଣରେ କାର୍ଯ୍ୟକାରୀ କରେ ବା ପ୍ରଚାର କରେ ବା ବିତରଣ କରେ ବା

(ଖ) କୌଣସି ବିବୃତ୍ତି, ଗୁଜବ, ଉଦ୍ଦେଶ୍ୟମୂଳକ ବିବରଣୀ ଯାହା ପ୍ରତି ତାର ଦୁରଭିବୋଧ ହୋଇଥାଏ ତାହା ପ୍ରଦାନ କରେ ବା ପ୍ରଚାର କରେ କିମ୍ବା

(ଗ) ଅନ୍ୟ କୌଣସି ମାଧ୍ୟମରେ ପ୍ରବର୍ତ୍ତାଏ କିମ୍ବା ବ୍ୟକ୍ତିଗତ ଭାବେ କିମ୍ବା ଶ୍ରେଣୀଗତ ଭାବେ ବାସନ୍ଦ କରେ ସେ ଜେଲ୍ ଦଣ୍ଡରେ ଦଣ୍ଡିତ ହେବ, ଯାହାକି ୫ ବର୍ଷ ପର୍ଯ୍ୟନ୍ତ ବୃଦ୍ଧି କରାଯାଇ ପାରେ କିମ୍ବା ଜୋରିମାନା ବା ଉଭୟ ଦଣ୍ଡରେ ଦଣ୍ଡିତ ହେବ ।

**ବ୍ୟାଖ୍ୟାନ**—ଏହି ଧାରା ଅନ୍ତର୍ଗତ ଗୋଟିଏ ଅପରାଧ କରିଥିବାର ବୁଝାଯିବ ଯଦିଓ ସେ ବ୍ୟକ୍ତି—

ଏହି ଧାରା ଅନୁଯାୟୀ ଘଟିତ ଅପରାଧ, ତାକୁ ହିଁ ବୁଝାଯିବ, ଯଦି ଲୋକଟି ଆକ୍ରାନ୍ତ ହୋଇଥିବାର କିମ୍ବା ଏଥିରେ ସୂଚିତ ହୋଇଥିବା କୌଣସି କାରଣ ହେତୁ ଆକ୍ରାନ୍ତ ହେବାର ସମ୍ଭାବନା ଥାଏ, ତାହା ହେଲେ ତାର ଉପାଧି ଯୁକ୍ତ ନାମ ବା ଶ୍ରେଣୀକୁ ବୁଝାଯିବ ନାହିଁ । ତାର ନିର୍ଦ୍ଦିଷ୍ଟ ଭାବେ କରିଥିବା କାର୍ଯ୍ୟକୁ ବୁଝାଯିବ ।

**୪ ବାସନ୍ଦ କରିବା ପାଇଁ ଧମକାଇବାର ଅପରାଧ ।**

ଯେ କେହି, କୌଣସି ବ୍ୟକ୍ତି ଯୋଗୁଁ କିଛି କାର୍ଯ୍ୟ କରେ ଯାହା ବାଧ୍ୟବାଧକ ଭାବରେ ତାହା କରିବାକୁ ସେ ଦାୟୀ କିମ୍ବା, କୌଣସି କାର୍ଯ୍ୟକୁ ସେ ବାଦ- ଦେଇଛି, ଯାହା କରିବାକୁ ସେ ସକ୍ଷମ କିମ୍ବା ନିୟମାନୁଯାୟୀ ତାହାର କରିବାକୁ ନ ଥିଲେ ମଧ୍ୟ ସେ ଯଦି ଉଦ୍ଦେଶ୍ୟ ମୂଳକ ଭାବେ ଅନ୍ୟ ଦ୍ୱାରା କରାଏ କିମ୍ବା ନିୟମାନୁଯାୟୀ ତାକୁ କରିବାକୁ ଥିଲେ ମଧ୍ୟ ଯଦି ସେ ତାହା ଏଡ଼ାଇ ଦେବ ବୋଲି ଧମକ ଦିଏ, କିମ୍ବା କୌଣସି ଲୋକ ଯାହା ଦ୍ୱାରା ଯଦି ସେ ବାସନ୍ଦ ହେବାକୁ ସ୍ୱୀକୃତ ଥାଏ ସେ ମଧ୍ୟ ନିର୍ଧାରିତ ସମୟ ପାଇଁ ଜେଲ ଦଣ୍ଡରେ ଦଣ୍ଡିତ ହେବ, ଯାହାକି ୫ ବର୍ଷ ପର୍ଯ୍ୟନ୍ତ ବଢାଯାଇ ପାରିବ କିମ୍ବା ଜୋରିମାନା କିମ୍ବା ଉଭୟ ଦଣ୍ଡରେ ଦଣ୍ଡିତ ହୋଇ ପାରିବ ।

**ବ୍ୟତିକ୍ରମ :**—ଏହା ବାସନ୍ଦ ବୋଲି ଗ୍ରହଣୀୟ କରାହେବ ନାହିଁ

(୧) କୌଣସି ସ୍ଥାୟୀ ଶ୍ରମିକ ବଜାରର ବୃଦ୍ଧି ହେବାରେ ଯଦି କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରାଯାଏ । ସାଧାରଣ ବ୍ୟବସାୟ ପ୍ରତିଯୋଗିତାରେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରାଯାଏ ।

**ବିଶେଷ ଦ୍ରଷ୍ଟବ୍ୟ :**—ଏହି ସମସ୍ତ ଅପରାଧ ଧର୍ତ୍ତବ୍ୟ ଅପରାଧ ଭାବେ ବିଚାର କରାଯିବ ।

# ତୃତୀୟ ସର୍ଗ

## ବାଛ ବିଚାର ବିରୁଦ୍ଧରେ ପ୍ରତିରକ୍ଷା—

ଉବସ୍ୟନରେ ଦଳିତ ଶ୍ରେଣୀ, ବିଧାନ ବା ନିର୍ବାହୀ ଆଦେଶ ଦ୍ୱାରା ସମ୍ଭାବିତ ବାଛବିଚାରର ସୃଷ୍ଟି ପ୍ରତି ଗୁରୁତର ଭୟପୋଷଣ କରନ୍ତି। ତେଣୁ ସେମାନେ ସଂଖ୍ୟାଧିକ ଶାସନରେ ନିଜକୁ ଅନ୍ତର୍ଭୁକ୍ତ କରିବା ପାଇଁ କେବେହେଲେ ସମ୍ମତ ଦେବେ ନାହିଁ, ଯଦି ବୈଧାନିକ ବା ନିର୍ବାହୀ ଅଧିକାରୀ, ଦଳିତ ଶ୍ରେଣୀଙ୍କ ବିରୁଦ୍ଧରେ କରାଯାଉଥିବା ଯେ କୌଣସି ବିଦ୍ୱେଷମୂଳକ ବାଛବିଚାରକୁ ଆଇନ-ଗତ ଅବାସ୍ତବ ବୋଲି ରୂପାୟିତ ନକରନ୍ତି।

ଏଣୁ ପ୍ରସ୍ତାବ କରାଯାଉଛି ଯେ ନିମ୍ନଲିଖିତ ସ୍ଥାୟୀ ବ୍ୟବସ୍ଥାଗୁଡ଼ିକ ସ୍ୱତଃଯ୍ୟ ସାମ୍ବିଧାନିକ ବିଧି ବୋଲି ଧାର୍ଯ୍ୟ କରାଯାଉ।

"ଭାରତର କୌଣସି ବୈଧାନିକ ବା ନିର୍ବାହୀ ଅଧିକାରୀ, ଅତୀତର ସମ୍ମାନ-ହୀନ ଅସ୍ପୃଶ୍ୟ ଅବସ୍ଥା ପାଇଁ, ସାର୍ବଭୌମ ଭାରତ ଅଧୀନରେ ଥିବା ରାଜ୍ୟର ନାଗରିକଙ୍କ ଅଧିକାର ଖଣ୍ଡନ କରିବା ଭଳି କୌଣସି ଆଇନ, ନିର୍ଦ୍ଦେଶ, ନିୟମ ବା ଧାରା ପାସ କିମ୍ବା ନିର୍ଗମିତ କରିବାକୁ ସକ୍ଷମ ହୋଇପାରିବେ ନାହିଁ।

(୧) ଚୁକ୍ତି କରିବା ଓ ତାହା ସାବ୍ୟସ୍ତ କରିବା, ଅଭିଯୋଗ କରିବା, ପକ୍ଷ ସମର୍ଥନ କରିବା ଓ ସାକ୍ଷ୍ୟ ଦେବା, ଉତ୍ତରାଧିକାରୀ ହେବା, କ୍ରୟ କରିବା, ପଟ୍ଟା ଦେବା, ବିକ୍ରୟ କରିବା, ନିଜ ବ୍ୟକ୍ତିଗତ ସମ୍ପତ୍ତିକୁ ଦଖଲରେ ରଖିବା ଓ ହସ୍ତାନ୍ତର କରିବା

(୨) ରାଜ୍ୟର ସବୁ ଶ୍ରେଣୀର ଅଧିବାସୀମାନଙ୍କୁ, ଆବଶ୍ୟକୀୟ ତଦନୁରୂପ ସର୍ତ୍ତ ଓ ସୀମା ବ୍ୟତୀତ ବେସାମରିକ, ସାମରିକ ଓ ଶିକ୍ଷାନୁଷ୍ଠାନମାନଙ୍କ ପାଇଁ ଯୋଗ୍ୟ ବିବେଚିତ କରିବା

(୩) ନିର୍ଦ୍ଦିଷ୍ଟ ସର୍ତ୍ତ ଓ ସୀମା ବ୍ୟତୀତ ପ୍ରତ୍ୟେକ ବଂଶ, ଶ୍ରେଣୀ, ଜାତି, ବର୍ଣ୍ଣ କିମ୍ବା ଧର୍ମର ସମସ୍ତ ଅଧିବାସୀ, ବସବାସ ସୁବିଧା-ସୁଯୋଗ, ଶିକ୍ଷା-ଅନୁଷ୍ଠାନ, ଆଶ୍ରୟସ୍ଥଳ, ନଦୀ, ଝରଣା, କୂପ, ପୁଷ୍କରିଣୀ, ସଡକ, ପଥ, ସାହି ଦାଣ୍ଡ, ଜଳ, ସ୍ଥଳ, ଆକାଶର ସାଧାରଣ ଗମନାଗମନ, ପ୍ରେକ୍ଷାଳୟ ଓ ଅନ୍ୟାନ୍ୟ

ସର୍ବସାଧାରଣ ସ୍ଥାନ କିମ୍ବା ଆମୋଦପ୍ରମୋଦ ଗୃହମାନର ସମ୍ପୂର୍ଣ୍ଣ ରୂପେ ଉପଭୋଗ କରିବାକୁ ସକ୍ଷମ ହେବା

(୪) କୌଣସି ଧର୍ମ ଓ ବିଶ୍ୱାସର ଲୋକମାନଙ୍କ ପାଇଁ କିମ୍ବା ସର୍ବସାଧାରଣଙ୍କୁ ଅନୁମତି ପତ୍ର ଦେବାକୁ; କୌଣସି ଦାତବ୍ୟ ଅନୁଷ୍ଠାନ ପ୍ରତି ତ୍ୟାଗ ସ୍ୱୀକାର କରିବାକୁ କିମ୍ବା କୌଣସି ଧର୍ମଗ୍ରନ୍ଥ ବୁଝିବାକୁ କିମ୍ବା ବକ୍ତୃତାରେ ଅଂଶ ଗ୍ରହଣ କରିବାକୁ ଦକ୍ଷ ଓ ସକ୍ଷମ ହେବାକୁ

(୫) ସର୍ବସାଧାରଣଙ୍କ ସୁରକ୍ଷା ପାଇଁ, ସମସ୍ତ ଆଇନ ଓ ଶାସ୍ତ୍ରରଠାରୁ ସମ୍ପୂର୍ଣ୍ଣ ଓ ସମାନ ଉପକାର ଦାବୀ କରିବାକୁ ଓ କୌଣସି ଅଜାତ ଅଛୁଆ ଅବସ୍ଥାକୁ ଖାତିର ନକରି ଅନ୍ୟମାନଙ୍କ ପରି ସମ୍ପତ୍ତି ଉପଭୋଗ କରିବାକୁ କିମ୍ବା ଅନ୍ୟ କାହା ବ୍ୟତୀତ ଦଣ୍ଡ, କୋରମାନ ଭୋଗିବାକୁ

## ୪ର୍ଥ ସର୍ତ୍ତ

### ବିଧାନସଭାରେ ପର୍ଯ୍ୟାପ୍ତ ସଂଖ୍ୟାର ପ୍ରତିନିଧିତ୍ୱ —

ଦଳିତ ଶ୍ରେଣୀ, ସେମାନଙ୍କର ଜନ୍ମଗତ ସୁରକ୍ଷା ପାଇଁ ବୈଧାନିକ ଓ କାର୍ଯ୍ୟନିର୍ବାହୀ ଅଧିକାରୀମାନଙ୍କୁ ପ୍ରଭାବିତ କରିବା ଭଳି ଯଥେଷ୍ଟ ପରିମାଣରେ ରାଜନୈତିକ କ୍ଷମତା ହାସଲ କରିବା ଉଚିତ ।

ଏହି ପରିପ୍ରେକ୍ଷୀରେ ସେମାନେ ଦାବୀ କରନ୍ତି ଯେ ନିର୍ବାଚନ ଆଇନରେ ନିମ୍ନୋକ୍ତ ବ୍ୟବସ୍ଥା କରାଯିବ ।

୧) ରାଜ୍ୟ ଓ କେନ୍ଦ୍ରର ବୈଧାନିକମାନଙ୍କ ମଧ୍ୟରେ ପର୍ଯ୍ୟାପ୍ତ ସଂଖ୍ୟକ ପ୍ରତିନିଧିତ୍ୱ ଅଧିକାର —

୨) ନିଜ ଲୋକଙ୍କୁ ସେମାନଙ୍କର ପ୍ରତିନିଧି ବାଛିବାର ଅଧିକାର

(କ) ସାବାଳକ ଭୋଟାଧିକାର

(ଖ) ପ୍ରଥମ ଦଶ ବର୍ଷ ପାଇଁ ପୃଥକ ନିର୍ବାଚନ ମଣ୍ଡଳ ଦ୍ୱାରା ଓ ତାପରେ ମିଳିତ ନିର୍ବାଚନରେ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ଦ୍ୱାରା । ଏଥିରୁ

ଜଣାଯାଏ ଯେ ଯଦି ଏହି ମିଳିତ ନିର୍ବାଚନ ସାବାଳକ ଭୋଟ ମାଧ୍ୟମରେ ନହୁଏ ତାହାହେଲେ ଦଳିତ ଶ୍ରେଣୀଙ୍କ ମତ ବିରୁଦ୍ଧରେ ବାଧ୍ୟ କରାଯିବ ନାହିଁ ।

ବିଶେଷ ଦ୍ରଷ୍ଟବ୍ୟ— ଅନ୍ୟ ସମ୍ପ୍ରଦାୟମାନଙ୍କର ପ୍ରତିନିଧିତ୍ୱର ପରିମାଣ ନଜାଣିଲା ପର୍ଯ୍ୟନ୍ତ, ଦଳିତ ଶ୍ରେଣୀଙ୍କ ପର୍ଯ୍ୟାପ୍ତ ପରିମାଣର ପ୍ରତିନିଧିତ୍ୱ ପରିମାଣାତ୍ମକ ଦୃଷ୍ଟିରୁ ବର୍ଣ୍ଣନା କରି ହେବନାହିଁ । କିନ୍ତୁ ଏହା ନିଶ୍ଚିତ ବୁଝାଯିବ ଯେ ଦଳିତ ଶ୍ରେଣୀ ଅନ୍ୟ କୌଣସି ସମ୍ପ୍ରଦାୟର [illegible] ଙ୍କର ଅପେକ୍ଷାକୃତ ଉତ୍ତମ ପ୍ରସ୍ତାବ ପ୍ରତି ସମର୍ଥନ କରିବେ ନାହିଁ । ସେମାନେ ଏହି ବିଷୟ ନେଇ ନିଜକୁ ନିଜେ ଅସୁବିଧାରେ ପକାଇବା ପାଇଁ କେବେ-ହେଲେ ରାଜି ହେବେ ନାହିଁ । ଯେକୌଣସି ଉପାୟରେ ବମ୍ବେ ଓ ମାଡ୍ରାସର ଦଳିତ ଶ୍ରେଣୀ ରାଜ୍ୟର ଅନ୍ୟ ସଂଖ୍ୟାଲଘୁଙ୍କୁ ଦିଆ ଯାଉଥିବା ପ୍ରତିନିଧିତ୍ୱର ନିର୍ବିଶେଷରେ ନିଶ୍ଚୟ ସେମାନଙ୍କର ଜନସଂଖ୍ୟାର ହାରାହାରି ପ୍ରତିନିଧିତ୍ୱ ଉପରେ ଗୁରୁତ୍ୱ ଦେବେ ।

**୫ମ ସର୍ତ୍ତ**

## ଚାକିରୀ କ୍ଷେତ୍ରରେ ପର୍ଯ୍ୟାପ୍ତ ପରିମାଣର ପ୍ରତିନିଧିତ୍ୱ—

ନ୍ୟାୟ ବିଚାର, ନିରପେକ୍ଷତା ଓ ବିବେକାନୁମୋଦକ ନୀତିକୁ ଖାତିର ନକରି ଉଚ୍ଚବର୍ଣ୍ଣର ଅଫିସରମାନେ; ଯେଉଁମାନେ କି ଆଇନକୁ ଅପବ୍ୟବହାର କରି କିମ୍ବା ତାଙ୍କ ହାତରେ ଥିବା ବିଚାରାଧୀନ ଅଧିକାରକୁ ଦଳିତ ଶ୍ରେଣୀଙ୍କ ପ୍ରତି ଥିବା ବିଦ୍ୱେଷବଶତଃ ସାଧାରଣ ଚାକିରୀକୁ ଏକଚାଟିଆ କରିଥିଲେ ଓ ଉଚ୍ଚବର୍ଣ୍ଣ ହିନ୍ଦୁମାନଙ୍କୁ ସୁବିଧା ସୁଯୋଗ ଦେଇଥିଲେ, ସେମାନଙ୍କ ହାତରେ ଦଳିତ ଶ୍ରେଣୀ ବହୁତ କିଛି ନିର୍ଯ୍ୟାତନା ଅବହେଳା ଭୋଗିଛନ୍ତି । ଏହି କ୍ଷତିକୁ କେବଳ ମାତ୍ର ଦୂର କରାଯାଇପାରିବ, ଯଦି ଉଚ୍ଚବର୍ଣ୍ଣ ହିନ୍ଦୁମାନଙ୍କର ଚାକିରୀ କ୍ଷେତ୍ରରେ ଥିବା ଏକଚାଟିଆ ଅଧିକାରକୁ ଖଣ୍ଡନ କରି ଦିଆଯାଏ ଓ ସେମାନଙ୍କର ଆବଶ୍ୟକତାକୁ ଏପରି ଭାବରେ ନିୟନ୍ତ୍ରଣ କରାଯିବ ଯେ ଦଳିତ ଶ୍ରେଣୀଙ୍କ ସହ ସମସ୍ତ ସମ୍ପ୍ରଦାୟ ପର୍ଯ୍ୟାପ୍ତ ପରିମାଣରେ ଭାଗ ନେଇପାରିବେ । ଏଥିପାଇଁ ଦଳିତ ଶ୍ରେଣୀ ନିମ୍ନୋକ୍ତ

ପ୍ରସ୍ତାବଗୁଡ଼ିକୁ ସ୍ଥାୟୀ ସାମ୍ବିଧାନିକ ଆଇନ ରୂପେ ପ୍ରଣୟନ କରିବାକୁ ଉପସ୍ଥାପନ କରୁଅଛୁ ।

(୧) ସର୍ବସାଧାରଣ ସ୍ୱକାର୍ଯ୍ୟଗୁଡ଼ିକୁ ଆୟତ୍ତାଧୀନ କରି ତାର ନିଯୁକ୍ତି ଗୁଡ଼ିକୁ ନିଜ ହାତକୁ ନେବା ପାଇଁ ଭାରତ ଓ ଭାରତର ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ଲୋକ ସେବା ଆୟୋଗ ପ୍ରତିଷ୍ଠା କରାଯିବ ।

(୨) ଲୋକ ସେବା ଆୟୋଗର କୌଣସି ସଭ୍ୟଙ୍କୁ ବୈଧାନିକଙ୍କ ଦ୍ୱାରା ଅନୁମୋଦିତ ହୋଇଥିବା ଅଧାଦେଶ ବ୍ୟତୀତ ତାଙ୍କୁ ଅନ୍ତର କରାଯାଇ ପାରିବ ନାହିଁ କିମ୍ବା ଅବସର ପରେ ସେ ସରକାର ଅଧୀନସ୍ଥ କୌଣସି ଅଫିସରେ ନିଯୁକ୍ତି ପାଇ ପାରିବେ ନାହିଁ ।

(୩) ଲୋକ ସେବା ଆୟୋଗର କର୍ତ୍ତବ୍ୟ ହେବ, ନିର୍ଦ୍ଧାରିତ ଦକ୍ଷତା ପାଇଁ ପରୀକ୍ଷା କରିବା—

କ) ସ୍ୱକାର୍ଯ୍ୟ ପାଇଁ ଏଭଳି ଉପାୟରେ କର୍ମଚାରୀ ସଂଗ୍ରହ କରିବେ ଯାହା ଦ୍ୱାରା ସବୁ ସମ୍ପ୍ରଦାୟରୁ ପର୍ଯ୍ୟାପ୍ତ ପରିମାଣ ପ୍ରତିନିଧିତ୍ୱ ପାଇପାରିବେ

ଖ) କୌଣସି ନିର୍ଦ୍ଦିଷ୍ଟ ସ୍ୱକାର୍ଯ୍ୟ କ୍ଷେତ୍ରରେ ବିଭିନ୍ନ ସମ୍ପ୍ରଦାୟର ବର୍ତ୍ତମାନର ପ୍ରତିନିଧିତ୍ୱର ପରିମାଣକୁ ସମୟାନୁକ୍ରମେ ବିନିମୟ କରିବେ

**ଷଷ୍ଠ ସର୍ତ୍ତ—**

**ସ୍ୱାର୍ଥହାନୀ ଓ ବିଦ୍ୱେଷ ମୂଳକ କାର୍ଯ୍ୟ ବିରୁଦ୍ଧରେ ବ୍ୟବସ୍ଥା :—**

ଏହା ବାସ୍ତବ ଯେ ଭବିଷ୍ୟତର ସଂଖ୍ୟାଧିକ ଶାସନ, ରକ୍ଷଣଶୀଳଙ୍କ ଶାସନ ହେବ । ଦଳିତ ଶ୍ରେଣୀ ଭୟ କରନ୍ତି ଯେ ଏହି ସଂଖ୍ୟା ଗରିଷ୍ଠ ଶାସନ ସେମାନଙ୍କ ପ୍ରତି କେବେହେଁ ସହାନୁଭୂତିଶୀଳ ହେବେ ନାହିଁ । ତେଣୁ ସେମାନଙ୍କ ସ୍ୱାର୍ଥ ଓ ସେମାନଙ୍କର ପ୍ରଧାନ ଆବଶ୍ୟକତା ପ୍ରତି ବିଦ୍ୱେଷାତ୍ମକ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ପାରିବ ନାହିଁ । ଏହା ନିଶ୍ଚିତ ହେବ, ସମସ୍ତ ଲୋକ ପ୍ରତିନିଧିଙ୍କ ମଧ୍ୟରେ ସଂଖ୍ୟାଲଘୁ ଭାବେ ଗଣ୍ୟ ହୋଇଥିବା ଦଳିତ ଶ୍ରେଣୀଙ୍କୁ ପର୍ଯ୍ୟାପ୍ତ ପରିମାଣର ପ୍ରତିନିଧିତ୍ୱ ଦିଆଯିବ । ଦଳିତ ଶ୍ରେଣୀ ଏହାକୁ ଅତ୍ୟନ୍ତ ଆବଶ୍ୟକ ବୋଲି ମନେ କରନ୍ତି ଯେ ସେମାନଙ୍କ ପାଇଁ ନିଶ୍ଚିତ ଭାବରେ ସମ୍ବିଧାନରେ ଉପାୟ ନିର୍ଦ୍ଧାରଣ କରି ଦିଆଯାଉ । ଏଣୁ ଏହା ପ୍ରସ୍ତାବିତ ହେଉଛି ଯେ ନିମ୍ନଲିଖିତ ବ୍ୟବସ୍ଥା ଭାରତୀୟ ସମ୍ବିଧାନରେ ନିଶ୍ଚିତଭାବେ ରଖାଯିବ :—

British-North America Act. 1867 Sec. 93.

"ପ୍ରତ୍ୟେକ ପ୍ରଦେଶ ମଧ୍ୟରେ ଓ ପାଇଁ, ଭାରତ ମଧ୍ୟରେ ଓ ପାଇଁ ବୈଧାନିକ ଓ କାର୍ଯ୍ୟ ନିର୍ବାହକଙ୍କର ଏହା କର୍ତ୍ତବ୍ୟ ଓ ଦାୟିତ୍ୱ କିମ୍ବା ଆଇନ ଦ୍ୱାରା ପ୍ରତିଷ୍ଠିତ ଅନ୍ୟ କୌଣସି କର୍ତ୍ତୃପକ୍ଷ, ଦଳିତ ଶ୍ରେଣୀଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, ସର୍ବସାଧାରଣ ଚାକରୀରେ ନିଯୁକ୍ତି ଓ ଅନ୍ୟ ସାମାଜିକ ଓ ରାଜନୈତିକ ଅଗ୍ରଗତି ପାଇଁ ପର୍ଯ୍ୟାପ୍ତ ପରିମାଣ ବ୍ୟବସ୍ଥା କରିବେ ଓ ତାହା ବିଦ୍ୱେଷମୂଳକ ଭାବେ ସେମାନଙ୍କୁ ଆଘାତ କରିବ ନାହିଁ ।

୨) ଭାରତ ମଧ୍ୟରେ କିମ୍ବା ପ୍ରଦେଶର କୌଣସି ଠାରେ ଯଦି ଏହି ପରିଚ୍ଛେଦର ବ୍ୟବସ୍ଥାକୁ ବ୍ୟାହତ କରାଯାଏ, ତାହାହେଲେ ଗଭର୍ଣ୍ଣର ଜେନେରାଲଙ୍କ କାଉନ୍‌ସିଲରେ, ପ୍ରାଦେଶିକ କର୍ତ୍ତୃପକ୍ଷଙ୍କ କାର୍ଯ୍ୟ ବା ନିଷ୍ପତ୍ତି ବିରୁଦ୍ଧରେ ସେକ୍ରେଟାରୀ ଅଫ ଷ୍ଟେଟଙ୍କୁ ସାଧାରଣ କର୍ତ୍ତୃପକ୍ଷଙ୍କ କାର୍ଯ୍ୟ ବା ନିଷ୍ପତ୍ତି ଉପରେ ଆବେଦନ କରାଯାଇ ପାରିବ ।

୩) ଏହିପରି ପ୍ରତ୍ୟେକ ଘଟଣାରେ, ଯେଉଁଠାରେ ଏହା ଦେଖାଦେଇଛି, ଯେ କାଉନସିଲରେ ଗଭର୍ଣ୍ଣର ଜେନେରାଲଙ୍କୁ କିମ୍ବା ସେକ୍ରେଟାରୀ ଅଫ ଷ୍ଟେଟଙ୍କୁ; ରାଜ୍ୟ କର୍ତ୍ତୃପକ୍ଷ ବା କେନ୍ଦ୍ର କର୍ତ୍ତୃପକ୍ଷ ଏହି ପରିଚ୍ଛେଦର କାର୍ଯ୍ୟକାରିତା ପାଇଁ ଆବଶ୍ୟକ ପଦକ୍ଷେପ ନେଇ ନାହାନ୍ତି, ଏହିପରି ପ୍ରତ୍ୟେକ ଘଟଣାରେ ଓ ପ୍ରତ୍ୟେକ ଘଟଣାର ପରିସ୍ଥିତିରେ ଗଭର୍ଣ୍ଣର ଜେନେରାଲ ଓ ସେକ୍ରେଟାରୀ ଅଫ ଷ୍ଟେଟ, ଅଭିଯୋଗର ବିସ୍ତାରିତ ଭାବେ ଏହି ପରିଚ୍ଛେଦର ବ୍ୟବସ୍ଥା ଅନୁଯାୟୀ କାର୍ଯ୍ୟକାରୀ କରିବାକୁ ବା ଯଥାବିଧି ନିରାକରଣ ବ୍ୟବସ୍ଥା ଗ୍ରହଣ କରିବାକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନିଷ୍ପତ୍ତି କରିବେ ଓ ଏହି ନିଷ୍ପତ୍ତିଗୁଡ଼ିକୁ ଅଭିଯୁକ୍ତ କର୍ତ୍ତୃପକ୍ଷଗଣ ପାଳନ କରିବାକୁ ବାଧ୍ୟ ।

୭ମ ସର୍ତ୍ତ —

## ସ୍ୱତନ୍ତ୍ର ବସତୀୟ ଯନ୍ତ୍ର

ଅସହାୟ, ହତଭାଗ୍ୟ ଓ ଅର୍ଥସାର ଶୂନ୍ୟ ଦଳିତ ଶ୍ରେଣୀ; ସମ୍ପୂର୍ଣ୍ଣ ଭାବେ ଓ ନିଶ୍ଚିତରୂପେ, ଦୃଢ଼ ସକଳ୍ପବଦ୍ଧ ଓ ଜିଦ୍ଦିଖୋର ଅପର ପକ୍ଷର ସମସ୍ତ ରକ୍ଷଣଶୀଳ

ବାସିନ୍ଦାଙ୍କ ହାତରେ ଉଦ୍ଧାର ପାଇବେ ନାହିଁ । ଦଳିତ ଶ୍ରେଣୀଙ୍କୁ ସେମାନେ କେବେହେଲେ ସେମାନଙ୍କ ସହ ସମାନ ମର୍ଯ୍ୟାଦା ତଥା ସମାନ ବ୍ୟବହାର ପାଇବାକୁ ଦେବେନାହିଁ । ତାଙ୍କର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଏହା କହିବା ଯଥେଷ୍ଟ ହେବନାହିଁ ଯେ ସେମାନେ ଦାରିଦ୍ର୍ୟ ନିପିଡ଼ିତ,ତଥା ସେମାନେ ଗୋଟିଏ ଭୂମିହୀନ ଶ୍ରମିକଶ୍ରେଣୀ, ଯାହାଂ ଉଭୟ ବହୁଛିଟରେ ବାନ୍ଧିବା ଅଛି । ଏହା ଉଲ୍ଲେଖ କରିବା କଥା ଯେ ଦଳିତ ଶ୍ରେଣୀଙ୍କର ଦରିଦ୍ରତାର କାରଣ ପ୍ରଧାନତଃ ସାମାଜିକ ବିଦ୍ୱେଷର ପରିଣାମ ଯୋଗୁ । ଯାହା ଫଳରେ ବହୁ ପରିମାଣରେ ଅର୍ଥକାରୀ ବ୍ୟବସାୟର ଦ୍ୱାର ସେମାନଙ୍କ ପାଇଁ ରୁଦ୍ଧ ହୋଇଯାଇଛି । ଏହାହିଁ ହେଉଛି ଘଟଣା, ଯାହା ସାଧାରଣ ଜାତିର ଶ୍ରମିକଙ୍କଠାରୁ ଦଳିତ ଶ୍ରେଣୀକୁ ପୃଥକ କରିଅଛି ଓ ସର୍ବଦା ଦୁହିଙ୍କ ମଧ୍ୟରେ ଗୋଲମାଲ ସୃଷ୍ଟି କରୁଅଛି । ଏହା ମଧ୍ୟ ମନେରଖିବା କଥା ଯେ ଦଳିତ ଶ୍ରେଣୀଙ୍କ ଉପରେ ହେଉଥିବା ଅତ୍ୟାଚାର ଓ ଦମନର ଆକାର ବହୁବିଧ ଓ ଦଳିତ ଶ୍ରେଣୀଙ୍କର ନିଜକୁ ରକ୍ଷା କରିବାର କ୍ଷମତା ଏକାନ୍ତ ସୀମିତ । ଏହି ସମ୍ପର୍କରେ ଯେଉଁ ଘଟଣା ସବୁ ମିଳିଛି ଯାହା ସମଗ୍ର ଭାରତ ପାଇଁ ସାଧାରଣ ଘଟଣା ତାହା ଭଲଭାବରେ, ମାଡ୍ରାସ ସରକାରଙ୍କର ବୋର୍ଡ ଅଫ୍ ରେଭେନ୍ୟୁର ତା ୫।୧୧।୧୮୯୭ ମସିହାର ୭୨୩ ନମ୍ବର ପ୍ରୋସିଡ଼ିଂସର ଉଦ୍ଧୃତାଂଶରେ ବର୍ଣ୍ଣନା କରାଯାଇଛି । ତାହା ନିମ୍ନରେ ପ୍ରଦତ୍ତ ହେଲା:—

"୧୩୪-ଦମନ କରିବାର କେତେକ ନିର୍ଦ୍ଦିଷ୍ଟ ଧାରା ରହିଛି, ଯାହା ସୂଚନାତ୍ମକ ଭାବେ ସଂକ୍ଷେପରେ ଉଲ୍ଲେଖ କରାଗଲା । ଅବାଧ ପରିଛା ଜାତିର ଲୋକ, ଯେଉଁ ବର୍ତ୍ତମାନର ଦଳିତ ଜାତିର ଅନ୍ତର୍ଗତ, ତାଙ୍କୁ ଦଣ୍ଡ ଦେବା ପାଇଁ,ତାଙ୍କର ମୁନିବ—

(କ) ଗ୍ରାମପଞ୍ଚାୟତ, ଯେଉଁଥିରେ ତାର ସମର୍ଥକ ଅଧିକ ଓ ଫୌଜଦାରୀ ବିଚାରାଳୟରେ ମିଥ୍ୟା ମକଦ୍ଦମା କରେ ଓ ମିଥ୍ୟା ସାକ୍ଷୀ ଯୋଗାଇ ଜୟଲାଭ କରେ ।

(ଖ) ପରିଛାଙ୍କର ଘର ଦ୍ୱାରଦେଶେ ଥିବା ସରକାରୀ ଜମିକୁ ଦରଖାସ୍ତଦେଇ ଅକ୍ତିଆର କରି ପରିଛାର ଗୋରୁ ଗାଈ ଓ ପରିବାର ଲୋକଙ୍କୁ ଅଟକ କରିରଖେ ।

(ଗ) ଜାଲ ଦରଖାସ୍ତ ମାଧ୍ୟମରେ ସରକାରଙ୍କ ଜମି ଜବରଦଖଲ ଓ ସର୍ବସାଧାରଣଙ୍କର ଯାତାୟତରେ ବାଧା ସୃଷ୍ଟି କରୁଥିବା ଦର୍ଶାଇ ସରକାରଙ୍କର ଅପରାଧୀ ଖାତାରେ ତାର ନାମ ଅନ୍ତର୍ଭୁକ୍ତ କରିଦିଏ ।

(ଘ) ଲୋକ ଲଗାଇ ତାର କୁଣ୍ଡିଆ ଘର ଭାଙ୍ଗିଦିଏ ଓ ଫସଲ ନଷ୍ଟ କରିଦିଏ ।

(ଙ) ବହୁ କାଳରୁ ଦଖଲ କରି ଆସୁଥିବା ଭୂ-ସମ୍ପତ୍ତିରୁ ତା'ର ଦଖଲକୁ ଅସ୍ୱୀକାର କରାଇ ଦିଏ ।

(ଚ) ଜବରଦସ୍ତ କରି ପଣ୍ଡାର ଫସଲ କାଟିନିଏ, ସେଥିରେ ବାଧାଦେଲେ ତାକୁ ଚୋରି ଓ ଦଙ୍ଗା ମକଦ୍ଦମାରେ ଅଭିଯୁକ୍ତ କରେ ।

(ଛ) ମିଥ୍ୟା ସାକ୍ଷୀ ଦେଇ ଅସତ୍ ଉପାୟରେ ପ୍ରଲୋଭିତ କରି ସାଧା କାଗଜରେ ଦସ୍ତଖତ କରାଇ ନେଇ କୋର୍ଟ କଚେରୀ ମାଧ୍ୟମରେ ତାକୁ ଝଞ୍ଜାଳ କରାଇ ଶେଷକୁ ସର୍ବସ୍ୱାନ୍ତ କରେ ।

(ଜ) ସେମାନଙ୍କ ଜମିରୁ ପାଣି, ନାଳକୁ କାଟି ଦିଏ ଫଳରେ ଫସଲ ମରୁଡ଼ିରେ ନଷ୍ଟ ହୋଇଯାଏ ।

(ଝ) ଆଇନଗତ କୌଣସି ସୂଚନା ନଦେଇ ତାକୁ ଘରଦ୍ୱାରରୁ ଉଚ୍ଛେଦ କରେ ଓ ସରକାରଠାରୁ ମିଥ୍ୟା କଲମ କରାଇ ତାର ନିଜର ସମ୍ପତ୍ତିକୁ ହସ୍ତାନ୍ତର କରାଇଦିଏ ।"

"୧୩୫-ଲୁହାପାଇ ପାରେ ସେହିସବୁ ଷଡ଼ଯନ୍ତ୍ର ଓ ଅନ୍ୟାୟର ନିରାକରଣ ପାଇଁ ଦେୱାନୀ ଓ ଫୌଜଦାରୀ ବିଚାରାଳୟ ମାନ ଅଛି । ପ୍ରକୃତରେ ବିଚାରାଳୟ ମାନ ଅଛି, କିନ୍ତୁ ଭାରତରେ ଗ୍ରାମ ବିଚାରାଳୟ (Hampdens) ସୃଷ୍ଟି ହୋଇ-ନାହିଁ । କୋର୍ଟକୁ ଯିବାପାଇଁ ହେଲେ ହେଲେ ସାହସ ଥିବା ଦରକାର । ଆଇନଜ୍ଞଙ୍କୁ ନିଯୁକ୍ତ କରିବାକୁ, ଆଇନଗତ ଖର୍ଚ୍ଚ ବହନ କରିବାକୁ, ମୋକଦ୍ଦମା ଓ ଅପିଲ କରିବାକୁ ଧନ ଓ କ୍ଷମତା ଥିବା ଦରକାର । ଏହା ବ୍ୟତୀତ ଅଧିକାଂଶ ମୋକଦ୍ଦମା ପ୍ରଥମ ବିଚାରାଳୟର ନିଷ୍ପତ୍ତି ଉପରେ ନିର୍ଭରକରେ ଓ ସେହି ବିଚାରାଳୟ ଗୁଡ଼ିକ ଯେଉଁ ବିଚାରପତି ଓ ଅଫିସରମାନଙ୍କ ଦ୍ୱାରା ପରିଚାଳିତ ହୁଏ ସେମାନେ ବହୁ କ୍ଷେତ୍ରରେ ଦୁର୍ନୀତିଗ୍ରସ୍ତ ହୋଇଥାନ୍ତି । ଅନ୍ୟ ଏକ କାରଣରୁ ସେମାନେ ଧନୀ ଓ ପ୍ରଭାବଶାଳୀ, ସେହି ମାନଙ୍କ ଗୋଷ୍ଠୀରୁ ସେମାନେ ନିଜେ ଆସିଥାନ୍ତି, ସେମାନଙ୍କ ପ୍ରତି ବିଶେଷ ସହାନୁଭୂତିଶୀଳ ହୋଇଥାନ୍ତି ।"

"୧୩୬–ଏହି ଶ୍ରେଣୀର ଆଧିପତ୍ୟଶାଳୀ ଅଫିସର ଜଗତରେ ଥିବାର କେବେ ହେଁ ଅତ୍ୟୁକ୍ତି ନୁହେଁ । ଏହା ସ୍ୱଦେଶୀଙ୍କ ମଧ୍ୟରେ ଚରମ ପର୍ଯ୍ୟାୟଭୁକ୍ତ ଓ ୟୁରୋପୀୟମାନଙ୍କ ମଧ୍ୟରେ ମଧ୍ୟ ବହୁଳ । ତଳରୁ ସର୍ବୋଚ୍ଚ ପର୍ଯ୍ୟନ୍ତ, ପ୍ରତ୍ୟେକ ଅଫିସରେ ସେମାନଙ୍କର ଲୋକ ପୂର୍ଣ୍ଣହୋଇ ଅଛନ୍ତି । ସେମାନଙ୍କ ଗୋଷ୍ଠୀର ତଥା ନିଜର ସ୍ୱାର୍ଥକୁ ଆଖି ଆଗରେ ଥିବା ପରି ମୋକଦମାର ରାୟ ବାହାର ଥିବାର ଉଦାହରଣଗୁଡ଼ାକ ନାହିଁ । ମାତ୍ର ସେମାନେ; କୌଣସି ମୋକଦମାର ସୂତ୍ରପାତ ଠାରୁ ରାୟ ପର୍ଯ୍ୟନ୍ତ ପ୍ରଭାବ ପକାଇ ଥିବାର ଦୃଷ୍ଟାନ୍ତ ଯଥେଷ୍ଟ ।"

ଏହା ନିଃସନ୍ଦେହ ଯେ ଏହି ପରିସ୍ଥିତି ଯୋଗୁଁ ଦଳିତ ଶ୍ରେଣୀଙ୍କର ଉନ୍ନତି ଯଦି ଦଳିତ ଶ୍ରେଣୀଙ୍କର ଉନ୍ନତିର କାର୍ଯ୍ୟଭାର ସମସ୍ତ ସରକାରୀ କାର୍ଯ୍ୟକ୍ରମର ସର୍ବ-ପ୍ରଥମେ ରଖା ନଯାଏ ଓ ଯଦି ନିର୍ଦ୍ଦିଷ୍ଟ ନିୟମ ଦ୍ୱାରା ସମାନ ସୁବିଧା ସୁଯୋଗ ଗୁଡ଼ିକୁ କାର୍ଯ୍ୟ ମଧ୍ୟରେ ଅନୁଭବ କରାଯିବା ପାଇଁ ସରକାର ଦୃଢ଼ ପରିକର ନହୁଅନ୍ତି, ତେବେ ତାହା କେବଳ ପବିତ୍ର ଆଶାରେ ହିଁ ରହିଯିବ ।

ଏଥିପାଇଁ ଦଳିତ ଶ୍ରେଣୀଙ୍କର ପ୍ରସ୍ତାବ ହେଉଛି ଯେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟରେ ନିମ୍ନୋକ୍ତ ମତେ ଏକ ଅତିରିକ୍ତ ଧାରା ଯୋଗ କରାଯାଇ ସେହି ସାମ୍ବିଧାନିକ ବିଧିକୁ ବୈଧାନିକ ବାଧ୍ୟତା ରୂପେ ଭାରତ ସରକାରଙ୍କ ଉପରେ ନିର୍ଦ୍ଦିଷ୍ଟ ଭାବେ ନ୍ୟସ୍ତ କରାଯାଉ ଓ ସରୁଦିନ ପାଇଁ ଏକ ସ୍ୱତନ୍ତ୍ର ବିଭାଗ ମାଧ୍ୟମରେ ସେମାନଙ୍କର ସମସ୍ୟା ଗୁଡ଼ିକର ସମାଧାନ କରାଯାଉ ।

(୧) ସମ୍ବିଧାନର ଏକ ଅଂଶ ରୂପେ ଯୋଗ କରାଯିବା ସଙ୍ଗେ ସଙ୍ଗେ ଭାରତ ସରକାର ଜଣେ ମନ୍ତ୍ରୀଙ୍କ ଅଧୀନରେ ଦଳିତ ଶ୍ରେଣୀଙ୍କ ସ୍ୱାର୍ଥ ରକ୍ଷା କରିବାକୁ ଓ ସେମାନଙ୍କର ଉନ୍ନତି ସାଧନ କରିବାକୁ ଗୋଟିଏ ବିଭାଗ ସୃଷ୍ଟି କରାଯାଉ ।

(୨) କେନ୍ଦ୍ର ବୈଧାନିକମାନଙ୍କର ବିଶ୍ୱାସ ଭାଜନ ହେଉଥିବା ପର୍ଯ୍ୟନ୍ତ ମନ୍ତ୍ରୀ ତାଙ୍କର ଦାୟିତ୍ୱରେ ରହିପାରିବେ ।

(୩) ମନ୍ତ୍ରୀ, ତାଙ୍କଠାରେ ନିହିତ ହୋଇଥିବା କ୍ଷମତା ଓ କର୍ତ୍ତବ୍ୟ ଗୁଡ଼ିକୁ କାର୍ଯ୍ୟକାରୀ କରିବାରେ ଏହା ରହିବା ଉଚିତ୍ କିମ୍ବା ଆଇନ ଦ୍ୱାରା ତାଙ୍କୁ କ୍ଷମତାପ୍ରାପ୍ତ କରାଯିବା ଉଚିତ ଯେ ସାରା ଭାରତରେ ଦଳିତ ଶ୍ରେଣୀଙ୍କର ଉନ୍ନତିକୁ ବ୍ୟାହତ କରୁଥିବା ଓ କରାଯାଉଥିବା ସାମାଜିକ

ଅନ୍ୟାୟ, ଯଥେଚ୍ଛାଚାର, କିମ୍ବା ଦମନ ବିରୁଦ୍ଧରେ ସନ୍ତୋଷ ସମାଧାନ କାର୍ଯ୍ୟକ୍ରମର ପ୍ରସ୍ତୁତି ପାଇଁ ସମସ୍ତ ପ୍ରକାରର ପଦକ୍ଷେପ ଗ୍ରହଣ କରିବାକୁ ସକ୍ଷମ ହେବେ ।

(୪) ଗଭର୍ଣ୍ଣର ଜେନେରାଲଙ୍କ ପାଇଁ ଏହା ଆଇନ ସଙ୍ଗତ ହେବ—

କ) କୌଣସି ଅଧିନିୟମରୁ ସୃଷ୍ଟି ହୋଇଥିବା, ଦଳିତ ଶ୍ରେଣୀଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟ ଇତ୍ୟାଦିର ଉନ୍ନତି ସମ୍ପର୍କରେ ଯେ କୌଣସି କ୍ଷମତା ବା କାର୍ଯ୍ୟଚିନ୍ତା ମନ୍ତ୍ରୀଙ୍କ ଅଧୀନସ୍ଥ କରିବାକୁ ଓ

ଖ) ମନ୍ତ୍ରୀଙ୍କ ଅଧୀନରେ ଓ ସହାୟତାରେ କାର୍ଯ୍ୟ କରିବା ପାଇଁ ପ୍ରତ୍ୟେକ ପ୍ରଦେଶରେ ଦଳିତ ଶ୍ରେଣୀ ମଙ୍ଗଳ ସଂସ୍ଥା ନିଯୁକ୍ତ କରିବାକୁ

୮ମ ସର୍ତ୍ତ—

**ଦଳିତ ଶ୍ରେଣୀ ଓ ମନ୍ତ୍ରୀମଣ୍ଡଳ :—**

ଠିକ୍ ଯେପରି ଦଳିତ ଶ୍ରେଣୀଙ୍କ ପାଇଁ ବୈଧାନିକ ଆଇନରେ ସରକାରଙ୍କ କାର୍ଯ୍ୟକୁ ପ୍ରଭାବିତ କରିବାକୁ କ୍ଷମତା ଆବଶ୍ୟକ, ଠିକ୍ ସେହିପରି ଏହା ବାଞ୍ଛନୀୟ ଯେ ଦଳିତ ଶ୍ରେଣୀ ସରକାରଙ୍କର ନୀତି ପ୍ରଣୟନ କରିବାକୁ ସୁଯୋଗ ପାଇବା ଉଚିତ୍ । ସେମାନେ ଏହା କରିପାରିବେ ଯଦି ସେମାନେ ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇ ପାରିବେ । ଦଳିତ ଶ୍ରେଣୀ ତେଣୁ ଦାବୀ କରନ୍ତି ଯେ ଅନ୍ୟ ସଂଖ୍ୟାଲଘୁଙ୍କ ସହ ସେମାନଙ୍କର ନୈତିକ ଅଧିକାର ଦୃଷ୍ଟିରୁ ମନ୍ତ୍ରୀମଣ୍ଡଳରେ ସେମାନଙ୍କର ପ୍ରତିନିଧିତ୍ୱ ନିଶ୍ଚିତ ଭାବେ ଅନୁମୋଦିତ ହେବ । ଏହି ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି ଦଳିତ ଶ୍ରେଣୀ ପ୍ରସ୍ତାବ କରନ୍ତି—

ଗୋଟିଏ ବାଧ୍ୟତା ମୂଳକ ନିର୍ଦ୍ଦେଶନାମା, ଦଳିତ ଶ୍ରେଣୀଙ୍କୁ ତାଙ୍କ ମନ୍ତ୍ରୀମଣ୍ଡଳରେ ପ୍ରତିନିଧିତ୍ୱ ଲାଭ କରିବା ପାଇଁ ଗଭର୍ଣ୍ଣର ଓ ଗଭର୍ଣ୍ଣର ଜେନେରାଲଙ୍କ ଠାରେ ଉପସ୍ଥାପନ କରାଯାଇପାରିବ ।

# ପରିଶିଷ୍ଟ ସ୍ମାରକ ପତ୍ରର ସ୍ୱରୂପ

ତା ୪।୧୧।୧୯୩୧

## ଦଳିତ ଶ୍ରେଣୀଙ୍କ ରାଜନୈତିକ ସୁରକ୍ଷା

(ଦଳିତ ଶ୍ରେଣୀଙ୍କ ସ୍ୱତନ୍ତ୍ର ପ୍ରତିନିଧିତ୍ୱ ଦାବୀକରି ଗୋଲ ଟେବୁଲ ବୈଠକରେ ଡକ୍ଟର ଆମ୍ବେଦକର ଓ ରାଓ ବାହାଦୁର ଆର : ଶ୍ରୀନିବାସନଙ୍କ ଦ୍ୱାରା ପରିଶିଷ୍ଟ ସ୍ମାରକି ପତ୍ର)

ଭାରତର ସ୍ୱାୟତ୍ତ ଶାସନ ସମ୍ବିଧାନରେ, ଦଳିତ ଶ୍ରେଣୀଙ୍କ ସଂରକ୍ଷଣ ପାଇଁ ରାଜନୈତିକ ସୁରକ୍ଷାର ପ୍ରଶ୍ନ ସହ, ଗତବର୍ଷ ଆମ୍ଭେମାନେ ଏକ ସ୍ମାରକପତ୍ର ଉପସ୍ଥାପନ କରିଥିଲୁ । ତାହା ସଂଖ୍ୟାଲଘୁ ସବ୍ କମିଟିର କାର୍ଯ୍ୟବିଧିର ମୁଦ୍ରିତ ଶିରୋନାମା ତୃତୀୟ ପରିଚ୍ଛେଦ ହୋଇଥିଲା । ସେଥିରେ ଦଳିତ ଶ୍ରେଣୀଙ୍କ ସ୍ୱତନ୍ତ୍ର ପ୍ରତିନିଧିତ୍ୱ, ଏତାଦୃଶ ସୁରକ୍ଷା ମଧ୍ୟରୁ ଗୋଟିଏ ବୋଲି ଆମ୍ଭେମାନେ ଦାବୀ କରିଥିଲୁ । କିନ୍ତୁ ସେମାନଙ୍କ ପାଇଁ ଆବଶ୍ୟକ ହେଉଥିବା ସ୍ୱତନ୍ତ୍ର ପ୍ରତିନିଧିତ୍ୱ, ଯାହା ଆମ୍ଭେମାନେ ଦାବୀ କରିଥିଲୁ ସେଥିରେ ତାର ବିଶଦ ବାଖ୍ୟା କରି ନଥିଲୁ । ତାର କାରଣ, ସେ ପ୍ରଶ୍ନ ଠାରେ ପହଞ୍ଚିବା ପୂର୍ବରୁ ସଂଖ୍ୟାଳଘୁ ସବ କମିଟିର ଅବସାନ ଘଟିଥିଲା । ବର୍ତ୍ତମାନ ଏହି ପରିଶିଷ୍ଟ ସ୍ମାରକ ପତ୍ରରେ, ଛାଡ଼ି ଯାଇଥିବା ବିଷୟବସ୍ତୁକୁ ଉପସ୍ଥାପନ କରିବାକୁ ପ୍ରୟାସ କରୁଛୁ । ସଂଖ୍ୟାଳଘୁ ସବ୍-କମିଟି ଯଦି ସେହି ପ୍ରଶ୍ନକୁ ଏହି ବର୍ଷ ବିଚାର କରେ, ଏହା ନିଶ୍ଚିତ ଭାବେ ଆବଶ୍ୟକୀୟ ବିସ୍ତୃତ ବିବରଣୀ ସବ୍ କମିଟିକୁ ଯୋଗାଇ ପାରିବ ।

### ୧- ସ୍ୱତନ୍ତ୍ର ପ୍ରତିନିଧିତ୍ୱର ପରିମାଣ

କ) ପ୍ରାଦେଶିକ ବୈଧାନିକଙ୍କ ମଧ୍ୟରେ ସ୍ୱତନ୍ତ୍ର ପ୍ରତିନିଧିତ୍ୱ

(୧) ବଙ୍ଗଳା, ମଧ୍ୟ ପ୍ରଦେଶ, ଆସାମ, ବିହାର, ଓଡ଼ିଶା, ପଞ୍ଜାବ ଓ ଯୁକ୍ତପ୍ରଦେଶ ମାନଙ୍କରେ ସାଇମନ କମିସନ ଓ ଭାରତର କେନ୍ଦ୍ରୀୟ କମିଟିର ହିସାବ ଅନୁଯାୟୀ, ଦଳିତ ଶ୍ରେଣୀଙ୍କର ଜନ ସଂଖ୍ୟାର ଆନୁପାତିକ ପ୍ରତିନିଧିତ୍ୱ ରହିଛି ।

(୨) ମାଡ୍ରାସରେ ଦଳିତ ଶ୍ରେଣୀଙ୍କର ଶତକଡ଼ା କୋଡ଼ିଏ ଭାଗ ପ୍ରତିନିଧିତ୍ୱ ଅଛି ।

(୩) ବମ୍ବେରେ—(କ) ସିନ୍ଧ୍ ବମ୍ବେ ପ୍ରେସିଡ଼େନସିର ଅଂଶ ହୋଇଥିବା ଦୃଷ୍ଟିରୁ ଦଳିତ ଶ୍ରେଣୀଙ୍କର ଶତକଡ଼ା ଷୋହଳ ପ୍ରତିନିଧିତ୍ୱ ରହିବ ।

କ) ସିନ୍ଧ୍, ବମ୍ବେ ପ୍ରେସିଡ଼େନସିରୁ ପୃଥକ ଦୃଷ୍ଟିରୁ ଦଳିତ ଶ୍ରେଣୀ ପ୍ରେସିଡେନସି ମୁସଲମ ଓ ଦଳିତ ଶ୍ରେଣୀ ଏକା ମାତ୍ରାରେ ପ୍ରତିନିଧିତ୍ୱ ଉପଭୋଗ କରନ୍ତୁ ଯେହେତୁ ଜନ ସଂଖ୍ୟା ଦୃଷ୍ଟିରୁ ଉଭୟ ସମାନ ।

ଖ) ମହାସଂଘୀୟ ବିଧାନ ମଣ୍ଡଳ ମଧ୍ୟରେ ସ୍ୱତନ୍ତ୍ର ପ୍ରତିନିଧିତ୍ୱ ।

ମହାସଂଘୀୟ ଉଭୟ ଗୃହର ବିଧାୟକଙ୍କ ମଧ୍ୟରେ ଦଳିତ ଶ୍ରେଣୀ ଭାରତ ଜନସଂଖ୍ୟାର ଆନୁପାତିକ ପ୍ରତିନିଧିତ୍ୱ ରହିବ ।

**ସଂରକ୍ଷଣ ବ୍ୟବସ୍ଥା :—**

ନିମ୍ନୋକ୍ତ ଧାରଣା ଉପରେ ଆମ୍ଭେମାନେ ବୈଧାନିକ ମାନଙ୍କର ଆନୁପାତିକ ପ୍ରତିନିଧିତ୍ୱ ଧାର୍ଯ୍ୟ କରିଅଛୁଁ ।

(୧) ଆମ୍ଭେମାନେ ଧାରଣା କରୁଁ, ଦଳିତ ଶ୍ରେଣୀଙ୍କ ଜନସଂଖ୍ୟା ସାଇମନ କମିଶନ (ଖଣ୍ଡ-୧ପୃଷ୍ଠା ୪୦) ଓ ଭାରତର କେନ୍ଦ୍ରୀୟ କମିଟି (ରିପୋର୍ଟ ପୃଷ୍ଠା୪୪) ଦ୍ୱାରା କରାଯାଇଥିବା ହିସାବ, ସ୍ଥାନ ବଣ୍ଟନର ମାଧ୍ୟମ ପାଇଁ ଠିକ୍ ବୋଲି ଗ୍ରହଣୀୟ ହେବ ।

(୨) ଆମ୍ଭେମାନେ ଧାରଣା କରିଅଛୁ ଯେ ମହାସଂଘୀୟ ବିଧାନ ମଣ୍ଡଳ ସାରା ଭାରତକୁ ନେଇ ଗଠିତ ହେବ । ଯେଉଁ ଘଟଣା ଦ୍ୱାରା ଗଭର୍ଣ୍ଣରଙ୍କ ପ୍ରଦେଶର ଜନସଂଖ୍ୟା ବ୍ୟତୀତ ମହାସଂଘୀୟ ବିଧାନ ମଣ୍ଡଳ ମଧ୍ୟରେ ଦଳିତ ଶ୍ରେଣୀଙ୍କ ପ୍ରତିନିଧିତ୍ୱ ସଂଖ୍ୟାରେ ଗଣନା ଠିକ୍-ଭାବରେ, ଭାରତର ରାଜାମାନଙ୍କର, କେନ୍ଦ୍ରଶାସିତ ଅଞ୍ଚଳର ଓ ବହିଷ୍କୃତ ସୀମାନ୍ତ ଅଞ୍ଚଳର ଦଳିତ ଶ୍ରେଣୀଙ୍କ ଜନସଂଖ୍ୟା ଅନୁଯାୟୀ ଏକ ଅତିରିକ୍ତ ସଂଖ୍ୟା ରୂପେ ଗଠନ କରାଯିବ ।

(୩) ଆମ୍ଭେମାନେ ଧାରଣା କରୁ ଯେ ବ୍ରିଟିଶ-ଭାରତ ରାଜ୍ୟ ଗୁଡ଼ିକର ପ୍ରଶାସନିକ ଅଞ୍ଚଳ, ବର୍ତ୍ତମାନ ଯାହା ଅଛି ସେହିପରି ରହିବ ।

କିନ୍ତୁ ଧାରଣା କରାଯାଇଥିବା ଜନସଂଖ୍ୟାର ସଂଖ୍ୟାମାନଙ୍କୁ ଅପରିଚିତକ ବୋଲି କୁହାଯାଏ, ଯାହାକି କେତେକ ଆଗ୍ରହୀ ଦଳ ଏଥିପାଇଁ ଧମକାଉଛନ୍ତି; ଏବଂ ନୂତନ ଜନଗଣନାରେ ଦଳିତ ଶ୍ରେଣୀଙ୍କୁ ଆନୁପାତିକ ଭାବେ କମ ଦେଖାଯାଏ;

କିମ୍ବା ବର୍ତ୍ତମାନର ବଳକା ଜନସଂଖ୍ୟାରେ ଗଣ୍ଡଗୋଳ କରି ପ୍ରାଦେଶିକ ପ୍ରଶାସନଙ୍କ ଅଞ୍ଚଳର ପରିବର୍ତ୍ତନ କରାଯାଏ, ତାହାହେଲେ ଦଳିତ ଶ୍ରେଣୀ ସେମାନଙ୍କର ଆନୁପାତିକ ପ୍ରତିନିଧିତ୍ୱ ସଂଶୋଧନର ଅଧିକାରକୁ ବଜାୟ ରଖିବେ, ଏପରିକି ଅଧିକ ଚାପ ପକାଇବାକୁ ଦାବୀ କରିବେ । ସେହିପରି ଭାବରେ, ଯଦି ସବର୍ଣ୍ଣହିନ୍ଦୁ ମହାସଭା ତାହା ନକଲେ, ଦଳିତ ଶ୍ରେଣୀ ସେହି ଉପାୟରେ ମହାସଭୀୟ ବିଧାନ ମଣ୍ଡଳୀର ପ୍ରସ୍ତାବ କରି ସେମାନଙ୍କର ଅନୁପାତିକ ପ୍ରତିନିଧିତ୍ୱରେ ପୁନଃ ସମାଧାନ କରିବାକୁ ସ୍ୱୀକାର କରିବେ ।

## ୨-ପ୍ରତିନିଧିତ୍ୱ କରିବାର ପଦ୍ଧତି—

(୧) ଦଳିତ ଶ୍ରେଣୀ ସେମାନଙ୍କର, ଭୋଟରମାନଙ୍କ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳ ଜରିଆରେ, ପ୍ରାଦେଶିକ ଓ କେନ୍ଦ୍ରୀୟ ବିଧାନ ମଣ୍ଡଳ ପାଇଁ ସେମାନଙ୍କ ପ୍ରତିନିଧି ନିର୍ବାଚନ କରିବାକୁ, ଅଧିକାର ଅଛି ।

ମହାସଭା ବା କେନ୍ଦ୍ରୀୟ ବିଧାନ ମଣ୍ଡଳର ରାଜ୍ୟ ସଭାରେ ସେମାନଙ୍କ ପ୍ରତିନିଧିତ୍ୱ ପାଇଁ, ଯଦି ପ୍ରାଦେଶିକ ବିଧାନ ମଣ୍ଡଳ ସଭ୍ୟଙ୍କ ଦ୍ୱାରା ପରୋକ୍ଷ ଭାବେ ନିର୍ବାଚନ ହେବାକୁ ସ୍ଥିର ହୁଏ, ଦଳିତ ଶ୍ରେଣୀ ସେମାନଙ୍କର ସ୍ୱତନ୍ତ୍ର ପୃଥକ ନିର୍ବାଚନ ମଣ୍ଡଳ ଅଧିକାର ପରିତ୍ୟାଗ କରିବାକୁ ଏହି ସର୍ତ୍ତ ଉପରେ ରାଜି ହେବେ ଯେ, ଯେ କୌଣସି ପ୍ରଥାରେ ସେମାନଙ୍କର ଅନୁପାତିକ ପ୍ରତିନିଧିତ୍ୱର ବ୍ୟବସ୍ଥା ହେଉନା କାହିଁକି ସେମାନଙ୍କର ନିର୍ଦ୍ଧାରିତ ଭାଗର ସ୍ଥାନ ପାଇଁ ନିର୍ଭରତା ଦିଆଯିବା ଉଚିତ୍ ।

(୨)-ଦଳିତ ଶ୍ରେଣୀଙ୍କ ପାଇଁ ପୃଥକ ନିର୍ବାଚନ ମଣ୍ଡଳ, ଯୁଗ୍ମ-ନିର୍ବାଚନ ମଣ୍ଡଳ ବା ସ୍ଥାନ ସଂରକ୍ଷଣ ଦ୍ୱାରା ପରିବର୍ତ୍ତନ କରିବାକୁ ଉପଯୁକ୍ତ ହେବନାହିଁ ଯଦି ନିମ୍ନୋକ୍ତ ସର୍ତ୍ତଗୁଡ଼ିକ ପୂରଣ କରା ନ ଯାଏ:—

(କ) ସଂଯୁକ୍ତ ବିଧାନ ମଣ୍ଡଳରେ ସେମାନଙ୍କର ସଂଖ୍ୟାଧିକ ପ୍ରତିନିଧିଙ୍କର ଦାବୀ ଉପରେ ଭୋଟରମାନଙ୍କର ମତାମତ ଧାର୍ଯ୍ୟ ହେବ ଓ ଯାହା ଫଳରେ ଦଳିତ ଶ୍ରେଣୀଙ୍କର ମତାଧିକାର ଥିବାଯୋଗୁ ସଭ୍ୟମାନଙ୍କର ନିର୍ଦ୍ଦିଷ୍ଟ ସଂଖ୍ୟା ଗରିଷ୍ଠତା ହାସଲ ହୋଇ ପାରିବ ।

(ଖ) ବ୍ୟାପକ ବୟସ୍କ ମତଦାନ, କୋଡ଼ିଏ ବର୍ଷ ଅତିବାହିତ ନହେବା ପର୍ଯ୍ୟନ୍ତ ଏଭଳି ଜନମତ ସ୍ଥାପିତ ହୋଇ ପାରିବ ନାହିଁ ।

୩ ଦଳିତ ଶ୍ରେଣୀଙ୍କ ସଂଜ୍ଞା ନିର୍ଦ୍ଧାରଣ କରିବାର ଆବଶ୍ୟକତା

ଅତୀତରେ ଦଳିତ ଶ୍ରେଣୀଙ୍କ ପ୍ରତିନିଧିତ୍ୱର ଘୋର ଅପବ୍ୟବହାର କରା-ଯାଇଅଛି । ପ୍ରାଦେଶିକ ବିଧାନମଣ୍ଡଳୀରୁ ସେମାନଙ୍କୁ ପ୍ରତିନିଧିତ୍ୱ ଦେବାପାଇଁ ବହୁଳ ସଂଖ୍ୟାରେ ଦଳିତ ନହୋଇଥିବା ବ୍ୟକ୍ତିଙ୍କୁ ମନୋନୀତ କରାଯାଇଛି । ଏଭଳି ଘଟଣାର ଅଭାବ ନାହିଁ ଯେ, ଯେଉଁଠାରେ ଦଳିତ ଶ୍ରେଣୀ ନ ହୋଇଥିବା ସ୍ଥାନରେ ସେମାନେ ମନୋନୀତ ହୋଇ ପାରିଛନ୍ତି । ଏହିପରି ଅପବ୍ୟବହାର ହେବାର କାରଣ ହେଉଛି ଗଭର୍ଣ୍ଣର ଯେତେବେଳେ ଦଳିତ ଶ୍ରେଣୀଙ୍କୁ ପ୍ରତିନିଧିତ୍ୱ ଦେବାପାଇଁ ମନୋନୀତ କରିବାର ଅଧିକାର ଦିଅନ୍ତି, ସେତେବେଳେ ତାଙ୍କର ମନୋନୟନକୁ ଦଳିତ ଶ୍ରେଣୀଭୁକ୍ତ ବ୍ୟକ୍ତିଙ୍କ ମଧ୍ୟରେ ସୀମିତ କରିଥାନ୍ତି । ଯେହେତୁ ନୂତନ ସମ୍ବିଧାନ ଅଧୀନରେ ମନୋନୀତ କରିବା, ନିର୍ବାଚନରେ ପରିବର୍ତ୍ତିତ ହେବ, ସେତେବେଳେ ଏଭଳି ଅପବ୍ୟବହାର ପାଇଁ ସ୍ଥାନ ରହିବନାହିଁ । ତଥାପି ସେମାନଙ୍କର ସ୍ୱତନ୍ତ୍ର ପ୍ରତିନିଧିତ୍ୱକୁ ଯେପରି ବିଫଳ କରିବାର ସୁଯୋଗ ନ ରହେ, ସେଥିପାଇଁ ଆମ୍ଭେ-ମାନେ ଦାବୀ କରୁଅଛୁ ।

(୧) ଦଳିତ ଶ୍ରେଣୀ କେବଳ ସେମାନଙ୍କର ନିଜର ପୃଥକ ନିର୍ବାଚନ ମଣ୍ଡଳୀର ଅଧିକାର ପାଇବେ ନାହିଁ, ଅଧିକନ୍ତୁ ସେମାନେ ମଧ୍ୟ ସେମାନଙ୍କ ନିଜ ଲୋକଙ୍କ ଦ୍ୱାରା ପ୍ରତିନିଧିତ୍ୱ କରିବାର ଅଧିକାର ପାଇବେ ।

(୨) ପ୍ରତ୍ୟେକ ଦେଶରେ ଦଳିତ ଶ୍ରେଣୀଙ୍କୁ କଡ଼ାକଡ଼ି ଭାବେ ତ୍ରୁଟିଶୂନ୍ୟ ଭାବରେ ଲୋକ ବୋଲି ସଜ୍ଞାକୃତ କରାହେବ ଯେ ସେମାନେ ସେହି ସଂପ୍ରଦାୟର ଲୋକ, ଯେଉଁମାନେ ସେଠାର ପ୍ରଚଳିତ ଅଛୁଆ ପ୍ରଥାର ଶିକାର ଓ ଯେଉଁମାନଙ୍କର ନାମ ନିର୍ବାଚନ ଦୃଷ୍ଟିରୁ ପ୍ରସ୍ତୁତ ହୋଇଥିବା ଅନୁସୂଚିତ ବର୍ଗ ବୋଲି ନିର୍ଧାରିତ ହେବ ।

୪—ନାମ ବା ପରିଭାଷା ।

ଉପରୋକ୍ତ ପ୍ରଶ୍ନର ଏହି ଅଂଶରେ ଆମ୍ଭେମାନେ ସୂଚାଇ ଦେବାକୁ ଚାହୁଁ ଯେ, ଦଳିତ ଶ୍ରେଣୀଙ୍କ ବର୍ତ୍ତମାନର ନାମକରଣ ନେଇ ଶ୍ରେଣୀ ସଭ୍ୟ ଓ ବାହାର ବ୍ୟକ୍ତି, ଯେଉଁମାନେ, ସେମାନଙ୍କଠାରୁ ସୁବିଧା ଉଠାନ୍ତି ତାଙ୍କର ଦ୍ୱାରା ବାଧାପ୍ରାପ୍ତ ହେଉଛି । ଏହାକୁ ଅସମ୍ମାନ ବା ହେୟଜ୍ଞାନ କରାଯାଉଛି । ଏହି ଘଟଣାର ସୁଯୋଗ ନୂଆ ସମ୍ବିଧାନ ତିଆରି କରିବା ବେଳେ ନିଆଯାଇ ପାରେ । ଅଫିସିଆଲ ଉଦ୍ଦେଶ୍ୟ ନେଇ ବର୍ତ୍ତମାନର ନାମକରଣରେ ବଦଳାଇ ଦିଆଯାଇ ପାରେ । ଆମ୍ଭେମାନେ ଭାବୁଛୁ ଯେ ସେମାନଙ୍କୁ ଦଳିତଶ୍ରେଣୀ ପରିବର୍ତ୍ତେ 'ନନ-କାଷ୍ଟ ହିନ୍ଦୁ', 'ପ୍ରୋଟେ-ଷ୍ଟାଣ୍ଟ ହିନ୍ଦୁ' ବା 'ନନ-କନଫରମିଷ୍ଟ ହିନ୍ଦୁ' କିମ୍ବା ଅନ୍ୟକିଛି ଉପାଧିରେ କୁହାଯାଇ ପାରେ । କୌଣସି ନିର୍ଦ୍ଦିଷ୍ଟ ନାମକରଣ ସୃଷ୍ଟିଦେବା ପାଇଁ ଆମ୍ଭମାନଙ୍କର କ୍ଷମତା

ନାହିଁ । ଆମ୍ଭେମାନେ କେବଳ ସେମାନଙ୍କୁ ପ୍ରସ୍ତାବ ଦେଇ ପାରୁ ଓ ଆମ୍ଭେ ବିଶ୍ୱାସ କରୁ ଯେ, ଯଦି ଠିକ୍ ଭାବରେ ବ୍ୟାଖ୍ୟା କରାଯାଏ ଦଳିତ ଶ୍ରେଣୀ ତାହା ଗ୍ରହଣ କରିବାକୁ କୁଣ୍ଠାବୋଧ କରିବେ ନାହିଁ ।

ସମଗ୍ର ଭାରତର ଚତୁଃପାର୍ଶ୍ୱରୁ ଆମ୍ଭେମାନେ ଏହି ସବୁ ଦାବୀଗୁଡ଼ିକୁ ସ୍ମାରକ ପତ୍ରରେ ଉପସ୍ଥାପନ କରାଯିବାର ସମର୍ଥନ କରି ବହୁ ସଂଖ୍ୟାର ଟେଲିଗ୍ରାମ ପାଇଛୁ ।

*

## ବ୍ୟାଖ୍ୟାନ ମାଳା

### ସ୍ୱାଧୀନ ଭାରତରେ ଦଳିତ ଶ୍ରେଣୀଙ୍କ ରାଜନୈତିକ ଅଧିକାର

(୧୯୩୦, ୩୧ ନଭେମ୍ବରରେ ଲଣ୍ଡନର ଗୋଲ ଟେବୁଲ ବୈଠକରେ ବାବାସାହେବ ଡକ୍ଟର ଆମ୍ବେଦକରଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟାନ)

ଅଧ୍ୟକ୍ଷ ମହୋଦୟ,

ଏହି ସଭାରେ ମୋର ମନ୍ତବ୍ୟ ହେଉଛି, ଏ ଦେଶର ଦଳିତ ଜାତି ପ୍ରତି ନିହିତ ଥିବା ସେହି ଦମନଶୀଳ ଦୃଷ୍ଟି ବିନ୍ଦୁକୁ ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପନା କରିବା । ଯାହାକୁ କି ବୈଧାନିକ ନୀତି ପ୍ରଣୟନ ଦ୍ୱାରା ସୁଧାରିବା ପାଇଁ ମୁଁ ଓ ମୋର ସାଥୀ ରାଓ ବାହାଦୂର ଶ୍ରୀନିବାସନ ଏଠାରେ ପ୍ରତିନିଧିତ୍ୱ କରୁଛୁ, ଏହି ଦୃଷ୍ଟି ବିନ୍ଦୁ କେବଳ ସାଢ଼େ ଚାରିକୋଟି ଲୋକ ଅର୍ଥାତ ବ୍ରିଟିସ-ଭାରତର ସର୍ବମୋଟ ଲୋକ ସଂଖ୍ୟାର ପାଞ୍ଚଭାଗଙ୍କ ପାଇଁ ହିଁ ନିହିତ । ଭାରତରେ ଦଳିତ ଶ୍ରେଣୀଙ୍କର ନିଜର ସ୍ୱତନ୍ତ୍ର ଗୋଷ୍ଠୀ ଅଛି ଯାହାକି ମୁସଲମାନ ମାନଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ । ହିନ୍ଦୁମାନଙ୍କ ସଂଖ୍ୟା ବଢ଼ାଇବା ପାଇଁ ନାମକୁମାତ୍ର ସେମାନଙ୍କ ସହିତ ସାମିଲ କରାଯାଇଛି । ବାସ୍ତବରେ ଏହା ହିନ୍ଦୁ ଗୋଷ୍ଠୀ ପାଇଁ ଏକ ଘୃଣିତ ବିଚ୍ଛିନ୍ନାଂଶ, ଯଦିଓ ଏହାର ଅସ୍ତିତ୍ୱ ଅଲଗା ନୁହେଁ । ଏମାନଙ୍କୁ ଏଭଳି ପରିସ୍ଥିତିରେ ରଖାଯାଇଛି, ଯାହା ଭାରତରେ ଅନ୍ୟ ଜାତିମାନଙ୍କ ସ୍ଥିତିଠାରୁ ସର୍ବଦା ଅଦ୍ଭୁତ ଭାବେ ଅଲଗା କରାଯାଇଛି । ଏହା ଏକ ଏଭଳି ଗୋଷ୍ଠୀ ଯେଉଁମାନେ ଦାସ ଗୋଲାମଠାରୁ ମଧ୍ୟ ହୀନ ଅଟନ୍ତି । କାରଣ ଦାସ ବା ସେବକମାନେ ହିନ୍ଦୁମାନଙ୍କ ଶରୀର ଛୁଇଁ ପାରନ୍ତି । କିନ୍ତୁ ଦଳିତ ଶ୍ରେଣୀର ଲୋକମାନଙ୍କର ହିନ୍ଦୁମାନଙ୍କ ସହିତ ସାଂସାରିକ ସମ୍ପର୍କ ମଧ୍ୟ ରଖାଯାଇ ନାହିଁ । ସବୁଠାରୁ ବଳି ଯୁକ୍ତିଯୁକ୍ତ କଥା ହେଉଛି, ଏମାନଙ୍କୁ ବଳପୂର୍ବକ ନୀଚ କରାଯାଇ 'ସମସ୍ତ ମାନବିକ ବ୍ୟବହାର ଓ

ଅଧିକାରଠାରୁ ବଞ୍ଚିତ କରାଯାଇଛି । ଯେଉଁ ମନୁଷ୍ୟୋଚିତ ମୌଳିକ ନାଗରିକ ଅଧିକାର ଉପରେ ମନୁଷ୍ୟତ୍ୱ ନିର୍ଭର କରେ ସେଥିରୁ ସଂପୂର୍ଣ୍ଣ ଭାବେ ବଞ୍ଚିତ କରାଯାଇଛି । ମୋର ଏହା ଦୃଢ ମତ ଯେ ଭାରତୀୟ ଦଳିତ ଶ୍ରେଣୀ ଯେଉଁମାନଙ୍କର ସଂଖ୍ୟା ଇଂଲଣ୍ଡ ଅଥବା ଫ୍ରାନସ୍ ସହ ପ୍ରାୟ ସମାନ ଏବଂ ସେମାନେ ନିଜର ଅସ୍ତିତ୍ୱ ପାଇଁ ସଂଗ୍ରାମ କରୁଥିବା ବେଳେ ସବଦା ସେମାନଙ୍କୁ ଦମନ ଓ ଲାଞ୍ଛିତ କରାଯାଇଛି । ଏ ଦୃଷ୍ଟି ବିନ୍ଦୁର ସମାଧାନ ଉପରେ ଭାରତର ବୃହତ ରାଜନୈତିକ ସମସ୍ୟାର ସମାଧାନ ନିର୍ଭର କରେ । ଏଣୁ ସେ ଦିଗକୁ ସର୍ବ ପ୍ରଥମେ ଆପଣଙ୍କର ସମ୍ମୁଖରେ ଉପସ୍ଥାପନ କରୁଅଛି । କାରଣ ଭାରତୀୟ ସ୍ୱାଧିନତାର ଏହା ପ୍ରଥମ ପ୍ରଶ୍ନ । ଭାରତୀୟ ଦଳିତ ଶ୍ରେଣୀଙ୍କର ଏହି ଦୃଷ୍ଟି ବିନ୍ଦୁକୁ ମୁଁ ଯଥା ସମ୍ଭବ ସଂକ୍ଷେପରେ ଉପସ୍ଥାପନ କରିବାକୁ ଚେଷ୍ଟା କରିବି ।

ଭାରତରେ ଅଜି ଯେଉଁ ବ୍ୟୁରୋକ୍ରାଟିକ ସରକାର ଅଛି, ଏହା ସ୍ଥାନରେ ଏଠାରେ ଏପରି ଏକ ସରକାର ସ୍ଥାପନ ହେବା ଦରକାର ଯେ କି ଜନତାର ହିତପାଇଁ ଜନତା ଦ୍ୱାରା ଗଠିତ ହେବ । ଦଳିତ ଶ୍ରେଣୀଙ୍କ ଦୃଷ୍ଟି ବିନ୍ଦୁକୁ ଅନୁଭବ କରି × × × ଆମ୍ଭେମାନେ ବର୍ତ୍ତମାନର ଶାସନ ବ୍ୟବସ୍ଥାରେ ନିଜର ସ୍ଥିତିକୁ ବିଶ୍ଳେଷଣ କରି ଖୁବ୍ ଭଲ ଭାବରେ ହୃଦୟଙ୍ଗମ କଲୁ ଯେ ଗୋଟିଏ ଉତ୍ତମ ସରକାର ମଧ୍ୟରେ ଯେଉଁ ବିଶିଷ୍ଟ ଗୁଣ ଥିବା କଥା ତାହା ଏ ସରକାରର ନାହିଁ । ବ୍ରିଟିଶ ଶାସନର ପରିସ୍ଥିତିକୁ ତୁଳନା କଲେ ଆମ୍ଭେମାନେ ଦେଖୁ ଅତ୍ୟାଚାର କରିବା ପରିବର୍ତ୍ତେ ଠିକ୍ ସେହି ସ୍ଥାନରେ ପଡ଼ିରହି ସମସ୍ତ ଅତିବାହିତ କରୁଅଛୁଁ । ଅମ୍ଭମାନଙ୍କର ଦୁର୍ଦ୍ଦଶାର କୌଣସି ପରିବର୍ତ୍ତନ ହୋଇନାହିଁ । ଇଂରେଜ ଶାସନ ପୂର୍ବରୁ ଅମ୍ଭେ ଅମ୍ଭମାନଙ୍କର ଛୁଁଆ ଛିଅଁରୁ ଘୃଣିତ ଅବସ୍ଥାରେ ଥିଲୁ । ପ୍ରଶ୍ନ ହିଏ ବ୍ରିଟିଶ ସରକାର କଣ ଅମ୍ଭମାନଙ୍କର ସେହି ଦୟନୀୟ ପରିସ୍ଥିତିକୁ ଦୂର କରିବା ପାଇଁ କିଛି କରିଛନ୍ତି ? ବ୍ରିଟିଶ ସରକାର ପୂର୍ବରୁ ଆମ୍ଭେମାନେ ମନ୍ଦିର ମଧ୍ୟରେ ପ୍ରବେଶ କରିପାରୁ ନଥିଲୁ । କ'ଣ ବର୍ତ୍ତମାନ କରିପାରୁଛୁଁ ? ବ୍ରିଟିଶ ଶାସନ ଆରମ୍ଭରେ ଅମ୍ଭମାନଙ୍କୁ ପୋଲିସ ବିଭାଗରେ ନିଆଯାଉ ନଥିଲା, କ'ଣ ବ୍ରିଟିଶ ସରକାର ଅମ୍ଭମାନଙ୍କୁ ପୁଲିସ ବିଭାଗରେ ନିଯୁକ୍ତି ଦେଇଛନ୍ତି ? ବ୍ରିଟିଶ ଶାସନର ଆରମ୍ଭରେ ଆମ୍ଭେମାନେ ସୈନ୍ୟ ବିଭାଗରେ ଯୋଗ ଦେବାରୁ ବଞ୍ଚିତ ଥିଲୁ, ଏବେ ଅମ୍ଭମାନଙ୍କ ପାଇଁ କଣ ସୈନ୍ୟ ବିଭାଗର ଦ୍ୱାର ଖୋଲିଅଛି ? ଏହି ସବୁ ପ୍ରଶ୍ନର କୌଣସି ହିଁ କାତ୍ମକ ଉତ୍ତର ବ୍ରିଟିଶ ସରକାରଙ୍କ ପାଖରେ ନାହିଁ । ନିଜ ଶାସନର ଦୀର୍ଘ କାଳ ମଧ୍ୟରେ ବ୍ରିଟିଶ ସରକାର ଯାହାକିଛି ଭଲ କାମ କରିଛନ୍ତି, ତାହାକୁ ମୁଁ ସହର୍ଷ ସ୍ୱୀକାର କରୁଛନ୍ତି । କିନ୍ତୁ ଏହା ସତ୍ୟ ଯେ ଅମ୍ଭମାନଙ୍କର

ସ୍ଥିତିରେ କୌଣସି ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ହୋଇନାହିଁ । ନିଃସନ୍ଦେହ ଯେ ତତ୍-କାଳୀନ ଭାରତୀୟ ସମାଜ ସହିତ ଅମ୍ଭମାନଙ୍କର ଯେଉଁ ଭଲ ସମ୍ବନ୍ଧ ଥିଲା ବ୍ରିଟିଶ ସରକାର ସେଥିରୁ ଯାହା ଦେଖିଲା ତାହାହିଁ ସାମାଜିକ ସ୍ଥିତି ବୋଲି ସ୍ୱୀକାର କରିନେଲା ଏବଂ ତାକୁ ଚୀନା ଦରଜି ପରି ବିଶ୍ୱାସର ନକଲରେ ଚଳାଇ କରି ସାମାଜିକ ସ୍ଥିତିକୁ ବଜାୟ ରଖିଲା । କୌଣସି ଏକ ଚୀନା ଦରଜି ଗୋଟିଏ ପୁରୁଣା କୋଟ୍‌ର ଅନୁରୂପ ଏକ ନୂତନ କୋଟ୍ ତିଆରି କରିବାର ବରାଦ ପାଇଥିଲା । ନୂତନ କୋଟ୍‌ଟିକୁ ପୁରାତନର ଅନୁରୂପ କରିବାକୁ ଯାଇ ତାର ଗଳାବନ୍ଧ ଆଦି ତିଆରି କରିବା ସଙ୍ଗେ ସଙ୍ଗେ ପୁରୁଣା କୋଟ୍‌ଟିରେ ଥିବା କଟା ଦାଗଟିକୁ ମଧ୍ୟ ଗର୍ବର ସହିତ ନୂତନ କୋଟ୍‌ରେ ସୁରକ୍ଷିତ କରିଥିଲା । ବ୍ରିଟିଶ ସରକାର ଦ୍ୱାରା ଆମ୍ଭମାନଙ୍କ ସମାଜର ସେହି ଘୃଣିତ ପୁରାତନ ଘାଆକୁ ଯେତେବେଳେ ପାରି ସେତେବେଳେ ଖୋଲା ରଖାରି ଠିକ୍ ସେହିପରି ରଖିଅଛନ୍ତି । ଆଜି ପର୍ଯ୍ୟନ୍ତ ତାହା ସଫାକରି କୌଣସି ମଲମ ପଟି ଦିଆଯାଇ ନାହିଁ । ଯଦିଓ ବ୍ରିଟିଶ ସରକାରର ଶାସନ ସମୟ ଦେଢ଼ଶହ ବର୍ଷ ଅତିକ୍ରାନ୍ତ ହୋଇଯାଇଛି ।

ମୁଁ ବ୍ରିଟିଶ ସରକାର ଉପରେ ଆମ୍ଭମାନଙ୍କ ଦ୍ରୁତ ସହାନୁଭୂତି ହୀନତା ବା ଉପେକ୍ଷା ଭାବର ଦୋଷ ଦେଉନାହିଁ । ଯାହାକିଛି ଅମ୍ଭେ ବୁଝିପାରୁଛୁ, ତାହା ଏହି ଯେ ଇଂରେଜ ଅଧିକାରୀମାନେ ଆମ୍ଭମାନଙ୍କର ସମସ୍ୟା ଗୁଡ଼ିକୁ ଦୂର କରିବା ପାଇଁ ଅଯୋଗ୍ୟ ବା ଅସମର୍ଥ ଥିଲେ । ଯଦି ଉପେକ୍ଷାର ପ୍ରଶ୍ନ ହୁଅନ୍ତାତଃ ଏହା କୌଣସି ବଡ଼ କଥା ହୁଅନ୍ତା ନାହିଁ । ଏହାଦ୍ୱାରା ଆମ୍ଭମାନଙ୍କ ମଧ୍ୟରେ ଏତେବଡ଼ ପରିବର୍ତ୍ତନ ହୋଇ ନଥାନ୍ତା । କିନ୍ତୁ ପରିସ୍ଥିତିର ଘୋର ବିଶ୍ଳେଷଣ କରିବା ପରେ ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଲି ଯେ ଏହା କେବଳ ଉଦାସୀନତା ପାଇଁ ନୁହେଁ, ବରଂ ଏ ସମସ୍ୟା ଉଠାଇବା ପାଇଁ ସେମାନଙ୍କର ଅଯୋଗ୍ୟତା ହିଁ ପ୍ରଧାନ ପ୍ରତିବନ୍ଧକ ଥିଲା । ଦଳିତ ଶ୍ରେଣୀ ଭଲଭାବରେ ଜାଣନ୍ତି ଯେ ଭାରତରେ ବ୍ରିଟିଶ ସରକାର ଆଗରେ ଦୁଇଟି ବଡ଼ ପ୍ରତିବନ୍ଧକ ଅଛି । ପ୍ରଥମ ପ୍ରତିବନ୍ଧକ ଅନ୍ତର୍ନିହିତ ପ୍ରତିବନ୍ଧକ ସେହି-ମାନଙ୍କ ଦ୍ୱାରା ସୃଷ୍ଟି ହେଉଥିଲା ଯେଉଁମାନେ କି ଶାସନରେ ଥିଲେ । ସେମାନେ ଆମ୍ଭମାନଙ୍କ କଷ୍ଟ ଦୂର କରିବା ଦିଗର ପ୍ରତିବନ୍ଧକ ଥିଲେ । ଯେହେତୁ ଆମ୍ଭମାନଙ୍କୁ ଶିକ୍ଷାରୁ ବଞ୍ଚିତ କରି ରଖାଯାଇଥିଲା, ଆମ୍ଭେମାନେ ମଧ୍ୟ ନିଜର ପ୍ରବଳ ଅଭିଳାଷ ଗୁଡ଼ିକୁ ହାସଲ କରିବା ଦିଗରେ ବିମୁଖ ବା ଉଦାସୀନ ଥିଲୁ । ଏହାର ଅର୍ଥ ନୁହେଁ ଯେ ସେମାନେ ଆମକୁ ସାହାଯ୍ୟ କରିପାରୁ ନଥିଲେ । ବରଂ ଆମ୍ଭମାନଙ୍କ ପ୍ରଗତିରେ ସହାୟତା କରିବା ଏମାନଙ୍କ ଆଚରଣ ସିଦ୍ଧାନ୍ତ ଓ ସ୍ୱାର୍ଥର ବିରୁଦ୍ଧ ଥିଲା । ଦ୍ୱିତୀୟ ପ୍ରତିବନ୍ଧକ ବାହ୍ୟତଃ । ଯାହା ଖୁବ୍ ମାରାତ୍ମକ । ଭାରତ ସରକାର

ସେହିସବୁ ସାମାଜିକ କଳୁଷ ଗୁଡ଼ିକୁ ଦୂର କରିବାର ଆବଶ୍ୟକତାକୁ ବୁଝିଛନ୍ତି । ଏହା ଭାରତୀୟ ସମାଜର ସମସ୍ତ ମହତ୍ତ୍ୱପୂର୍ଣ୍ଣ ଉତ୍ସଗୁଡ଼ିକୁ କ୍ଷୟ କରିଦେଉଛି । ଏହା ଦଳିତ ଶ୍ରେଣୀଙ୍କର ଜୀବନକୁ ଯୁଗ ଯୁଗ ଧରି ଦୁର୍ବଳ କରି ଆସିଛି । ଭାରତ ସରକାର ବୁଝିଛନ୍ତି ଯେ ଜମିଦାରମାନେ ସମାଜର ସଂଖ୍ୟାଧିକ ଲୋକଙ୍କୁ ଦମନ ଓ ଶୋଷଣ କରୁଛନ୍ତି । ପୁଞ୍ଜିପତି ଲୋକେ ସେମାନଙ୍କୁ କେବଳ ଜୀବନ ଧାରଣ ଉପଯୋଗୀ ମଜୁରି ବା ସୁବିଧା ଦେଉନ୍ତି ନାହିଁ । ତଥାପି ଏହା ଅତ୍ୟନ୍ତ ଦୁଃଖପୂର୍ଣ୍ଣ ଯେ ସରକାର ଏହି ଜଘନ୍ୟ ତ୍ରୁଟିକୁ ଦୂର କରିବାକୁ ସାହସ କରି ନାହାନ୍ତି । କାହିଁକି କରିପାରି ନାହାନ୍ତି ? ଭାରତ ସରକାରଙ୍କୁ କଣ ଏହି ସବୁ ତ୍ରୁଟି ଗୁଡ଼ିକୁ ଦୂର କରିବା ପାଇଁ ଆଇନଗତ କ୍ଷମତା ଦିଆଯାଇ ନାହିଁ ? ନା ଏହା ନୁହେଁ, ଦଳିତ ଶ୍ରେଣୀଙ୍କୁ ଉନ୍ନତିର ସୁଯୋଗ ନ ଦେବାର କାରଣ ହେଉଛି ସେମାନଙ୍କର ଭୟ ହୁଏ ଯେ ବର୍ତ୍ତମାନର ସାମାଜିକ ଓ ଅର୍ଥନୈତିକ ଅବସ୍ଥାକୁ ସୁଧାରି ଦେଲେ ତାହା ସରକାରଙ୍କ ନୀତିର ପ୍ରତିବନ୍ଧକ ହେବ । ଏପରି ସରକାର ଦ୍ୱାରା ଜନତାର କି ଲାଭ ହୋଇପାରିବ ? ଯେଉଁ ସରକାର ଦୁଇଟି ପ୍ରତିବନ୍ଧକ ମଧ୍ୟରେ ଅକାମି ହୋଇପଡ଼ିଛି, ତାର ଅଧିନତାରେ ରହିଲେ ଆମ୍ଭମାନଙ୍କର କ'ଣ ଲାଭ ହୋଇପାରିବ ? ଆମର ସରକାର ଏପରି ହେବା ଉଚିତ୍ ଯେଉଁଥିରେ କ୍ଷମତା ଧାରୀ ବ୍ୟକ୍ତିଗଣ ଦେଶର ହିତ ପାଇଁ ନିଷ୍ଠାପର ହେବେ । ଆମର ସରକାର ଏଭଳି ହେବା ଉଚିତ ଯେଉଁଥିରେ କ୍ଷମତାଶୀଳ ଲୋକେ ଯେତେବେଳେ ଜାଣିବେ ଯେ ଏହା କରିବା ନ୍ୟାୟସଙ୍ଗତ ଓ ବାଞ୍ଛନୀୟ ତାହା ତାଙ୍କ ଦୃଷ୍ଟିରେ ପ୍ରୟୋଜନୀୟ ମତେ ସାମାଜିକ ବା ଆର୍ଥିକ ଢାଞ୍ଚାରେ ପରିବର୍ତ୍ତନ ହେଲେ ସେମାନେ ଭୟଭୀତ ହେବେ ନାହିଁ । ଆକ୍ଷେପ ବା ପ୍ରତିରୋଧର ଭୟରେ ଏହି କାର୍ଯ୍ୟକୁ ବ୍ରିଟିଶ ସରକାର କେବେ କରିପାରିବ ନାହିଁ । ଏହା ସେହି ସରକାର ଦ୍ୱାରା ସମ୍ଭବ ଯାହା ଜନତାର, ଜନତା ପାଇଁ ଓ ଜନତା ଦ୍ୱାରା ଗଠିତ ହେବ ।

ଦଳିତ ଶ୍ରେଣୀଙ୍କ ଦ୍ୱାରା ଉଠା ଯାଉଥିବା ଏହା ଏପରି କେତେକ ପ୍ରଶ୍ନ ଯାହାର ଉତ୍ତର ସେମାନଙ୍କର ଦୃଷ୍ଟିଭଙ୍ଗିର ଅନୁରୂପ ତଥା ସହୃଦୟତା ପୂର୍ବକ ମିଳିବା ଉଚିତ । ଦଳିତ ଶ୍ରେଣୀଙ୍କର ଏହା ଅନିବାର୍ଯ୍ୟ ମନ୍ତବ୍ୟ, ଭାରତର ଗୃକାସ୍ଥ ମୁଖ୍ୟ ସରକାର ଆମ୍ଭମାନଙ୍କର ଶୁଭାକାଂକ୍ଷୀ ହୋଇ ମଧ୍ୟ କୌଣସି ପରିବର୍ତ୍ତନ ଆଣିବାକୁ ଅସମର୍ଥ ହୋଇଥିବାରୁ ଆମ୍ଭମାନଙ୍କର ଅଭିଯୋଗ ଗୁଡ଼ିକୁ ଦୂର କରିପାରିବେ ନାହିଁ । ଏହା ସ୍ପଷ୍ଟ ଯେ ନିଜର ଦୁଃଖ ନିଜେ ଯେଉଁଭଳି ଦୂର କରିପାରିବ ଅନ୍ୟ ବ୍ୟକ୍ତି ତାହା କରିପାରିବ ନାହିଁ । କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ଆମ୍ଭମାନଙ୍କ ହାତକୁ ରାଜନୈତିକ କ୍ଷମତା ନ ଆସିଛି, ଆମ୍ଭେ ସେହି ସବୁ ଦୁଃଖକୁ ଦୂର କରି-

ପାରିବୁ ନାହିଁ । ଯେତେ ଦିନ ପର୍ଯ୍ୟନ୍ତ ବ୍ରିଟିଶ ସରକାର ଏଭଳି ରହି ରହିବ, ସେ ପର୍ଯ୍ୟନ୍ତ ଏହା ସ୍ପଷ୍ଟ ଯେ ରାଜନୈତିକ କ୍ଷମତାର କୌଣସି ଭାଗ ଆମକୁ ମିଳିବ ନାହିଁ । କେବଳ ସ୍ୱରାଜ୍ୟ ମିଳିବା ପରେ ଏହାର ସମ୍ବିଧାନ ହିଁ ଆମ୍ଭମାନଙ୍କୁ ରାଜନୈତିକ କ୍ଷମତା ଦେଇପାରିବ । ଏହା ବ୍ୟତୀତ ଆମ ନିଜ ଲୋକମାନଙ୍କର ସମସ୍ୟାର ପ୍ରତିକାର କରିପାରିବୁ ନାହିଁ ।

ଆଉ ଗୋଟିଏ କଥା, ଯେଉଁଥିପାଇଁ ମୁଁ ଆପଣଙ୍କ ଧ୍ୟାନ ସ୍ୱତନ୍ତ୍ର ଭାବେ ଆକର୍ଷଣ କରିବାକୁ ଚାହୁଁଛି । ତାହା ଏହି ଯେ, ଆପଣଙ୍କ ସମ୍ମୁଖରେ ଦଳିତ ଶ୍ରେଣୀଙ୍କ ଦୃଷ୍ଟି କୋଣ ରଖିବା ଦ୍ୱାରା ମୁଁ ଡୋମିନିୟନ ଷ୍ଟେଟସ (ଔପନିବେଶିକ ସ୍ୱରାଜ୍ୟ) ଶବ୍ଦର ପ୍ରୟୋଗ କରିନାହିଁ । ମୁଁ ଜାଣିଶୁଣି ଏହାର ପ୍ରୟୋଗ କରିନାହିଁ । କାରଣ ଏହା ନୁହେଁ ଯେ ମୁଁ ଏହାର ଜଟିଳ ଅର୍ଥ ବୁଝିନାହିଁ । ଏହା ମଧ୍ୟ ନୁହେଁ ଯେ ଭାରତରେ ଡୋମିନିୟନ ଷ୍ଟେଟସ କାର୍ଯ୍ୟକାରୀ ହୋଇଗଲେ ପରେ ଦଳିତ ଶ୍ରେଣୀଙ୍କର କୌଣସି ଆପତ୍ତି ରହିବ ନାହିଁ । ମୋ ଦ୍ୱାରା ଏହା ପ୍ରୟୋଗ ନ କରିବାର ମୁଖ୍ୟ କାରଣ ଏହି ଯେ ଭାରତର ଦଳିତ ଶ୍ରେଣୀ ଯାହା ଚାହାନ୍ତି ତାହା ଏତଦ୍ୱାରା ସମ୍ଭବ ହୋଇପାରିବ ନାହିଁ । ଦଳିତ ଶ୍ରେଣୀ ଯେତେବେଳେ ସରକାରର ସହିତ ଡୋମିନିୟନ ଅଫ ଷ୍ଟେଟର ଆଲୋଚନା କରନ୍ତି, ସେତେବେଳେ ଗୋଟିଏ ପ୍ରଶ୍ନ ଆପଣଙ୍କ ପାଖରେ ଉପସ୍ଥାପନ କରିବାକୁ ଚାହାନ୍ତି । ତାହା ହେଉଛି ପରିପୂର୍ଣ୍ଣ ସତ୍ତା ପ୍ରାପ୍ତ ଭାରତ, ବ୍ୟବହାରରେ କିଭଳି କାର୍ଯ୍ୟ କରିବ ? ରାଜନୈତିକ ଶକ୍ତିର କେନ୍ଦ୍ରବିନ୍ଦୁ କେଉଁଠାରେ ହେବ ? ଏହି ଶକ୍ତି କାହା ହାତରେ ନିହିତ ହେବ ? କଣ ଦଳିତ ଶ୍ରେଣୀଙ୍କୁ କୌଣସି ଅଂଶ ମିଳିବ ? ଏହା କେତେକ ପ୍ରଧାନ ପ୍ରଶ୍ନ ଯେଉଁଥିପାଇଁ ଦଳିତ ଶ୍ରେଣୀ ଚିନ୍ତିତ । ଦଳିତ ଶ୍ରେଣୀ ଭଲ ଭାବରେ ଜାଣନ୍ତି ଯେ ଯଦି ବିଶେଷ ପ୍ରକାରରେ ନିର୍ମିତ ଭାରତୀୟ ଶାସନ ବିଧାନରେ ରାଜନୈତିକ କଳ ଠିକ୍ ଭାବରେ କାମ ନ କରେ ତାହା ଦଳିତ ଶ୍ରେଣୀଙ୍କୁ କୌଣସି ରାଜନୈତିକ ଶକ୍ତି ମିଳିବ ନାହିଁ । ସେହି କଳକୁ ତିଆରି କରିବା ବେଳେ ଭାରତୀୟ ସାମାଜିକ ଜୀବନରେ ଥିବା ବିଷମ ଓ ଜଟିଳ ବିଷୟଗୁଡିକୁ ଦୃଷ୍ଟିରୁ ଅନ୍ତର କରାଯିବା ଉଚିତ ନୁହେଁ । ଏହା ଜାଣି ରଖିବା ଉଚିତ ଯେ ଭାରତୀୟ ସମାଜ, କେତେ ଗୁଡ଼ିଏ ଜାତିମାନଙ୍କର ଏକ ଶ୍ରେଣୀବଦ୍ଧ ରୂପ ଦ୍ୱାରା ବିଶିଷ୍ଟ ସମାଜ, ଯେଉଁଥିରେ ଉଚ୍ଚ ଜାତିର ଲୋକେ ନୀଚ ଜାତିର ଲୋକଙ୍କୁ ଘୃଣା ଦୃଷ୍ଟିରେ ଦେଖନ୍ତି ଓ ନୀଚ ଜାତିର ଲୋକେ ଉଚ୍ଚ ଜାତିର ଲୋକମାନଙ୍କୁ ନିଜଠାରୁ ଉଚ୍ଚ ଓ ଆଦରଣୀୟ ବୁଝନ୍ତି । ଏହି ସମାଜ ବ୍ୟବସ୍ଥାରେ ନ୍ୟାୟ ସମତା ଓ ବନ୍ଧୁତା ଯାହାକି ଗଣତାନ୍ତ୍ରିକ ସରକାରର ମୂଳତତ୍ତ୍ୱ ତାହାସବୁ ଏଥିପାଇଁ ପ୍ରଳାପ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଏହା ମଧ୍ୟ ଧ୍ୟାନ ଦେବାର କଥା ଯେ ବୁଦ୍ଧିମତା ବା ଜ୍ଞାନ ଯାହା ଉଚ୍ଚଶ୍ରେଣୀ ସମାଜରେ ବିଶେଷ ମହତ୍ତ୍ୱପୂର୍ଣ୍ଣ, ତାହା ଉଚ୍ଚ ଆଦର୍ଶରୁ ଆସେ ହୋଇଥାଏ । ଏହି ଉଚ୍ଚବର୍ଗର ଧ୍ୟାନ ବା ଧାରଣା ସମାଜର ସଙ୍କୀର୍ଣ୍ଣତା ଉପରେ ପ୍ରଭାବ ପକାଇ ପାରୁ-ନାହିଁ । ଯଦିଓ ସେହି ଦେଶ ତରଫରୁ ମୁଁ ଏହିସବୁ କଥା କହୁଛି ଓ ରାଜନୈତିକ ଆନ୍ଦୋଳନ ମଧ୍ୟ ଚଳାଉଛି, ଏହା ବ୍ୟକ୍ତିବିଶେଷଙ୍କ ହୃଦୟର ସଙ୍କୀର୍ଣ୍ଣତାକୁ ବଦଳାଇ ପାରୁନାହିଁ । ଅନ୍ୟ କଥାରେ ଦଳିତ ଶ୍ରେଣୀ ଯେଉଁ କଥାକୁ ଯୋରଦେଇ କହିବାକୁ ଚାହାନ୍ତି ତାହା ହେଉଛି ଯଦି କେବେ କୌଣସି ରାଜନୈତିକ ବିଧାନ ନିର୍ମାଣ ହେବ, ସେହି ସମୟରେ ଏହି ସବୁ ବିଷୟକୁ ଧ୍ୟାନ ଦିଆଯିବ ଯେ ତାହାଙ୍କ ପାଇଁ ଏହି ବୈଧାନିକ ମେସିନ ତିଆରି ହେଲା, ତାହା ସେହି ସମାଜର ମାନସିକ ସ୍ଥିତି ଅନୁରୂପ ହେଲା କି ନାହିଁ । ଯଦି ଏହା ନହୁଏ ତେବେ ଏହା ବୁଝାହେବ ଆପଣ ଏକ ଏପରି ବିଧାନ ତିଆରି କରିଦେଲେ ଯାହା ଲମ୍ବା ଚୌଡ଼ା ହୋଇ ମଧ୍ୟ ମୁଣ୍ଡ ବିହୀନ ଅସଙ୍ଗତ ଓ ତାହା ଯେଉଁ ସମାଜ ପାଇଁ ତିଆରି ତାହା ତାର କୌଣସି କାର୍ଯ୍ୟରେ ଆସିଲା ନାହିଁ ।

ଏହି ପ୍ରସଙ୍ଗଟି ସମାପ୍ତ କରିବା ପୂର୍ବରୁ ଆଉ ଏକ କଥା ଆପଣଙ୍କ ଆଗରେ ଉପସ୍ଥାପନ କରିବାକୁ ଚାହୁଁଛି । ମୋତେ କୁହାଯାଏ ଯେ ଦଳିତଶ୍ରେଣୀଙ୍କ ସମସ୍ୟା ସାମାଜିକ, ଏହାର ପ୍ରତିକାର ରାଜନୀତିରେ ନାହିଁ । ଅନ୍ୟ କୌଣସି ଠାରେ ଅଛି । ମୁଁ ଏପରି ଧାରଣାର ସମ୍ପୂର୍ଣ୍ଣ ବିପକ୍ଷରେ ଓ ଏହା ପ୍ରତି ମୋର ମତ ଅତି ଦୃଢ଼ । ଆମେ ଜାଣୁ ଯେ ଦଳିତ ଶ୍ରେଣୀଙ୍କର ଯେଉଁ ସାମାଜିକ ସମସ୍ୟା ଅଛି ତାର ପ୍ରତିକାର ସେପର୍ଯ୍ୟନ୍ତ ହୋଇପାରି ନାହିଁ, ଯେ ପର୍ଯ୍ୟନ୍ତ ତାଙ୍କ ହାତକୁ ରାଜନୈତିକ କ୍ଷମତା ଆସିନାହିଁ । ଯଦି ଏକଥା ସତ୍ୟ, ମୁଁ ବୁଝିପାରୁ ନାହିଁ ଯେ ଏହା ବିପକ୍ଷରେ ଅନ୍ୟ କୌଣସି କଥା ଥାଇପାରେ । ମୁଁ ବିନୀତ ଭାବେ ଆହ୍ୱାନ କରୁଛି ଦଳିତ ଶ୍ରେଣୀଙ୍କର ସମସ୍ୟାକୁ ସ୍ୱତନ୍ତ୍ର ଭାବେ ଏକ ରାଜନୈତିକ ସମସ୍ୟା ଭାବି ଗ୍ରହଣ କରିନେବା ଉଚିତ୍ । ଏହାକୁ ରାଜନୈତିକ ସମସ୍ୟା ବୋଲି ଗ୍ରହଣ କରି-ନେଇ ସାରିବା ପରେ ତାହା ହସ୍ତାନ୍ତର କରିବାର ପ୍ରଶ୍ନ ବିଚାରକୁ ନେବା ଉଚିତ୍ । ଆମ୍ଭେ ଜାଣୁ ଯେ ରାଜନୈତିକ ଶକ୍ତି ବ୍ରିଟିଶ ସରକାରଙ୍କ ହାତରୁ ଚାଲିଯାଉଛି । ଯେଉଁମାନେ ଆମ୍ଭମାନଙ୍କର ଆର୍ଥିକ ସାମାଜିକ ଓ ଧର୍ମପ୍ରାଣ ଜୀବନ ପ୍ରତି ଭୟାନକ ଭାବେ ଏକଛତ୍ର ଶାସକ ହୋଇଯିବେ, ସେମାନେ ଏହା ହେବା ନେଇ କୌଣସି ଆପତ୍ତି ନାହିଁ । କିନ୍ତୁ ଏହି ରାଜତ୍ୱର ଭାବନା ଆମର ବହୁତ ଭାଇମାନଙ୍କ ମନରେ ଅତୀତରେ ଆମ୍ଭମାନଙ୍କ ଉପରେ କରାଯାଇଥିବା ଅତ୍ୟାଚାର ଜୁଲମ ଓ ଅନ୍ୟାୟ ଗୁଡ଼ିକୁ ମନେପକାଇ ଦେଉଛି । ଆମ୍ଭମାନଙ୍କର ଭୟ ହେଉଛି, ରାଜତ୍ୱ ଦ୍ୱାରା

ସେଦିନରୁ ଅତ୍ୟାଚାର ଅଧିକ ଦୁଃଖଦାୟକ ଭାବେ ପୁନରାବୃତ୍ତି ହେବ । ଏହି ଆଶାନେଇ ଭବିଷ୍ୟତର ପରିଣାମ ସହ ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ଅଛୁ ଯେ ଯେତେବେଳେ ଆମ ଦେଶବାସୀଙ୍କ ହାତକୁ ରାଜନୈତିକ ଲଗାମ ଆସିବ ସେତେବେଳେ ଆମ୍ଭେମାନେ ମଧ୍ୟ ଉଚିତ୍ ଅନୁପାତରେ ରାଜନୈତିକ ଭାଗ ପାଇବୁ । ଏଥିପାଇଁ ଗୋଟିଏ ସର୍ତ୍ତ ଉପରେ ରାଜିହୋଇଯିବ ଯେ ଆମ୍ଭମାନଙ୍କର ସମସ୍ୟାକୁ ସୁଧାରିବା ପାଇଁ ଭବିଷ୍ୟତର ଆଶ୍ରୟ ନିଆଯିବ ନାହିଁ । କାରଣ ଆମ୍ଭମାନଙ୍କର ଢେର ଥର ଅତୀତରେ ଦଳିତ ଶ୍ରେଣୀମାନଙ୍କୁ ଏହିପରି ଚମତ୍କାର ଆଶ୍ୱାସନା ସମୂହ, 'ଦେବୁ କରିଦେବା' ଉପରେ ବହୁତ କାଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଛି । ସେବେ ଯେବେ ବ୍ରିଟିଶ ସରକାର ଭାରତରେ ପ୍ରତିନିଧି ମୂଳକ ସରକାର ହାତକୁ ଅଧିକାରମାନ ଛାଡ଼ିବାକୁ ତତ୍ପର ହୋଇଛନ୍ତି, ସବୁବେଳେ ଦଳିତ ଶ୍ରେଣୀଙ୍କୁ ସେଥିରୁ ବଞ୍ଚିତ କରାଯାଇଛି । ସେମାନଙ୍କର ରାଜନୈତିକ ସତ୍ତ୍ୱର ଦାବୀ ପ୍ରତି କୌଣସି ନଜର ଦିଆଯାଇ ନାହିଁ । ଯଦି ଅନନ୍ତ ସମୟ ଅପେକ୍ଷା କରି ଦେଖିବାପାଇଁ ବର୍ତ୍ତମାନ କୁହାଯାଏ ତାହାହେଲେ ମୁଁ ମୋର ସମସ୍ତ ଶକ୍ତିରେ ଏ କଥାର ବିରୋଧ କରିବି । ଆମ୍ଭମାନଙ୍କ ସମସ୍ୟାର ସମାଧାନ ବର୍ତ୍ତମାନ ଦେଶକୁ ମିଳୁଥିବା ରାଜନୈତିକ କ୍ଷମତା ହସ୍ତାନ୍ତର କରିବାର ବୁଝାମଣାର ଏକ ପ୍ରଧାନ ଅଙ୍ଗ ହେବା ଉଚିତ୍ । ଆମ୍ଭମାନଙ୍କର ସମସ୍ୟାକୁ ଭବିଷ୍ୟତର ଶାସକମାନଙ୍କ ସହାନୁଭୂତି ବା ସେମାନଙ୍କର ଶୁଭେଚ୍ଛା ଉପରେ ଛାଡ଼ିଦେବା ଉଚିତ୍ ନୁହେଁ । ଯେଉଁ କାରଣରୁ ଦଳିତ ଶ୍ରେଣୀ ନିଜର ସମସ୍ୟା ଗୁଡ଼ିକୁ ନିଜେ ଆଣୁଛନ୍ତି ତାହା ସୁସ୍ପଷ୍ଟ । ଆମ୍ଭମାନଙ୍କୁ ଭଲଭାବରେ ଜଣା ଯେ ଅଧିକାର ପ୍ରାପ୍ତ, ଅଧିକାର ବଞ୍ଚିତ ମନୁଷ୍ୟ ଅପେକ୍ଷା ଅଧିକ ଶକ୍ତିଶାଳୀ । ଆମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଏକଥା ମଧ୍ୟ ଜାଣନ୍ତି ଯେ କ୍ଷମତାପ୍ରାପ୍ତ ବ୍ୟକ୍ତି ସ୍ୱେଚ୍ଛାରେ ସେମାନଙ୍କ ତରଫରୁ କ୍ଷମତା, ଶକ୍ତିହୀନଙ୍କ ହାତକୁ ଛାଡ଼ିଦେବେ ନାହିଁ । ଏହି କାରଣରୁ ଆମେ ନିଜର ସାମାଜିକ ସମସ୍ୟା ଗୁଡ଼ିକୁ ଭବିଷ୍ୟତରେ ସ୍ଥିର କରିବାର ଆଶା କରିପାରୁ ନାହୁଁ । ଯଦି ଆମେ ଏହି ଲୋକମାନଙ୍କ ହାତରେ କ୍ଷମତା ଦେବୁ, ସେମାନେ ଆମର ସମସ୍ୟା ଗୁଡ଼ିକୁ କୋହଳ କରିପାରିବେ କି ? ଯେଉଁମାନଙ୍କୁ ଆମେ ଆଜି ରାଜସିଂହାସନ ଉପରେ ବସାଇ ଶକ୍ତି ଓ ପ୍ରଭୁତ୍ୱ ଦେବାରେ ସହାୟକ ହେବୁ, କାଲି ସେମାନଙ୍କୁ ସେହି ସିଂହାସନରୁ ତଡ଼ିଦେବାର ଶକ୍ତି ମଧ୍ୟ ଆମ୍ଭମାନଙ୍କ ହାତରେ ହେବା ଉଚିତ୍ । ଖୁବ୍ ବେଶି ବିଶ୍ୱାସ କରି ନିଜେ ନିଜ ହାତରେ ବରବାଦ୍ ହେବା ଅପେକ୍ଷା ଆମ୍ଭେ ଅଧିକ ସାବଧାନ ଅବସ୍ଥାରେ ସୃଷ୍ଟାର ପାଖ ହୋଇ ରହିବାକୁ ପସନ୍ଦ କରୁ । ଏହି କାରଣରୁ ମୁଁ ଭାବୁଛି ଆମ୍ଭମାନଙ୍କ ପାଇଁ ଏହା ଠିକ୍ ଓ ହିତକର ହେବ, ଯଦି ଆମ୍ଭମାନଙ୍କର ସମସ୍ୟାର ସମାଧାନ ପାଇଁ ବର୍ତ୍ତମାନର ରାଜନୈତିକ ମେସିନ ଆମକୁ ନିଜେ ତିଆରି

କରିବାକୁ ଦିଆଯିବ ଯେ ଆମ୍ଭମାନଙ୍କ ହାତରେ କିଛି ବାସ୍ତବ ଅଧିକାର ରହିବ । ଆମ୍ଭମାନଙ୍କର ଭାଗ୍ୟକୁ ସେହିମାନଙ୍କ ହାତରେ ଛାଡ଼ି ଦିଆନଯାଉ ଯେଉଁମାନେ ନିରଙ୍କୁଶ ରହି ଆମ ଉପରେ ଶାସନ କରିବାକୁ ଚାହାନ୍ତି ।

ଦଳିତ ଶ୍ରେଣୀ ନିଜ ଅଧିକାରର ସୁରକ୍ଷା ପାଇଁ କିପ୍ରକାର ରାଜନୈତିକ ମେସିନ ଚାହାନ୍ତି ଏଥିପାଇଁ ସମୟ ଆସିଲେ ମୁଁ ଏହି ସଭା ଆଗରେ ଉପସ୍ଥାପନ କରିବି । ସବୁଠାରୁ ବଡ଼କଥା, ଯାହାସବୁ ମୁଁ କହିବାକୁ ଚାହୁଁଛି, ଯଦି ଆମେ ଏକ ଉତ୍ତରଦାୟୀ ସରକାର ଚାହୁଁ, ତେବେ ଆମ୍ଭେ ଏପରି ସରକାର ଚାହୁଁନା ଯେଉଁଥିରେ କେବଳ ଅନ୍ୟମାନଙ୍କ ଶାସନ ଦେଖାଯିବ । ଯଦି ଆପଣ ଚାହାଁନ୍ତି ଯେ ଶାସକ ପୂର୍ଣ୍ଣରୂପେ ଉତ୍ତର ଦାୟୀ ହେଉ, ତେବେ ଏହା ଏକାନ୍ତ ଆବଶ୍ୟକ ଯେ ବ୍ୟବସ୍ଥାପକ ସଭାରେ ମଧ୍ୟ ଆମ୍ଭମାନଙ୍କର ପୂର୍ଣ୍ଣ ଓ ବାସ୍ତବ ପ୍ରତିନିଧିତ୍ୱ ରହିବ ।

ଅଧ୍ୟକ୍ଷ ମହାଶୟ, ମୁଁ ଦୁଃଖିତ ଯେ ମୋତେ ଏଭଳି ରୂକ୍ଷ ଭାବରେ କହିବାକୁ ପଡ଼ିଲା । କିନ୍ତୁ ଏହା ବ୍ୟତୀତ ମୋର ଅନ୍ୟ କୌଣସି ଉପାୟ ଦେଖାଗଲା ନାହିଁ । ବର୍ତ୍ତମାନ ଦଳିତ ଶ୍ରେଣୀଙ୍କ ସହିତ କେବେ କେହି ମିତ୍ରତା ପୂର୍ଣ୍ଣ ବ୍ୟବହାର କରିନାହିଁ । ସରକାର ସବୁବେଳେ ସେମାନଙ୍କୁ ନିଜର ସୁରକ୍ଷାପାଇଁ ଉପଯୋଗ କରନ୍ତି । ହିନ୍ଦୁମାନେ ସେମାନଙ୍କୁ ଏହି କାରଣରୁ ନିଜର ଅଂଶ ବୋଲି କହନ୍ତି । ଅନ୍ୟ ପକ୍ଷରେ ସେମାନଙ୍କର ଅଧିକାର ଚୁଡ଼ିକୁ ଛଡାଇ ନିଅନ୍ତି । ମୁସଲମାନମାନେ ଏହି କାରଣରୁ ସେମାନଙ୍କର ପୃଥକ ଅସ୍ତିତ୍ୱ ସ୍ୱୀକାର କରୁନାହାନ୍ତି । କାରଣ ସେମାନଙ୍କର ଡର ଯେ ଏହା କରିବା ଦ୍ୱାରା ସେମାନେ ଯେଉଁ ବିଶେଷ ସୁବିଧା ପାଉଛନ୍ତି ଏହାଦ୍ୱାରା ତାହା କମିଯିବ । ଦଳିତ ଶ୍ରେଣୀଙ୍କୁ ଏହି ପ୍ରକାର ସରକାରଙ୍କ ଦ୍ୱାରା ନିରାଶ କରାଯାଇଛି, ହିନ୍ଦୁମାନଙ୍କ ଦ୍ୱାରା ଦମନ କରାଯାଉଛି ଓ ମୁସଲମାନମାନଙ୍କ ଦ୍ୱାରା ଉପେକ୍ଷା କରାଯାଉଛି । ଦଳିତ ଶ୍ରେଣୀ ଏହିପରି ନିର୍ଘାଣ ଓ ଅସହାୟ ଅବସ୍ଥାରେ ପଡ଼ିଛନ୍ତି, ଯାହାର କୌଣସି ତୁଳନା ନାହିଁ । ଏହି କାରଣରୁ ଅସହାୟ ହୋଇ ମୋତେ ଆପଣଙ୍କର ଧ୍ୟାନ ଆକର୍ଷଣ କରିବାକୁ ପଡ଼ୁଛି ।

ଦ୍ୱିତୀୟ ପ୍ରଶ୍ନ ବିଷୟରେ ଯାହା ଲେଖି ନିଆଗଲା, ମୋର ଦୁଃଖ ହୁଏ ଯେ ଏହି ସାମାନ୍ୟ ବିବାଦ ପାଇଁ ତାହା ଛାଡ଼ି ଦିଆଗଲା । ଏହା ଏପରି ମହତ୍ତ୍ୱପୂର୍ଣ୍ଣ ଯେ କେବଳ ତାହାର ଉପରେ ବିଚାର କରିବାକୁ ହେଲେ ଏଥିପାଇଁ ଏକ ପୃଥକ ବୈଠକର ଆବଶ୍ୟକତା ରହିଛି । ଏଥିପାଇଁ ଅଳ୍ପକାଳୀନ ବିବାଦ, ନ୍ୟାୟ ସଙ୍ଗତ ହେବନାହିଁ । ଏହା ଏକ ଏଭଳି ପ୍ରଶ୍ନ ଯେଉଁଥିରେ ଦଳିତ ଶ୍ରେଣୀଙ୍କର ରକ୍ଷାର

ଅନୁରକ୍ତତା ଥାଉ । ଏମାନେ ତାକୁ ବହୁତ ମହତ୍ତ୍ୱପୂର୍ଣ୍ଣ ବିଚାର କରନ୍ତି । ଆମେ ଅଳ୍ପ ସଂଖ୍ୟକ ଅଛୁଁ । ଏହି କାରଣରୁ ମୁଁ କେନ୍ଦ୍ରୀୟ ସରକାରଙ୍କଠାରୁ ଚାହୁଁଛି ଯେ ଏହି ଅଳ୍ପ ସଂଖ୍ୟକଙ୍କୁ ବହୁ ସଂଖ୍ୟକଙ୍କ କୁଶାସନରୁ ବଞ୍ଚିବା ପାଇଁ ସାମ୍ପ୍ରଦାୟିକ ବହୁ ସଂଖ୍ୟକଙ୍କ ଉପରେ କେତୋଟି ବନ୍ଧନ ଲଗାଯାଉ । ଜଣେ ମାତ୍ର ଭାରତୀୟ, ରାଷ୍ଟ୍ରୀୟତା ବିକାଶ ପାଇଁ ଉଦ୍ୟମ, ତାକୁ ଶାସନ କ୍ଷମତା ଦେବା ଅପେକ୍ଷା ମୁଁ ଏଭଳି ଏକ ସଂଯୁକ୍ତ ସରକାରର ପକ୍ଷପାତୀ, ଯେଉଁଥିରେ ସମ୍ମିଳିତ ଭାବେ ଏକ ସରକାର ଭାରତୀୟ ରାଷ୍ଟ୍ରୀୟତାକୁ ନିର୍ମାଣ କରିବା ପାଇଁ ବହୁତ ପ୍ରଭାବଶାଳୀ ହୋଇପାରିବ । କିନ୍ତୁ ଏକୀକରଣ ଦୃଷ୍ଟି ଯେଉଁ ଏକାତ୍ମ ସରକାରର ସପକ୍ଷୋମ ଅଛି ତାହା ଆଜି ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହୋଇନାହିଁ । ମୋ ଅନ୍ତର ମଧ୍ୟରେ ଦୁଃଖ ହେବ, ଯଦି ଜାତିର ଧ୍ୟେୟଠାରେ ପହଞ୍ଚିବା ପୂର୍ବରୁ କିମ୍ବା ଏହାର ଉଦ୍ଦେଶ୍ୟର ପୂର୍ତ୍ତିଲାଭ ପୂର୍ବରୁ ଏହାର ସହାୟକ ସରକାର ଶେଷ ହୋଇଯାଏ । ବର୍ତ୍ତମାନ ଯେଉଁ ଅବସ୍ଥାରେ ଏହି ପ୍ରଶ୍ନଗୁଡ଼ିକ ବିଦ୍ୟମାନ ତାହା କେବଳ ବୃଟଶାଳୀର ବିବାଦ ଭଳି । ଏହି କାରଣରୁ ସଂଘୀୟ ଶାସନ ପ୍ରଣାଳୀ ଉପରେ ବିଚାର କରିବା ପାଇଁ ଉପଯୁକ୍ତ ସମୟ ପ୍ରସ୍ତୁତ କରିହେବ । ସେତେବେଳେ ମୋତେ ବିଶ୍ୱାସ କରିଯିବ ଯେ ପ୍ରାନ୍ତୀୟ ସ୍ୱରାଜ୍ୟ କେନ୍ଦ୍ରୀୟ ସଂଘର ବିରୋଧୀ ହେବ ନାହିଁ ।

ଅଧ୍ୟକ୍ଷ ମହାଶୟ, ଦଳିତ ଶ୍ରେଣୀଙ୍କର ଜଣେ ପ୍ରତିନିଧି ହେବାର ଅଧିକାର ବଳରେ ମୋର ଯାହା କିଛି କରିବାର ଥିଲା ତାହା ମୁଁ କଲି । ଅନୁମତି ମିଳିବ ତ ମୁଁ ସେମାନଙ୍କର ସ୍ଥିତି ବିଷୟରେ ଯାହା କିଛି ଆମ୍ଭମାନଙ୍କୁ ସାମନା କରିବାକୁ ପଡ଼ିବ, ତାହା ଅଳ୍ପ କେତୋଟି ଶବ୍ଦରେ ଉପସ୍ଥାପନ କରିବାକୁ ଇଚ୍ଛା କରୁଅଛି । ତାର ଗମ୍ଭୀରତା ବିଷୟରେ ଏତେ କୁହାଯାଇଛି ଯେ ମୁଁ ଏହା ସହିତ ଗୋଟିଏ ହେଲେ ବି ମଧ୍ୟ ଯୋଡ଼ିବାକୁ ଚାହୁଁନାହିଁ । ମୁଁ ଏହା ବିଷୟରେ ଜାଣିବାକୁ ଇଚ୍ଛୁକ ଯେ ଏହି ସଭା କଣ ଆମ୍ଭମାନଙ୍କର ସମସ୍ୟାର ସମାଧାନ କରିବାକୁ ଉପଯୁକ୍ତ ପନ୍ଥା ନିର୍ଦ୍ଧାରଣ କରିପାରିବ ? ଏହି ସମସ୍ୟାର କଣ ସମାଧାନ ହେବା ଉଚିତ୍—ତାହା ବ୍ରିଟିଶ ପ୍ରତିନିଧିମାନଙ୍କ ଉପରେ ନିର୍ଭର କରେ । ସେମାନେ କେଉଁ ଦୃଷ୍ଟିକୋଣରୁ ଏହାକୁ ଗ୍ରହଣ କରୁଛନ୍ତି । ସେମାନଙ୍କର ଧ୍ୟାନ ଆକର୍ଷଣ କଲାବେଳେ ମୁଁ ପଚାରିବି ଯେ ଆପଣ ଧୈର୍ଯ୍ୟର ସହ ଏହି ପରିସ୍ଥିତିର ସମ୍ମୁଖୀନ ହୋଇ ନିଷ୍ପତ୍ତି କରିବେ ଅଥବା ବଳପୂର୍ବକ ଏହି ଆନ୍ଦୋଳନକୁ ଦବାଇ ଦେବେ । କାରଣ ଅନ୍ତିମ ବା ପୂର୍ଣ୍ଣ ଉତ୍ତର ଦାୟିତ୍ୱ ଆପଣଙ୍କ ଉପରେ । ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ବଳପ୍ରୟୋଗ ପକ୍ଷପାତୀ ବା ଯାହାଙ୍କର ବିଶ୍ୱାସ ଯେ ଗିରଫ-ଦାରୀ ଓ ଜେଲ ଦଣ୍ଡ କରି ଦେଲେ ହିଁ ଏହି ସମସ୍ୟାର ସମାଧାନ ହୋଇଯିବ ।

ସେମାନଙ୍କୁ ରାଜନୈତିକ ଓ ଦାର୍ଶନିକ ଶ୍ରୀଏଡ଼ମଣ୍ଡ ବର୍କଙ୍କର ମହତ୍ତ୍ୱପୂର୍ଣ୍ଣ ଯୁକ୍ତିକ ଯୋଗାଇ ଦେଉଛୁ । ଧନୀ ଉପନିବେଶର ସମସ୍ୟା ସମାଧାନ କଲାବେଳେ ବ୍ରିଟିଶ ରାଷ୍ଟ୍ର ଆଗରେ ବର୍କ ମହୋଦୟ ଯାହା କହିଥିଲେ, ତାହା ଏହି ପ୍ରକାର । "କେବଳ ବଳପ୍ରୟୋଗର ଫଳ ଅସ୍ଥାୟୀ ଅଟେ । ଏହା କିଛି ସମୟ ପାଇଁ ରୋକା ଯାଇପାରେ । କିନ୍ତୁ ଏହାଦ୍ୱାରା ସେମାନଙ୍କୁ ପୁଣି ଥରେ ପରାଜିତ କରିବାରେ ସଫଳ ହୋଇପାରିବ ନାହିଁ । ଯେଉଁ ଜାତି ଉପରେ ବାରମ୍ବାର ଆକ୍ରମଣ କରିବାକୁ ପଡ଼େ ତାହା ଉପରେ ଶାସନ କରାଯାଇ ପାରିବ ନାହିଁ । ବଳପ୍ରୟୋଗ ବିପକ୍ଷରେ ଥିବା ଅନ୍ୟାନ୍ୟ ଆପତ୍ତି ତାର ଅନିଶ୍ଚିତତାର କାରଣ ଅଟେ । ବଳପ୍ରୟୋଗରେ ଲୋକ ସର୍ବଦା ଭୟଭୀତ ହୁଏ ନାହିଁ ଏବଂ ଯୁଦ୍ଧ କରିବା ସାମଗ୍ରୀ ହିଁ ଜୟ କରିବାର ପ୍ରତିଶ୍ରୁତି ଦେଇପାରେ ନାହିଁ । ଯଦି ଆପଣ ସଫଳ ନହୁଅନ୍ତି, ପୁଣି ଆପଣଙ୍କ ପାଖରେ କୌଣସି ସାଧନ ରହିବ ନାହିଁ । ନୀତି ଓ ବୁଦ୍ଧିମତାର ରାସ୍ତା ମଧ୍ୟ ଲୋପ କରାଯାଇପାରେ । କିନ୍ତୁ ଯେତେବେଳେ ବଳର ପ୍ରୟୋଗ ବିଫଳ ହୋଇଯିବ ତ ପୁଣି ଶକ୍ତି ଓ ଅଧିକାରରେ ଭିକ୍ଷାପ୍ରାପ୍ତି ହୋଇପାରିବ ନାହିଁ । ବଳପ୍ରୟୋଗ ବିରୁଦ୍ଧରେ ଦ୍ୱିତୀୟ ଆପତ୍ତି ଏହି ଯେ ଆପଣ ଯେଉଁ ଜିନିଷର ସୁରକ୍ଷା ଚାହାନ୍ତି ତାକୁ ଆପଣ ନିଜ ବଳପ୍ରୟୋଗ ଦ୍ୱାରା କ୍ଷତି ପହଞ୍ଚାଉଛନ୍ତି । ମାନି ନିଅନ୍ତୁ ଯେ ଆପଣଙ୍କର ସ୍ୱାର୍ଥପାଇଁ ଯୁଦ୍ଧ କରୁଛନ୍ତି । ଯାହାପାଇଁ ଯୁଦ୍ଧ କରୁଛନ୍ତି ତାହା ହାତକୁ ଆସିବ ନାହିଁ । ତାହା ଛିନ୍ନ ଭିନ୍ନ ହୋଇ ଯାଇଥିବ ଓ ସଂଘର୍ଷରେ ନଷ୍ଟଭ୍ରଷ୍ଟ ହୋଇ ଯାଇଥିବ ।"

ଏହି ପରାମର୍ଶର ମୂଲ୍ୟ ଓ ଗୁଣକୁ ଆପଣ ଅଲ୍ପ ବହୁତ ଜାଣନ୍ତି । ଆପଣ ଏ ଦିଗକୁ ଧ୍ୟାନ ଦିଅନ୍ତି ନାହିଁ । ଫଳତଃ ଆମେରିକା ଭଳି ଏକ ବିରାଟ ମହାଦ୍ୱୀପ ନିଜକୁ ସ୍ୱାଧୀନ କରିନେଲା, ଶେଷ ସାମ୍ରାଜ୍ୟ ରୂପେ ଭାରତ ଆଜି ଆପଣଙ୍କ ପାଖରେ । ଯେଉଁ ଲୋକ ଶାନ୍ତି ବୁଦ୍ଧିମତାର ରାସ୍ତାକୁ ନିଜର ସ୍ୱାର୍ଥର ପକ୍ଷପାତ ଭାବି ଆସିଛନ୍ତି, ସେମାନଙ୍କୁ ମଧ୍ୟ ମୁଁ ଗୋଟିଏ କଥା କହିବାକୁ ଚାହେଁ । ଏହା ଏକ ଏପରି ବାତାବରଣ ସୃଷ୍ଟି କରିଛି ଯେ ଯେଉଁ ପ୍ରତିନିଧିମାନେ ଏଠାକୁ ନିମନ୍ତ୍ରିତ ହୋଇ ଆସିଛନ୍ତି, ସେମାନେ କେବଳ ଔପନିବେଶିକ ସ୍ୱରାଜ୍ୟ ଦେବା ବା ନଦେବା, ଏହି ସର୍ତ୍ତ ଉପରେ ଆଧାରିତ । ଏ ବିପଦରେ କୌଣସି ନା କୌଣସି ପକ୍ଷ ବିଜୟୀ ହେବ । ଯେଉଁମାନେ ବୁଦ୍ଧିର ସ୍ରୋତ ବୁହାଇ ଦେଇଛନ୍ତି ସେମାନଙ୍କ ପ୍ରତି ଉଚିତ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ନିବେଦନ କରିବାକୁ ଚାହେଁ ଯେ ଏପରି ଏକ ସଜୀବ ପ୍ରଶ୍ନକୁ ତର୍କ ବିତର୍କ କଷଟିରେ କଷିବା ପରେ ସେଥିରୁ ଅନ୍ୟ କୌଣସି ମୂଲ୍ୟ ବାହାରିବ ନାହିଁ । ମୁଁ ତର୍କ କରିବା ଲୋକଙ୍କର ବିରୁଦ୍ଧରେ

ନୁହେଁ । କିନ୍ତୁ ମୁଁ ସେମାନଙ୍କୁ ସତର୍କ କରି ଦେବାକୁ ଚାହେଁ ଯେ ସେମାନେ ଯେଉଁ ପ୍ରଶ୍ନଗୁଡ଼ିକୁ ସାବଧାନତାର ସହିତ ମାନି ନେଇଛନ୍ତି ଯାହାଦ୍ୱାରା ସେମାନେ ନିଜର ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାର ଆବଶ୍ୟକତା ବୁଝିବେ । ଅନ୍ୟଥା ପରିଶେଷ ଶୁଭ ହେବ ନାହିଁ । ଏହା ନିଜ ନିଜ ସ୍ୱଭାବର କଥା ଅଟେ । ଆପଣ ନିଜ ତର୍କର ଅନୁଗାମୀ ଥିଲେ ଯେପରି ଡ଼କ୍ଟର ଜନସନ ବର୍କଲେ ନିଜର ଯୁକ୍ତିକୁ ନିଜ ବିରୁଦ୍ଧରେ ପାଦରେ ଦଳି ଦେଇଥିଲେ । ଠିକ୍ ସେହିପରି ଆପମୋନେ ମଧ୍ୟ ଆପଣଙ୍କର ଯୁକ୍ତିକୁ ନିଜେ ଖଣ୍ଡନ କରିବାକୁ ଯାଇ ଅଛନ୍ତି । ମୁଁ ଏଥିପାଇଁ ଭୟ କରେ କାରଣ ଦେଶର ବର୍ତ୍ତମାନ ଯାହା ସ୍ଥିତି, ଏଥିରୁ ଏହା ସ୍ପଷ୍ଟ ବୁଝାଯାଉନାହିଁ ଯେ ଯେଉଁ ବିଧାନ, ମତ ଦ୍ୱାରା ଗ୍ରହଣୀୟ ନୁହେଁ ତାହା ଦେଶର ମଙ୍ଗଳଦାୟକ ହୋଇପାରିବ ନାହିଁ । ସେ ସମୟ ବର୍ତ୍ତମାନ ନୁହେଁ ଯେ ଭାରତ ପାଇଁ ଭଲ ମନ୍ଦ ଯାହା ଆପଣ ବାଛିବେ ତାହା ଅପଙ୍କୁ ମାନିନେବାକୁ ହେବ । ସେ ସମୟ ବର୍ତ୍ତମାନ ଟେରି ଆସିବାର ନୁହେଁ । ଯଦି ଆପଣ ଚାହାନ୍ତି ଯେ ଦେଶର କୌଣସି ଏପରି ବିଧାନ ହେବ ଯାହା ଚୀରସ୍ଥାୟୀ ହେବ ଓ ସେହି ନୂଆ ବିଧାନର ପ୍ରମୁଖ କଥା ତର୍କ ବିତର୍କ ନୁହେଁ ଜନତାର ରାଏ ହେବା ଦରକାର ।

## ସମ୍ବିଧାନରେ ଦଳିତ ଶ୍ରେଣୀଙ୍କର ଶାସନ ଅଧିକାର

ପ୍ରଧାନମନ୍ତ୍ରୀ ମହୋଦୟ, ଏହି ଗୋଲଟେବୁଲ୍ ବୈଠକକୁ ଦୁଇଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ସମାଧାନ କରିବାକୁ ପଡ଼ିବ । ଯାହାଦ୍ୱାରା ଗୋଟିଏ ରାଷ୍ଟ୍ରର ରାଜନୈତିକ ଜୀବନକୁ ସଗଠିତ କରିବା ପାଇଁ ସମସ୍ତ ମିଳିଯିବ । ପ୍ରଥମ ପ୍ରଶ୍ନ ହେଉଛି ରାଷ୍ଟ୍ରର ଉତ୍ତର ଦାୟୀ ସରକାର ସମ୍ବନ୍ଧରେ ଓ ଦ୍ୱିତୀୟଟି ହେଉଛି ଏହାର ପ୍ରତିନିଧିତ୍ୱ କରୁଥିବା ସରକାରଙ୍କ ବିଷୟକୁ ନେଇ ।

ପ୍ରଦେଶମାନଙ୍କରେ ପ୍ରତିନିଧିତ୍ୱ କରୁଥିବା ସରକାର ବିଷୟରେ ମୋର ବିଶେଷ କିଛି କହିବାର ନାହିଁ । ଯେଉଁ ମତ ଭେଦ ମୁଁ ପ୍ରକାଶ କରିଛି ତାହା ବ୍ୟତୀତ ମୁଁ କମିଟିର ରିପୋର୍ଟକୁ ସ୍ୱୀକାର କରୁଛି ଏବଂ ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବାକୁ ମୁଁ ଆଗ୍ରହୀ ଅଛି । କିନ୍ତୁ କେନ୍ଦ୍ରରେ ଉତ୍ତର ଦାୟୀ ସରକାର ଗଠନ କରିବା ବିଷୟରେ ମୋର ମତଭେଦ ଅଛି । ସଘୀୟ ଶାସନର ରୂପରେଖ ଗଠନ କରିବାର ଉପସମିତିରେ ଯେଉଁମାନେ ଯୋଗ ଦେଇଅଛନ୍ତି ସେମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ ବ୍ୟକ୍ତିଗତ କ୍ଷେତ୍ରରେ ମୁଁ ଜାଣିଛି ସେମାନଙ୍କୁ ପରିବର୍ତ୍ତନ କରିବା ଉଚିତ୍, କିନ୍ତୁ ମୁଁ ଏହିସବୁ କଥାକୁ ଯୋଡ଼ାଇ ଦୋହାଇବାକୁ ଚାହେଁ ନାହିଁ ଯେ

ମୋର କଥା ଅନୁଯାୟୀ ଏହାର ପରିବର୍ତ୍ତନ କେବଳ ନାମକୁ ମାତ୍ର ବା ଏକ ଅବାସ୍ତବ ରୂପ ହେବ । ଅର୍ଥାତ୍ ଉତ୍ତର ଦାୟୀତା, କେବଳ ଦେଖାଇବା ପାଇଁ ନୁହେଁ ।

ଲର୍ଡ ଷ୍ଟ୍ରନହଲରଙ୍କୁ ମୁଁ କହୁଛି ଯେ ସେମାନଙ୍କ ଦ୍ୱାରା କେବଳ ବିହନ ବୁଣି ଦିଆଗଲା । ବର୍ତ୍ତମାନ ଜଳ ସିଞ୍ଚିବା କାର୍ଯ୍ୟ ଆମ୍ଭମାନଙ୍କର । ମହାଶୟ ଗଣ, ମୁଁ ଲର୍ଡ ଷ୍ଟ୍ରନସେଲରଙ୍କ ଠାରେ ବିଶେଷ କୃତଜ୍ଞ ଯେ ସେ ଏହି ମହତ୍ତ୍ୱପୂର୍ଣ୍ଣ ସଭାପାଇଁ ନିଜର ବହୁ ମୂଲ୍ୟ ସମୟରୁ ଏତେ ଅଧିକ ସମୟ ଦେଇ ପାରିଛନ୍ତି । ମୁଁ ତାଙ୍କ ପ୍ରତି କୃତଜ୍ଞ ଅବଶ୍ୟ ରହିବି । ମାତ୍ର ମୋର ବିଶ୍ୱାସ ହେଉନାହିଁ ଯେ ଯେଉଁ ବିହନ ସେମାନେ ବୁଣିଗଲେ ସେଥିରୁ ଫଳ ବାହାରିବ । ମୋତେ ଏହା ଅନୁଭବ ହେଉଛି, ସେମାନେ ଯେଉଁ ବିହନ ବୁଣିବାକୁ ବାଛିଲେ, ତାହା ସମ୍ଭବତଃ ପଚି ଯାଇଛି ଓ ଯେଉଁ ଜମିରେ ତାହା ବୁଣାଗଲା ତାହା ସେପରି ଉର୍ବର ଜମି ନୁହେଁ, ଯେଉଁଥିରୁ ଫଳ ବାହାରିବ ।

ସଙ୍ଘୀୟ ଶାସନର ସମ୍ବିଧାନ ବିଷୟରେ ମୁଁ ମୋର ବିଚାର ଲର୍ଡ ଷ୍ଟ୍ରନସେଲରଙ୍କୁ ଲେଖି କରି ପଠାଇଥିଲି । ମୋତେ ଜଣାନାହିଁ ସେହି କମିଟି, ଯେଉଁଥିରେ କି ସେ ଅଧିକ ଥିଲେ, ମୋର ବିଚାର ଆଡ଼କୁ ଧ୍ୟାନ ଦେଇଛନ୍ତି କି ନାହିଁ । କାରଣ ଏହି କମିଟିର ରିପୋର୍ଟରେ ମୋର ସେହି ବିଚାରର କୌଣସି ସୂଚନା ମଧ୍ୟ ନାହିଁ । ମୁଁ ମୋର ଦୃଢ଼ ବିଚାର ଧାରା ଗୁଡ଼ିକର ବକ୍ତବ୍ୟ ସେହି ଲେଖା ମାଧ୍ୟମରେ ପଠାଇଥିଲି । ଅତଏବ ମୁଁ ଏପରି କୌଣସି ବିଧାନକୁ ସମର୍ଥନ କରିବି ନାହିଁ, ଯାହା ମୋର ବିଚାର ଧାରାର ବିପରୀତ ହେବ । ବସ୍ତୁତଃ ଯଦି ମୋତେ ବର୍ତ୍ତମାନର ଶାସନ ପ୍ରଣାଳୀ ଓ ଏହି କମିଟିକୁ ଜନ୍ମ ଦେଇଥିବା ଦ୍ୱୈଧ-ଶାସନ ପ୍ରଣାଳୀ, ଏହି ଦୁଇଟି ମଧ୍ୟରୁ ଗୋଟିଏ ବାଛିବାର ଅବସର ଦିଆଯାଏ, ତାହା ହେଲେ ମୁଁ ପ୍ରଚଳିତ ପ୍ରଣାଳୀକୁ ହିଁ ପସନ୍ଦ କରିବି । କିନ୍ତୁ ମହାଶୟ, କେନ୍ଦ୍ର ସରକାର ପାଇଁ ପ୍ରସ୍ତାବିତ ବିଧାନର ଏତାଦୃଶ ଅବସ୍ଥାରେ ମୁଁ ବିରୋଧ କରିବି ନାହିଁ । କାରଣ, ଯେହେତୁ ସେଥିରେ ସାର୍ ତେଜବାହାଦୁର ସାପ୍ରୁ, ଯେ କି ଏହି ସଭାର ପ୍ରଥମ ପଥ ପ୍ରଦର୍ଶକ ତଥା ଦାର୍ଶନିକ ଅଟନ୍ତି ସେ ସେଥିରେ ଅଛନ୍ତି । ଏହା ମଧ୍ୟ ଆନନ୍ଦର କଥା ଯେ ଭାରତର ତରୁଣ ପ୍ରତିନିଧି ଶ୍ରୀଯୁକ୍ତ ଜୟକର ଓ ଅବ୍ରାହ୍ମଣ ସମାଜର ପ୍ରତିନିଧି ସାର୍ ଏ: ପି: ପେଟ୍ରୋ ସେଥିରେ ପ୍ରତିନିଧିତ୍ୱ କରୁଛନ୍ତି । ଏହି କାରଣରୁ ମୁଁ ଏଥିରେ କୌଣସି ବାଧା ସୃଷ୍ଟି କରିବାକୁ ଚାହେଁ ନାହିଁ । ଯେଉଁମାନେ ଏହାକୁ ପସନ୍ଦ କରନ୍ତି ଓ ଯେଉଁମାନେ ଏହା ସହିତ ଏକମତ ସେମାନେ ଆଗକୁ ଆସି ଏହାକୁ କାର୍ଯ୍ୟରେ ପରିଣତ କରନ୍ତୁ ।

ମୁଁ ଏହାକୁ ସମର୍ଥନ କରିବି ନାହିଁ, କାରଣ ମୁଁ ଯେଉଁ ଗୋଷ୍ଠୀର ପ୍ରତିନିଧିତ୍ୱ କରୁଛି, ସେମାନଙ୍କ ତରଫରୁ ଶାସନ ପଦ୍ଧତି କିପରି ହେବା ଉଚିତ୍, ଏ ବିଷୟରେ ମୋ ପ୍ରତି କୌଣସି ନିର୍ଦ୍ଦେଶ ବା ପରୱାନା ନାହିଁ । ମୋତେ କେବଳ ଗୋଟିଏ ଆଦେଶ ମିଳିଛି, ମୁଁ ଏପରି ଏକ ସରକାରକୁ ସମର୍ଥନ କରିବି ନାହିଁ ଯେ କି ଉତ୍ତରଦାୟୀ ହୋଇପାରେ ମାତ୍ର ଠିକ୍ ଅର୍ଥରେ ଜନତାର ପ୍ରତିନିଧିତ୍ୱ କରିବ ନାହିଁ । ଏ ସଭାର ପ୍ରତିନିଧିତ୍ୱ ବିଷୟରେ ଯାହା କାରବାର ହେଉଛି ତାହା ଦେଖି ମୋତେ ବଡ଼ ନିରାଶ ହେବାକୁ ପଡ଼ୁଛି । ମତାଧିକାର ଓ ପ୍ରତିନିଧିତ୍ୱ ଦୁଇଟି ଏପରି ଗୋଟିଏ ? ଖମ୍ବ, ଯାହା ଉପରେ ଜନତାର ପ୍ରକୃତ ପ୍ରତିନିଧିତ୍ୱ କରୁଥିବା କୌଣସି ସରକାର ନିର୍ଭର କରିପାରିବ । ଏ କଥାକୁ ସମସ୍ତେ ଜାଣନ୍ତି ଯେ ନେହେରୁ କମିଟି ଦ୍ୱାରା କେବଳ ମତାଧିକାରକୁ ସ୍ୱୀକାର କରାଯାଇଥିଲା ଏବଂ ସେହି କମିଟି ଦ୍ୱାରା ନିର୍ମିତ ବିଧାନର ସେହି ଅଂଶକୁ ଭାରତର ପ୍ରାୟ ସମସ୍ତ ରାଜନୈତିକ ପାର୍ଟି ଗଣ ସମର୍ଥନ କରିଥିଲେ । ଯେତେବେଳେ ମୁଁ ସେହି ସଭାରେ ଯୋଗ ଦେଲି, ତାହା ଦେଖି ବୁଝିନେଲି ଯେ ଏ ସମ୍ବନ୍ଧୀୟ ଲଢ଼ାଇରେ ସ୍ୱ-ମତ ପ୍ରଦାନ ଅଧିକାର ଜିତି ଯାଇଛି । କିନ୍ତୁ ମତାଧିକାର ସମସ୍ୟା ଉପରେ ବିଚାର କରୁଥିବା କମିଟିର କାରବାର ଦେଖି ମୋର ଆଖି ଖୋଲିଗଲା । ମୁଁ ବ୍ୟସ୍ତ ହୋଇ ପଡ଼ିଲି, ଯେତେବେଳେ ମୁଁ ଦେଖିଲି ଯେ ସେହି ଲୋକମାନଙ୍କ ହୃଦୟରେ କୌଣସି ଅନ୍ୟ ଉଦ୍ଦେଶ୍ୟ ଥିଲା, ଯାହା ଫଳରେ ନେହେରୁ କମିଟିର ରିପୋର୍ଟ ଉପରେ ନିଜର ସ୍ୱୀକାରାତ୍ମକ ସ୍ୱାକ୍ଷର କରିଥିଲେ । ଏହି ପର୍ଯ୍ୟନ୍ତ ଭାରତର ନରମ-ଦଳୀୟ ନେତା-ମାନଙ୍କୁ ମଧ୍ୟ ଏହିକଥା ପାଇଁ ଏକମତ କରିବାକୁ କଷ୍ଟକର ହୋଇଥିଲା ଯେ ପ୍ରାଦେଶିକ ବିଧାନସଭା ମାନଙ୍କରେ ଜନତାର ଏକ-ଚତୁର୍ଥାଂଶ ଭାଗକୁ ମଧ୍ୟ ସ୍ୱତନ୍ତ୍ର-ମତାଧିକାର ଦେବା ଉଚିତ୍ ଥିଲା । ପୁଣି କେନ୍ଦ୍ରୀୟ ବିଧାନ ସଭାର ମତାଧିକାରର ମାତ୍ରା କ'ଣ ହେବ ଏହା ମଧ୍ୟ ମୁଁ ଜାଣି ନ ଥିଲି । ଏହି କାରଣରୁ ମୋର ବିଶ୍ୱାସ ହେଲାନାହିଁ ଯେ କେନ୍ଦ୍ରୀୟ ସରକାର ପାଇଁ ମତାଧିକାରର ମାତ୍ରା କିଛି ଏମିତି ହେବ ଯେଉଁଥିରେ ପ୍ରାଦେଶିକ ସରକାରମାନଙ୍କ ଅପେକ୍ଷା କେନ୍ଦ୍ରୀୟ ସରକାର ଜନତାର ମାତ୍ରାଧିକ ପ୍ରତିନିଧିତ୍ୱକାରୀ ସରକାର ହୋଇ ପାରିବ । ଏହି ପରିସୀମିତ ମତାଧିକାରର ପରିଣାମ ଏହା ହୋଇ ପାରିବ ଯେ ଭାରତର ଭାବୀ ସରକାର କେତେକ ନିର୍ବାଚିତ ଶ୍ରେଣୀର ସରକାର ହୋଇ ଆମ ଜନତା ଉପରେ ଶାସନ କରିବ ।

ଆମେ ସମସ୍ତେ ଜାଣୁ ଯେ ବହୁମତ ଓ ବହୁତରୁ ଅଳ୍ପମତ ଦାନକାରୀ ମାନଙ୍କୁ ବିଧାନସଭା ମାନଙ୍କରେ କେତେ କେତେ ସ୍ଥାନ ମିଳିବ ଏହି ପ୍ରଶ୍ନ ଉପରେ ଗାଡ଼ି ଅଟକିଛି । ମୋର ବୁଝିବାରେ, ଏହି ସମ୍ପୂର୍ଣ୍ଣ ପ୍ରତିରୋଧ, ମୋର ସେହି

କାର୍ଯ୍ୟର ଫଳ, ଯାହା ଅତୀତରେ କରାଯାଇଛି । ମୁଁ ବିଶ୍ୱାସର ସହିତ କହୁଛି ଯେ ଆଜି ଏହି ସମସ୍ୟା ଏତେ ବିକଟ ରୂପ ଧାରଣ କରି ନ ଥାନ୍ତା, ଯଦି ଆମ ଅତୀତର ଶାସକ ଶ୍ରେଣୀ ନିରପେକ୍ଷ ଭାବେ ନ୍ୟାୟର ସହିତ କାର୍ଯ୍ୟ କରିଥାନ୍ତେ । ବ୍ରିଟିଶ ସରକାର ନିଜର ରାଜନୈତିକ ସ୍ୱାର୍ଥ ସାଧନ ପାଇଁ ଯେଉଁ ଯେଉଁ ଶ୍ରେଣୀଙ୍କୁ ଯେତିକି ପରିମାଣରେ ଏହି କାର୍ଯ୍ୟ ସିଦ୍ଧିର କ୍ଷମତା ପ୍ରାପ୍ତ ବୋଲି ଦେଖାଇ ଦେଲେ ସେହି ପରିମାଣରେ ସେହି ଶ୍ରେଣୀକୁ ସମ୍ମାନିତ କରିହେଲା । ଅସହାୟ ଦଳିତ ଶ୍ରେଣୀଙ୍କର ଯେଉଁଅଧିକାର ମିଳିବା ଉଚିତ ଥିଲା ତାକୁ ଅନ୍ୟାନ୍ୟ ଶ୍ରେଣୀଙ୍କୁ ଦେଇ ପକାଇ ଅତୁଳନୀୟ ପକ୍ଷପାତ ପୂର୍ଣ୍ଣ କାର୍ଯ୍ୟ କରାଗଲା । ଏହି କାରଣରୁ ଏହି ମାମଲାରେ ଦଳିତ ଶ୍ରେଣୀଙ୍କୁ ସବୁଠାରୁ ଅଧିକ ଅନ୍ୟାୟର ଶିକାର ହେବାକୁ ପଡ଼ିଲା, ମୁଁ ବିଶ୍ୱାସ କରିଥିଲି ଯେ ଏହି ଗୋଲ୍ ଟେବୁଲ ବୈଠକ ଏହି ସିଦ୍ଧାନ୍ତକୁ ସ୍ୱୀକାର କରି, ଏପରି କାର୍ଯ୍ୟ କରିବ, ଯଦ୍ୱାରା ଅନ୍ୟାୟ ପୂର୍ଣ୍ଣ ସିଦ୍ଧାନ୍ତକୁ କୌଣସି ସିଦ୍ଧାନ୍ତ ବୋଲି ମାନି ନିଆଯାଇ ପାରିବ ନାହିଁ । ଦଳିତ ଶ୍ରେଣୀଙ୍କୁ ନ୍ୟାୟତଃ ଯେତେ ସ୍ଥାନ ବିଧାନ ସଭା ପାଇଁ ମିଳିବା ଉଚିତ୍ ସେତିକି ସ୍ଥାନ ସେମାନଙ୍କୁ ମିଳିବ । ପୁରୁଣା ସେହି ଧୋକାବାଜୀ ବଦଳିଯିବ । କିନ୍ତୁ ଏହା ହେଲା ନାହିଁ । ଅନ୍ୟ ସଂଖ୍ୟା ଲଘୁମାନଙ୍କର ଦାବୀକୁ ସ୍ୱୀକାର କରି ନିଆଗଲା ଓ ତାଙ୍କୁ ସେମାନଙ୍କ ଅଧିକାର ଦେଇ ଦିଆଗଲା । ସେମାନଙ୍କ ପାଇଁ କେବଳ ଏତିକି ବାକି ରହିଲା, ନୂତନ ସରକାରର ବିସ୍ତୃତୀ ବା ଯେଉଁ ମଧ୍ୟରୁ ସେମାନଙ୍କ ସ୍ଥାନ ସଂଖ୍ୟାର କିଛି ଅଦଳ ବଦଳ କରି ବା ବୃଦ୍ଧି କରି ସେମାନଙ୍କର ପ୍ରତିନିଧିତ୍ୱକୁ ପକ୍କା କରି ଦିଆଯିବ । ଏଥିରେ ପରିବର୍ତ୍ତନ ବା ପରିମାର୍ଜିତ କିଛି ନା କିଛି କରାଯାଉଛି । ଆରମ୍ଭରୁ ଯେଉଁ ମୂଳଦୁଆ ପଡ଼ିଛି ତାକୁ ଖୋଲି ଦୂର କରିବା ପାଇଁ ଚେଷ୍ଟା କରିବାକୁ ବର୍ତ୍ତମାନ କେହି ସାହାସ କରିପାରିବେ ନାହିଁ । ଦଳିତ ଶ୍ରେଣୀର ମାମଲା ସମ୍ପୂର୍ଣ୍ଣ ଭିନ୍ନ । ସେମାନଙ୍କର ଅଭିଯୋଗକୁ ବର୍ତ୍ତମାନ କେହି ଶୁଣିଲେ ବି ନାହିଁ । ତାହା ଛଡ଼ା କୌଣସି ନିଷ୍ପତ୍ତି ମଧ୍ୟ ନିଆଗଲା ନାହିଁ । ଏଣୁ ମୁଁ କହିପାରୁ ନାହିଁ ଯେ ସେମାନଙ୍କର ଅସହାୟ ଅବସ୍ଥାର ଫାଇଦା ଉଠାଇବା ଅସମ୍ଭବ ନୁହେଁ । ସେମାନଙ୍କର ପ୍ରତିନିଧିତ୍ୱର ଦାବୀକୁ ଅନ୍ୟ ସଂଖ୍ୟା ଲଘୁଙ୍କର ଭିତ୍ତି ଓଟବକୁ ସନ୍ତୁଷ୍ଟ କରିବା ପାଇଁ ଛୁରିକା ଘାତ କରି କାଟି ଦିଆଯିବ । କାରଣ ଅନ୍ୟ ସଂଖ୍ୟା ଲଘୁ ସମ୍ପ୍ରଦାୟଙ୍କର ସ୍ଥାନ ସଂରକ୍ଷଣ ଦରକାର ନାହିଁ । ସେମାନେ ଅଧିକରୁ ଅଧିକ କ୍ଷମତା ଚାହାନ୍ତି । ଏହି ପରିସ୍ଥିତିରେ ନିଜର ସ୍ଥିତିକୁ ସମ୍ପୂର୍ଣ୍ଣରୂପେ ସ୍ପଷ୍ଟ କରିଦେବା ପାଇଁ ମୁଁ ଅକ୍ଷମ, କାରଣ ଭବିଷ୍ୟତର ବିଧାନରେ ଦଳିତ ଶ୍ରେଣୀଙ୍କ ଅଧିକାର ଗୁରୁତ୍ୱକୁ ଧାର୍ଯ୍ୟ କରାଯାଇ ନାହିଁ । ଏହି କାରଣରୁ ସମ୍ରାଟଙ୍କର ସରକାର ଯଦି

କେବେ କେନ୍ଦ୍ର ବା ସାମାନ୍ତ ଦେଶଗୁଡ଼ିକୁ ଅଧିକାର ଦେବାପାଇଁ ଘୋଷଣା କରନ୍ତି ସେତେବେଳେ ଏହି ପଦକ୍ଷେପ ନିଆଯିବ ଯାହା ଫଳରେ ସବୁ ଶ୍ରେଣୀର ସମ୍ମତିକ୍ରମେ ଦଳିତ ଶ୍ରେଣୀର ଅଧିକାର ଓ ହିତ ଦୃଷ୍ଟିରୁ ସେମାନଙ୍କ ପାଇଁ କେତେକ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ର, ସଂରକ୍ଷଣ କରି ରଖାଯିବାକୁ ସ୍ପଷ୍ଟ ରୂପେ ଧାର୍ଯ୍ୟ କରି ଦେବାକୁ ପଡ଼ିବ । ଏହି ଘୋଷଣା ଦ୍ୱାରା ଯେଉଁ ଭିନ୍ନ ମତ ସୃଷ୍ଟି ହେବ ତାକୁ ଦଳିତ ଶ୍ରେଣୀ କୌଣସିମତେ ସ୍ୱୀକାର କରିବେ ନାହିଁ । ଯଦି ଏହା କରାନଯାଏ ତାହାହେଲେ ମୁଁ ଓ ମୋର ସାଥିସମୂହ ଏ ସଭାର କୌଣସି କାର୍ଯ୍ୟକ୍ରମର ଦାୟିତ୍ୱ ନେବୁନାହିଁ ଓ ସେଥିପ୍ରତି ସହଯୋଗ କରିବାକୁ ଅସମର୍ଥ ହେବୁ । ଶ୍ରୀମାନଙ୍କ, ମୁଁ ଆପଣଙ୍କୁ ଏହି ସମ୍ବନ୍ଧରେ ଯାହାକିଛି କରିବାକୁ ପ୍ରାର୍ଥନା କରୁଅଛି ସେଥିରୁ ମୋର ଏହି ଅଭିପ୍ରାୟ ଯେ ଆପଣ ମୋର କଥା ପାଳନ କରନ୍ତୁ, ଏହା ବାଂଛିତ ଅନ୍ୟ କିଛି ନୁହେଁ, ବ୍ରିଟିଶ ପାର୍ଲିଆମେଣ୍ଟ ବା ତା ତରଫରୁ ଯେଉଁମାନେ ଅଧିକାରୀ, ଯେ ସମସ୍ତଙ୍କୁ ସବୁବେଳେ ଏହା କହୁଛି ଯେ ମୁଁ ଦଳିତ ଶ୍ରେଣୀଙ୍କର ମଙ୍ଗଳର ସଂରକ୍ଷକ ଅଟେ । ମୋର ବିଶ୍ୱାସ ହୁଏ ସେମାନେ ଯାହା କହୁଛନ୍ତି ତାହା ଏପରି ହେବା ଉଚିତ୍ ଯାହାର ଉପଯୋଗ ସମସ୍ତ ଜଣାଶୁଣା ଲୋକମାନଙ୍କ ନିଜ ନିଜ ମାନବିକ ସମ୍ପର୍କକୁ ମଧ୍ୟସ୍ଥ କରିପାରିବ ଏହି କାରଣରୁ ମୁଁ ବୁଝୁଛି ଯେ ସମ୍ରାଟଙ୍କର ଏହି ଶ୍ରମିକ ଦଳ ସରକାରଙ୍କର ଏହା କର୍ତ୍ତବ୍ୟ ଅଟେ । ସେମାନେ ଏହି ବିଶ୍ୱାସକୁ ଭାଙ୍ଗି ନ ଦିଅନ୍ତୁ ଯାହା ମୁଁ ସେମାନଙ୍କର କଥା ଅନୁଯାୟୀ କରୁଛି ।

ପ୍ରଧାନମନ୍ତ୍ରୀ ମହୋଦୟ 'ମୋତେ' ସ୍ପଷ୍ଟ କହିବାକୁ ଅନୁମତି ଦିଅନ୍ତୁ । ମୁଁ ଏଥିପାଇଁ ନିଜ ସହ ଖୁବ୍ ବିଶ୍ୱାସ ଘାତକତା କରୁଛି ବୋଲି ଭାବିବ ଯଦି ଏସବୁ ସମସ୍ୟାକୁ ସେହି ଲୋକଙ୍କ ଦୟା ଉପରେ ଛାଡ଼ିଦେବି, ଯେଉଁମାନେ କି ଆମ୍ଭମାନଙ୍କର ଦୁଃଖ ଓ କଷ୍ଟ ପ୍ରତି କେବେ ଖିଆଲ କରନ୍ତି ନାହିଁ ଓ ଯେଉଁମାନଙ୍କ ଐଶ୍ୱର୍ଯ୍ୟର ଅଟ୍ଟାଳିକା ଆମ୍ଭମାନଙ୍କର ପତନ ଓ ବିନାଶର ମୂଳଦୁଆ ଉପରେ ଦଣ୍ଡାୟମାନ ।

ଏହା କହିବା ପରେ, ସମ୍ଭବ ହୁଏ ଭାରତର ରାଷ୍ଟ୍ରୀୟତାବାଦୀ ଦେଶ ଭକ୍ତମାନେ ମୋତେ 'ସାମ୍ପ୍ରଦାୟିକ' ବାଦୀ କହି ପାରନ୍ତି । ମୋର ଏଥିପାଇଁ ଦୁଃଖ ନାହିଁ । କାରଣ ଭାରତ ଗୋଟିଏ ବିଚିତ୍ର ଦେଶ । ତାର ରାଷ୍ଟ୍ରନାୟକ ଓ ଦେଶ ଭକ୍ତମାନେ କହିଆସନ୍ତି ଯେ ସେମାନେ ଖୋଲା ଆଖିରେ ଦେଖୁଛନ୍ତି । ସେହିମାନଙ୍କ ଦେଶର ଭାଇମାନଙ୍କ ସହିତ ପଶୁଭଳି ବ୍ୟବହାର କରାଯାଉଛି, ମାତ୍ର

ଏଥିପାଇଁ ସେମାନଙ୍କ ହୃଦୟ ଉଦ୍‌ବେଗ ହୁଏ ନାହିଁ, କିମ୍ବା ସେମାନଙ୍କର ଆତ୍ମା ବିଦ୍ରୋହ କରି ଉଠେ ନାହିଁ । ସେମାନେ ଭଲ ଭାବରେ ଜାଣନ୍ତି ଯେ ସେମାନଙ୍କ ଦେଶର ନାରୀ ଓ ବହୁ ସଂଖ୍ୟକ ଜନତା ଦେଶର ନାଗରିକ ଅଧିକାରରୁ ବଞ୍ଚିତ । ଏହାକୁ ଦୂର କରିବାକୁ ସେମାନେ ଯତ୍ନଶୀଳ ହୋଇ ନପାରିଥିବା ଯୋଗୁଁ, ସେମାନଙ୍କ ମନରେ ଟିକେ ହେଲେ ଦୁଃଖ ନାହିଁ । ଏଣୁ ଏହାକୁ ଦୂର କରିବାକୁ ସେମାନେ ଯତ୍ନଶୀଳ ନୁହଁନ୍ତି । ଏମାନେ ବୁଝନ୍ତି ଯେ ଦେଶରୁ ପ୍ରତ୍ୟେକ ଗୋଟିଏ ଗୋଷ୍ଠୀ ସଙ୍କୋଚ ବ୍ୟଙ୍ଗ ହେତୁରୁ ସମ୍ପୂର୍ଣ୍ଣ ରୂପେ ବଞ୍ଚିତ ହୁଅନ୍ତୁ । ଅଥଚ ସେମାନଙ୍କ ନ୍ୟାୟଶୀଳ ବିଚାରରେ କୌଣସି ଅଂଶ ନ ଆସୁ । ବ୍ୟକ୍ତି ଓ ସମାଜର ଧ୍ୱଂସକାରୀ ଅଗଣିତ ଦୁର୍‌ବ୍ୟବସ୍ଥାକୁ ସେମାନେ ପ୍ରତିଦିନ ଦେଖନ୍ତି, କିନ୍ତୁ ସେମାନଙ୍କୁ ଦୂର କରିବାକୁ କୌଣସି ଚେଷ୍ଟା କରନ୍ତି ନାହିଁ । ଭାରତର ଦେଶ ଭକ୍ତଗଣ ବୁଝନ୍ତି, ନିଜର ବ୍ୟକ୍ତିତ୍ୱ ବା କ୍ଷମତା ବଳରେ ନିଜର ଗୋଷ୍ଠି ବା ଜାତି ଅଧିକରୁ ଅଧିକ ପ୍ରଭୁତ୍ୱ ନେଇ ହେଉ । ଏହାହିଁ ତାଙ୍କର ଧ୍ୟେୟ । ମୋତେ ହସଲାଗେ, ମୁଁ ତାଙ୍କପରି ଜଣେ ଦେଶ ଭକ୍ତନୁହେଁ ମାତ୍ର ମୁଁ ହେଉଛି ସେହି ସମୁଦାୟ ଗୋଷ୍ଠିର, ଯେଉଁମାନେ କି ଗଣତନ୍ତ୍ର ବୁଝାନ୍ତି । ମୋର ଧ୍ୟେୟ ରାଜନୈତିକ, ଆର୍ଥିକ ଓ ସାମାଜିକ ସବୁ କ୍ଷେତ୍ରରେ ମନୁଷ୍ୟ ବ୍ୟବହାରିକ ଦୃଷ୍ଟିରୁ ସମାନ ଗଣ୍ୟ ହୁଅନ୍ତୁ । କେବଳ ଜନତାର ପ୍ରତିନିଧିତ୍ୱ କରୁଥିବା ଗଣତାନ୍ତ୍ରିକ ସରକାର ଏହି ଉଦ୍ଦେଶ୍ୟ ସାଧନ ପାଇଁ ଏକମାତ୍ର ସମର୍ଥ । ଏଣୁ ଦଳିତ ଶ୍ରେଣୀ ଏହିପରି ଏକ ଗଣତାନ୍ତ୍ରିକ ସରକାରକୁ ମହତ୍ତ୍ୱ ବା ଗୁରୁତ୍ୱ ଦେଉଛି । ଏହି କାରଣରୁ ମୁଁ ଆପଣମାନଙ୍କ ଠାରେ ଏପରି ଆଗ୍ରହ ପ୍ରକାଶ କରୁଛି ଯେ ଆପଣ ନିଜର ଘୋଷଣାକୁ କାର୍ଯ୍ୟକାରୀ କରିବାକୁ ଏହା କରିବା ଏକାନ୍ତ ଆବଶ୍ୟକ । ଆପଣ ମୋତେ କହିପାରନ୍ତି ଯେ ମୁଁ ଦଳିତ ଶ୍ରେଣୀଙ୍କ ପ୍ରତି ଅଧିକ ସହାନୁଭୂତିଶୀଳ ହୋଇ ପଡ଼ିଛି । କିନ୍ତୁ ମୋର ଏହାହିଁ ନିବେଦନ, ଏହି ଜଖମ ହୋଇ ପଡ଼ିଥିବା ସ୍ୱାଧୀନତାକୁ ଦୃଢ଼ ଭାବେ ଧାରଣ କରି ରଖିବା ପାଇଁ ଏହାଠାରୁ ଏକ ସୁଦୃଢ଼ ଓ ନିଶ୍ଚିତ ବସ୍ତୁର ଦରକାର ଅନ୍ୟ କିଛି ନାହିଁ । ଏଥିପାଇଁ ଆପଣ ମୋ ଉପରେ ଶଂକାକୁଳ ଭାବ ପୋଷଣ କରୁଥିବାର ଦୋଷାରୋପ କରୁଛନ୍ତି । ମୋର ଉତ୍ତର ହେଉଛି ମୁଁ ମାତ୍ରାଧିକ ବିଶ୍ୱାସ ପୋଷଣ କରି ନିଜ ହାତରେ ନିଜର ତଣ୍ଟି ଚିପିବା ଅପେକ୍ଷା ଅଧିକ ଶଂକାକୁଳ ହୋଇ ଘୃଣାର ପାତ୍ର ହୋଇ ରହିବାକୁ ପସନ୍ଦ କରୁଛି ।

—୦—

# ଭାରତୀୟ ସୈନ୍ୟ ବିଭାଗରେ ଦଳିତ ଶ୍ରେଣୀଙ୍କ ନିଯୁକ୍ତି

ଏହି ରିପୋର୍ଟର ୪ର୍ଥ ପାର୍ଟର ୨ୟ ଧାରାରେ ମୁଁ ଏହି ସଂଶୋଧନ ଉପସ୍ଥାପନ କରିବାକୁ ଚାହୁଁଛି ଯେ ସମ୍ରାଟଙ୍କ ସରକାରର ସମସ୍ତ ପ୍ରଜାମାନଙ୍କ ପାଇଁ ସୈନ୍ୟ ବିଭାଗରେ ନିଯୁକ୍ତିର ଦ୍ୱାର ଉନ୍ମୁକ୍ତ ରହୁ । ଯଦି ଦଳିତ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ସୈନ୍ୟବିଭାଗରେ ଯୋଗ ଦେବା ପାଇଁ ଯୋଗ୍ୟତା ଓ ଗୁଣ ଥାଏ ତାହାହେଲେ ସେମାନଙ୍କୁ ମଧ୍ୟ ଏହି ସୁବିଧା ଦିଆଯାଉ । ମୁଁ ମୋର ଏହି ମତ, ଏହି କାରଣରୁ ଉପସ୍ଥାପନ କରିନଥିଲି ହୁଏତ ମୋର ଏହି ପ୍ରସ୍ତାବକୁ ଦାଖଲ କରିବା ପୂର୍ବରୁ ଗ୍ରହଣ କରି ନିଆଯିବ । ବର୍ତ୍ତମାନ ଏହା ମୋର ସ୍ୱତନ୍ତ୍ର ସଂଶୋଧନ, ଯେଉଁଥିରେ ମୁଁ ତାର କାରଣ ଉପସ୍ଥାପନ କରୁଛି । ଏହା ଉପରେ ସଭାହଦର ନିଷ୍ପତ୍ତି ନିଆଯାଉ ଓ ସମସ୍ତେ ଜାଣି ପାରନ୍ତୁ । ମୋର ଏହି ସମାଧାନ କେବଳ ମାମୁଲି । ଏହାର ଉଦ୍ଦେଶ୍ୟ ହେଉଛି ସମ୍ରାଟଙ୍କର ପ୍ରଜା ମଧ୍ୟରୁ ସୈନ୍ୟ ବିଭାଗରେ ଯୋଗ ଦେବାପାଇଁ ଯେଉଁ ଭେଦଭାବ ରଖାଯାଇଛି ତାହା ରହିବା ଉଚିତ୍ ନୁହେଁ । ଏହା ନିଃସନ୍ଦେହ ଯେ ମୋର ଏହି ସଂଶୋଧନ ଉପସ୍ଥାପନ କରିବାର ଉଦ୍ଦେଶ୍ୟ ହେଉଛି ଦଳିତ ଶ୍ରେଣୀଙ୍କ ଅଧିକାରକୁ ସୁରକ୍ଷା କରିବା । କିନ୍ତୁ ଏହା ଭାବିବା ଉଚିତ୍ ନୁହେଁ, ମୁଁ ଏଥିପାଇଁ କମିଟି ନିକଟରେ କୃପାଭିକ୍ଷା କରୁଛି । ମୋର ପ୍ରାର୍ଥନା କେବଳ ଏତିକି, ଭାରତ ସରକାରଙ୍କର 'ଇଣ୍ଡିଆ ପ୍ୟାକେଟ୍'ରେ ଯେଉଁ ସିଦ୍ଧାନ୍ତ ସ୍ୱୀକାର କରାଗଲା ତାହା କାର୍ଯ୍ୟକାରୀ କରାଯାଉ, ଇଣ୍ଡିଆ ପ୍ୟାକେଟ୍‌ରେ କୁହାଯାଇଛି, ସମ୍ରାଟଙ୍କର ପ୍ରଜା ମଧ୍ୟରେ କୌଣସି ବ୍ୟକ୍ତିର ଜାତି ଧର୍ମ ବା ବର୍ଣ୍ଣ, ତାର ସରକାରୀ ଚାକିରୀ ପାଇଁ ପ୍ରତିବନ୍ଧକର କାରଣ ହେବନାହିଁ । ଏଣୁ ନିଜର ଏହି ପ୍ରାର୍ଥନାରେ ମୁଁ ବୁଝୁଛି ମୁଁ କୌଣସି ବିଶେଷ କୃପା ଚାହୁଁନାହିଁ ।

ମହୋଦୟ ! ମୁଁ ଆପଣଙ୍କର ଧ୍ୟାନ ଏହି ବିଷୟ ପ୍ରତି ଆକର୍ଷଣ କରୁଛି । ମୋର ଏହି ସଂଶୋଧନ ସର୍ଭିସ୍ କମିଟିର ବିଚାରଧାରାର ଅନୁରୂପ ଅଟେ । ଯଦି ଆପଣ ଏହି କମିଟି ଦ୍ୱାରା ନିଯୁକ୍ତ ସର୍ଭିସ କମିଟି ପ୍ରତି ଧ୍ୟାନ ଦିଅନ୍ତି, ତାହାହେଲେ ଆପଣ ଦେଖିପାରିବେ ଯେ ସର୍ଭିସ କମିଟି ଦ୍ୱାରା ଏହି କଥାହିଁ କୁହାଯାଇଛି । ସରକାରୀ ଚାକିରୀରେ ନିଆଯିବା ସମ୍ବନ୍ଧରେ ସମ୍ରାଟଙ୍କର ପ୍ରଜାମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତିର ସମ୍ମୁଖରେ କିଛି ପ୍ରତିବନ୍ଧକ ନରହୁ । କେବଳ ଏହା ନୁହେଁ,

ଭାରତରେ ସରକାରୀ ଚାକିରି ପାଇବାରେ ସମ୍ରାଟଙ୍କର ପ୍ରଜାମାନଙ୍କର ଯଦି କୌଣସି ବାଧା ଥାଏ, ତାହା ତୁରନ୍ତ ଦୂର କରିବା ପାଇଁ ସେମାନଙ୍କର ମୁଖ୍ୟ ଅଧିକାରୀମାନେ ସେଗୁଡ଼ିକୁ ଘୋଷଣା କରିନାହାନ୍ତି । କେତେକ ଜାତିଙ୍କ ନାମ କେବଳ ଲେଖି ଦେଇଛନ୍ତି । ସେମାନେହେଲେ ଅଙ୍ଗ୍ଲୋ ଇଣ୍ଡିଆନ ଓ ଦଳିତ ଜାତି । ଏଣୁ ମୋର ଏହି ସଂଶୋଧନ କେବଳ ଦଳିତ ଜାତିଙ୍କ ପାଇଁ ନୁହେଁ, ବରଂ ସମ୍ରାଟଙ୍କର ସମସ୍ତ ପ୍ରଜା ତଥା ସବୁ ଜାତିର ଲୋକଙ୍କର ହିତ ପାଇଁ ହିଁ ଉଦ୍ଦିଷ୍ଟ । ଶ୍ରୀମାନଙ୍କ, ମୋର ଖିଆଲ ହୁଏ, କୌଣସି ଦେଶର ସରକାରୀ ଚାକିରି ଉପରେ କୌଣସି ଏକ ଜାତି ବା ଶ୍ରେଣୀର ଏକାଧିପତ୍ୟ ଏକ ବଡ଼ ସାର୍ବଜନୀନ କ୍ଷତି । ଏହା ହେବାଦ୍ୱାରା ଯେଉଁ ଜାତି ବା ଶ୍ରେଣୀ ସୁଯୋଗରେ ରହିବେ ସେମାନଙ୍କ ମଧ୍ୟରେ ଅହଂକାରଭାବ ସୃଷ୍ଟି ହୋଇଯିବ ଓ ଏହାଦ୍ୱାରା ଏକ ସାର୍ବଜନୀନ ହିତକୁ କ୍ଷତି ପହଞ୍ଚାଇବ । ଏହାକୁ ଦୂର କରିବା ପାଇଁ ଯେ କୌଣସି ଜାତି ବା ଶ୍ରେଣୀ- ବିଶେଷ ସଂକ୍ଷିପ୍ତ ହୋଇ ପାରନ୍ତି । ଯାହାହେଉ ଭାରତ ପାଇଁ ଆମ୍ଭେମାନେ ଏକ ନୂତନ ସମ୍ବିଧାନ ନିର୍ମାଣ କରିବାକୁ ଯାଉଛୁଁ । ଏଣୁ ମୁଁ ଏହି ନିବେଦନ କରୁଅଛି ଯେ, ଏହାର ଅଟମ୍ଭେ ଏକ ଏପରି ଆକାରରେ କରାଯିବ ଯେଉଁଥିରେ ସମ୍ରାଟଙ୍କର ପ୍ରତ୍ୟେକ ପ୍ରଜା ବା ଲୋକକୁ ଏହାର ସୁଯୋଗ ମିଳିବ । ଏ ଦେଶର ସରକାରୀ ଚାକିରିରେ ପ୍ରତ୍ୟେକ ଲୋକ ନିଜର ଯୋଗ୍ୟତାର ପରିଚୟ ଦେଇପାରିବେ । ଯଦି ଆପଣ ମୋତେ ଅନୁମତି ଦେବେ, ତାହାହେଲେ ମୁଁ କହିବି, ଯଦି ଆପଣ ୪ର୍ଥ ଧାରାର ୧ମ ଉପଧାରା ପ୍ରତି ସମ୍ମାନ ପ୍ରଦର୍ଶନ କରନ୍ତି ତାହାହେଲେ ଆପଣ ଜାଣିବେ ଯେ ମୋର ଏହି ସଂଶୋଧନ ସେହି ସିଦ୍ଧାନ୍ତର ଯୁକ୍ତିଯୁକ୍ତ ପରି- ଣାମ । ଯଥା:—"ଏହି ଉପକୋଡର ଏହାହିଁ ମତଯେ ଭାରତରେ ନୂତନ ରାଜନୈତିକ ଢାଞ୍ଚା ଅନୁସାରେ ନିର୍ମିତ ସରକାରରେ ଭାରତୀୟଙ୍କ ସୁରକ୍ଷାର ପ୍ରତିବନ୍ଧ ବଢ଼ିଥିବା ଦାୟିତ୍ୱ କେବଳ ବ୍ରିଟିଶ ସରକାରର ନୁହେଁ ବରଂ ଭାରତବାସୀଙ୍କର ନିଜର ଦାୟିତ୍ୱ ହେବା ଦରକାର ।"

ମହାଶୟ, ଯଦି ଏହି ବାକ୍ୟରେ କିଛି ଅର୍ଥ ହୋଇପାରେ, ତେବେ ତାହା ଏହି ଯେ ଭାରତର ସୁରକ୍ଷା ପାଇଁ ଦିନକୁଦିନ ବୃଦ୍ଧି ହେଉଥିବା ଦାୟିତ୍ୱ, ଭାରତର ପ୍ରତ୍ୟେକ ନାଗରିକଙ୍କର ହେବା ଉଚିତ । କୌଣସି ଏକ ଜାତିବିଶେଷ ବା ଶ୍ରେଣୀ ବିଶେଷର ଏହା ରହିବା ଉଚିତ ନୁହେଁ । ଏଣୁ ମୋର ପ୍ରାର୍ଥନା ସଦସ୍ୟଗଣ ମୋର ଏହି ସଂଶୋଧନକୁ ସ୍ୱୀକାର କରି ନିଅନ୍ତୁ ।

——

# ଗାନ୍ଧିଜୀଙ୍କ ଅନଶନ ଧର୍ମଘଟ ଓ ଡଃ ଆମ୍ବେଦକରଙ୍କ ବିବୃତି

ଇଂଲଣ୍ଡର ଗୋଲ୍ ଟେବୁଲ ବୈଠକରେ ଗାନ୍ଧିଜୀ ଅସ୍ପୃଶ୍ୟ ଜାତିର ପ୍ରଧାନ ପ୍ରତିନିଧି ରୂପେ ଛଳନା କରିଥିଲେ । ସେମାନଙ୍କର ପ୍ରଧାନ ପ୍ରତିନିଧି ରୂପେ ସେ ଦାବୀ କରିଥିଲେ ଯେ ସେମାନେ ବୈଠକ ଦ୍ୱାରା ସ୍ୱୀକୃତି ପ୍ରାପ୍ତ ହେବାର ହକଦାର ନୁହଁନ୍ତି । ଗୋଲ୍ ଟେବୁଲ ବୈଠକ ସେମାନଙ୍କୁ ଉପେକ୍ଷା କରି ଉଚ୍ଚ ହିନ୍ଦୁ ଜାତି ଓ ସେମାନଙ୍କର କଂଗ୍ରେସର ଦୟା ଉପରେ ବନ୍ଦୀ ରହିବାକୁ ଛାଡ଼ିଦେବା ଉଚିତ୍ ବୋଲି ମତ ପୋଷଣ କରିଥିଲେ । କିନ୍ତୁ ବାବା ସାହେବ ସଫଳତାର ସହିତ ଗାନ୍ଧିଜୀଙ୍କର ଏହି ଦାବୀକୁ ବିରୋଧ କରି ସେମାନଙ୍କପାଇଁ ଅଲଗା ନିର୍ବାଚନ ମଣ୍ଡଳ (Separte Electorate) ହାସଲ କରିଥିଲେ । ଗୋଲ୍ ଟେବୁଲ ବୈଠକରେ ଡଃ. ଆମ୍ବେଦକରଙ୍କ ଯୁକ୍ତିର ଯଥାର୍ଥତା ଉପଲବ୍ଧି କରି ଗାନ୍ଧିଜୀ ବ୍ୟସ୍ତ ଓ ହତାଶ ହୋଇ ପଡ଼ିଥିଲେ । ଯେତେବେଳେ ଗାନ୍ଧିଜୀଙ୍କର ଯୁକ୍ତି ବ୍ୟର୍ଥ ହେଲା ସେତେବେଳେ ସେ ଗୁହ ପକାଇବା କୌଶଳର ଆଶ୍ରୟ ନେଲେ । ଏପରିକି ଗୋଲ୍ ଟେବୁଲ ବୈଠକ ଚାଲିଥିବା ବେଳେ, ଯଦି ଦଳିତ ଜାତିର ଦାବୀଗୁଡ଼ିକ ଗ୍ରହଣ କରାଯାଏ ତେବେ ଗାନ୍ଧିଜୀ ଅନଶନ ଧର୍ମଘଟ କରିବାକୁ ଧମକ ଦେଇଥିଲେ ।

ଯେତେବେଳେ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଘୋଷିତ Communal Award ଦ୍ୱାରା ଦଳିତ ଜାତିର ଦାବୀଗୁଡ଼ିକ ମାନି ନିଆଗଲା । ସେତେବେଳେ ଗାନ୍ଧିଜୀ ପ୍ରଧାନମନ୍ତ୍ରୀଙ୍କ ନିକଟକୁ ପତ୍ର ଲେଖିଲେ । ପ୍ରଧାନମନ୍ତ୍ରୀ ଗାନ୍ଧିଜୀଙ୍କୁ ଉତ୍ତର ମଧ୍ୟ ଦେଇଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀଙ୍କର ବିଚାର ଶକ୍ତି ସମ୍ପନ୍ନ, ସନ୍ଦେହ ଶୂନ୍ୟ ଉତ୍ତରକୁ ଗାନ୍ଧିଜୀ ଓ ତାଙ୍କ କଂଗ୍ରେସ ଉପେକ୍ଷା କରିଥିଲେ । ଉତ୍ତରକୁ ପ୍ରତ୍ୟାଖ୍ୟାନ କରି ଗାନ୍ଧିଜୀ ଆମରଣ ଅନଶନ ଧର୍ମଘଟ କରିବାର ନିର୍ଦ୍ଦିଷ୍ଟ ଦିନ ଘୋଷଣା କରିଥିଲେ ।

ଏହାଛଡ଼ା ବ୍ରିଟିଶ ସରକାର, ଗାନ୍ଧିଜୀ ଓ ତାଙ୍କର କଂଗ୍ରେସ ସହିତ ଦଳିତ ଜାତିର ନେତା ହିସାବରେ ଡଃ. ଆମ୍ବେଦକର ଏଥିରେ ପକ୍ଷ ରହିଲେ । ତେଣୁ ସେ ନିଜର ନିର୍ଦ୍ଧାରିତ ବୈଧାନିକମତ ଉପରେ ଏକ ବିବୃତି ଦେଇଥିଲେ । ଏହି ବିବୃତି ଆମ୍ଭମାନଙ୍କ ପାଇଁ ସର୍ବାପେକ୍ଷା ଉପାଦେୟ ଓ ସନ୍ଦେହ ମୋଚନ-କାରୀ । ଏହି ବିବୃତି ଦଳିତ ଜାତିର ଦାବୀକୁ ସ୍ପଷ୍ଟ କରିବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କ ଉପେକ୍ଷା କରିବାର କୌଶଳକୁ ପ୍ରକାଶ କରେ । ତେଣୁ ସମୁଦାୟ ବିବୃତିଟିକୁ ନିମ୍ନରେ ଦିଆଯାଉଅଛି ।

## ଗାନ୍ଧିଜୀଙ୍କର ଆମରଣ ଅନଶନ ଧର୍ମଘଟ ଉପରେ ବାବାସାହେବଙ୍କ ବକ୍ତବ୍ୟ ।

ଖବର କାଗଜରେ ପ୍ରକାଶିତ, ମହାତ୍ମା ଗାନ୍ଧୀ, ସାର୍ ସାମୁଏଲ୍ ହୋର, ଏବଂ ପ୍ରଧାନମନ୍ତ୍ରୀଙ୍କ ମଧ୍ୟରେ ହୋଇଥିବା ପତ୍ର ବିନିମୟକୁ ପଢ଼ି ମୁଁ ବିସ୍ମିତ ନ ହୋଇ ରହିପାରୁନାହିଁ । ଏହି ପତ୍ରାଳାପରେ ମହାତ୍ମା ଗାନ୍ଧୀ ସୂଚାଇ ଅଛନ୍ତି, "ବ୍ରିଟିଶ ସରକାର ସ୍ୱେଚ୍ଛାରେ କିମ୍ବା ଜନମତର ଚାପରେ ନିଜର ମତାମତ ବଦଳାଇ ଦଳିତ ଜାତି ପାଇଁ ଦିଆଯାଇଥିବା "କମ୍ୟୁନାଲ ଆୱାର୍ଡ" ପ୍ରତ୍ୟାହାର ନକଲା ପର୍ଯ୍ୟନ୍ତ ଆମରଣ ଅନଶନ କରିବାକୁ ଦୃଢ଼ ପ୍ରତିଜ୍ଞ । ମହାତ୍ମା ଗାନ୍ଧୀଙ୍କର ଏତାଦୃଶ ଆତ୍ମାହୁତି ପ୍ରତିଜ୍ଞାରେ ମୁଁ ଯେଉଁ ଅଶୋଭନୀୟ ପରିସ୍ଥିତିରେ ଉପନୀତ ହୋଇଛି ତାହା ସହଜରେ ଅନୁମେୟ ।

ଗୋଲ ଟେବୁଲ୍ ବୈଠକରେ ଅଳ୍ପ ଗୁରୁତ୍ୱ ଦେଇଥିବା ସାମ୍ପ୍ରଦାୟିକତା ପ୍ରଶ୍ନ ଉପରେ ସୃଷ୍ଟି ହୋଇଥିବା ସଙ୍କଟକୁ କାହିଁକି ମହାତ୍ମା ବିପନ୍ନ କରୁଛନ୍ତି ତାହା ମୋ ଧାରଣାତୀତ ହୋଇଛି । ବାସ୍ତବରେ ଗାନ୍ଧିଜୀଙ୍କର ଚିନ୍ତାଧାରକୁ ଉଦାହରେ ବ୍ୟକ୍ତ କରିବାକୁ ହେଲେ ଏହା ଭାରତୀୟ ସମ୍ବିଧାନରେ ଏକ ପ୍ରଧାନ ଅଧ୍ୟାୟ ପରିବର୍ତ୍ତେ ଏକ ପରିଶିଷ୍ଟ ହୋଇ ରହିବ । ଗୋଲ୍ ଟେବୁଲ୍ ବୈଠକରେ ଦାବୀ କରି ଆସୁଥିବା ସ୍ୱାଧୀନତା ହାସଲ ପାଇଁ ମହାତ୍ମା ଗାନ୍ଧୀ ଏହି ଚରମ ପଦକ୍ଷେପ ନେଇଥିଲେ ତାହା ଯୁକ୍ତିଯୁକ୍ତ ହୋଇଥାନ୍ତା । କିନ୍ତୁ କେବଳ ଦଳିତ ଶ୍ରେଣୀଙ୍କ ପାଇଁ କମ୍ୟୁନାଲ ଆୱାର୍ଡରେ ଦିଆଯାଇଥିବା ସ୍ୱତନ୍ତ୍ର ପ୍ରତିନିଧିତ୍ୱ ପାଇଁ ଗାନ୍ଧିଜୀ ଆତ୍ମାହୁତି ଦେବା ଏକ ଦାରୁଣ ଆଶ୍ଚର୍ଯ୍ୟ । ପୃଥକ ଭୋଟ କେବଳ ଦଳିତ ଶ୍ରେଣୀଙ୍କ ପାଇଁ ମଞ୍ଜୁର କରାଯାଇଥିଲା ତାହା ନୁହେଁ, ଏହା ମଧ୍ୟ ଭାରତୀୟ ଖ୍ରୀଷ୍ଟିୟାନ, ଆଙ୍ଗ୍ଲୋ ଇଣ୍ଡିୟାନ, ଇଉରୋପୀୟ ମୁସଲିମ୍ ଓ ଶିଖମାନଙ୍କୁ ମଧ୍ୟ ଦିଆଯାଇଥିଲା । ଜମିଦାର ଶ୍ରମିକ ଓ ବଣିକମାନଙ୍କୁ ମଧ୍ୟ ଏହା ଦିଆଯାଇଥିଲା । ମୁସଲିମ ଓ ଶିଖମାନଙ୍କୁ ଛାଡ଼ି ଅନ୍ୟ ସବୁ ଶ୍ରେଣୀର ସ୍ୱତନ୍ତ୍ର ପ୍ରତିନିଧିତ୍ୱକୁ ଗାନ୍ଧିଜୀ ବିରୋଧ କରୁଛନ୍ତି । ତା ସଙ୍ଗେ ସଙ୍ଗେ କେବଳ ଦଳିତ ଶ୍ରେଣୀଙ୍କୁ ଛାଡ଼ି ଅନ୍ୟ ସମସ୍ତେ ପୃଥକ ଭୋଟ ପାଇବାକୁ ସମର୍ଥନ କରନ୍ତି ।

ମୋ ମତରେ ଦଳିତ ଶ୍ରେଣୀଙ୍କ ପାଇଁ ପ୍ରତିନିଧିତ୍ୱ ବ୍ୟବସ୍ଥାର ଫଳାଫଳ ସମ୍ବନ୍ଧରେ ଗାନ୍ଧିଜୀ ଯେଉଁ ଭୟ କରୁଛନ୍ତି ତାହା ସମ୍ପୂର୍ଣ୍ଣ ଅବାସ୍ତବ । ମୁସଲିମ୍ ଓ ଶିଖମାନଙ୍କ ପୃଥକ ଭୋଟ ଦେବାରେ ଯଦି ଦେଶ ବିଭାଜନ ହେଉନାହିଁ ତାହା-

ହେଲେ ଦଳିତ ଶ୍ରେଣୀ ବ୍ୟତୀତ ଅନ୍ୟ ଶ୍ରେଣୀ ଓ ସମ୍ପ୍ରଦାୟଙ୍କ ପାଇଁ ପୃଥକ ଭୋଟ ବ୍ୟବସ୍ଥା ଦ୍ୱାରା ଦେଶ ବିଭାଜନ ହେଉଛି କି ନାହିଁ ତାହା ତାଙ୍କ ଚିନ୍ତାଧାରାରେ ସ୍ଥାନ ପାଇନାହିଁ ।

ମୁଁ ନିଶ୍ଚିତ ଯେ ଅଧିକାଂଶ ଅନୁଭବ କରିବେ, ଯଦି କୌଣସି ଶ୍ରେଣୀ, ସଂଖ୍ୟା ଗରିଷ୍ଠ ଶ୍ରେଣୀ ଦ୍ୱାରା ହେଉଥିବା ଅତ୍ୟାଚାର କବଳରୁ ନିଜକୁ ରକ୍ଷା କରିବା ପାଇଁ ସ୍ୱତନ୍ତ୍ର ରାଜନୈତିକ ଅଧିକାର ଦାବୀ କରୁଥାଏ, ତାହା ହେଉଛି ଏହି ଦଳିତ ଶ୍ରେଣୀ । ନିସନ୍ଦେହରେ କୁହାଯାଇ ପାରେ, ଏହା ହେଉଛି ଏପରି ଏକ ଶ୍ରେଣୀ, ଯେ କି ନିଜର ସ୍ଥିତି ପାଇଁ ସଂଗ୍ରାମ କରିବା ଅବସ୍ଥାରେ ନାହିଁ । ଯେଉଁ ଧର୍ମରେ ସେମାନେ ବାନ୍ଧି ହୋଇଛନ୍ତି ତାହା ସେମାନଙ୍କ ପାଇଁ ସମ୍ମାନପ୍ରଦ ସ୍ଥାନ ରଖିବା ପରିବର୍ତ୍ତେ ସାଧାରଣ ଦହବାଦ କରିବାକୁ, ଅସମର୍ଥ କୁଷ୍ଠରୋଗୀ ଭଳି ବ୍ୟବହାର କରୁଛି । ଅର୍ଥନୈତିକ ଦୃଷ୍ଟିରୁ ଏହି ଜାତି ନିଜର ଭରଣ ପୋଷଣ ପାଇଁ ସବୁବେଳେ ଉଚ୍ଚ ଜାତିର ହିନ୍ଦୁମାନଙ୍କ ଉପରେ ନିର୍ଭର କରନ୍ତି । ନିଜ ଜୀବିକା ନିର୍ବାହର କୌଣସି ପନ୍ଥା ଏହି ଜାତି ନିକଟରେ ଉନ୍ମୁକ୍ତ ନୁହେଁ । ହିନ୍ଦୁ ସମାଜର ପକ୍ଷପାତ ନୀତି ଦ୍ୱାରା ଯେ, ସବୁ ପଥ ରୁଦ୍ଧ ତାହା ନୁହେଁ, ନିର୍ଦ୍ଦିଷ୍ଟ ଭାବେ ଏହି ଜାତିର ଉତ୍ଥାନ ପାଇଁ ସବୁଦ୍ୱାର ରୁଦ୍ଧ କରିଦେବାର ଚେଷ୍ଟା ଚାଲିଛି । ବାସ୍ତବରେ ଏହା ଅତ୍ୟୁକ୍ତି ନୁହେଁ ଯେ ପ୍ରତ୍ୟେକ ଗ୍ରାମରେ ହିନ୍ଦୁମାନଙ୍କ, ନିଜ ମଧ୍ୟରେ ଯେତେ ବିଭେଦ ଥାଉନା କାହିଁକି ସଂଖ୍ୟାଲଘୁ ଦଳିତ ଶ୍ରେଣୀକୁ ନିର୍ଦ୍ଦୟଭାବେ ଦମନ କରିବା ପାଇଁ ମିଳିତ ଭାବେ ଷଡ଼ଯନ୍ତ୍ର କରିଥାନ୍ତି ।

ଏହି ଦୃଷ୍ଟିରୁ ଯେକୌଣସି ନିରପେକ୍ଷ ଲୋକ ବିଚାର କରିବ ଯେ ଏଭଳି ପଙ୍ଗୁ ସମ୍ପ୍ରଦାୟ ପ୍ରତି କରାଯାଉଥିବା ସଗଠିତ ଅତ୍ୟାଚାରର ବିରୁଦ୍ଧରେ ଛିଡ଼ା ହେବାକୁ ଓ ଜୀବନ ସଂଗ୍ରାମରେ କୃତକାର୍ଯ୍ୟ ହେବାକୁ ରାଜନୈତିକ କ୍ଷମତା ଏକାନ୍ତ ଆବଶ୍ୟକ, ଯଦ୍ୱାରା ଏହାର ବଳରେ ଅନ୍ତତଃ ନିଜକୁ ସୁରକ୍ଷା କରିପାରିବେ ।

ମୁଁ ଭାବୁଛି, ଯିଏ ଦଳିତ ଶ୍ରେଣୀର ଜଣେ ଶୁଭାକାଂକ୍ଷୀ, ନୂତନ ସମ୍ବିଧାନରେ ସେମାନଙ୍କ ପାଇଁ ଯେତେଦୂର ସମ୍ଭବ ରାଜନୈତିକ କ୍ଷମତା ହାସଲ କରିବାକୁ ଜୀବନ ମରଣ ସଂଗ୍ରାମ କରିଥାନ୍ତେ । କିନ୍ତୁ ମହାତ୍ମାଙ୍କର ଚିନ୍ତାଧାରା ଅଦ୍ଭୁତ ଏବଂ ମୋର ଧାରଣାତୀତ । ସେ ଦଳିତ ଶ୍ରେଣୀଙ୍କ କମ୍ୟୁନାଲ ଆୱାର୍ଡ଼ରେ ପାଇଥିବା ସାମାନ୍ୟ ସ୍ୱଳ୍ପ ରାଜନୈତିକ କ୍ଷମତାକୁ ବଢ଼ାଇବାକୁ ଚେଷ୍ଟା କରୁନାହାନ୍ତି, ଅପର ପକ୍ଷରେ ସେମାନଙ୍କୁ ସେହି ସ୍ୱଳ୍ପ କ୍ଷମତାରୁ ବଞ୍ଚିତ କରିବା ପାଇଁ ନିଜ ଜୀବନକୁ

ବିପନ୍ନ କରିଛନ୍ତି । ଦଳିତ ଶ୍ରେଣୀଙ୍କୁ ରାଜନୈତିକ ଦୃଷ୍ଟିରୁ ହଟାଇ ଦେବାକୁ ଏହା ତାଙ୍କର ପ୍ରଥମ ଚେଷ୍ଟା ନୁହେଁ । ବହୁ ପୂର୍ବରୁ ସଙ୍ଖ୍ୟାଲଘୁ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ମହାତ୍ମାଗାନ୍ଧୀ, ମୁସଲିମ ଓ କଂଗ୍ରେସ ସହିତ ଏକ ବୁଝାମଣା କରିବାକୁ ଚେଷ୍ଟା କରିଥିଲେ । ମୁସଲିମ ଲିଗ୍ ତାଙ୍କ ତରଫରୁ ଯେଉଁ ୧୪ଟି ଦାବି କରିଥିଲେ, ମହାତ୍ମାଗାନ୍ଧୀ ତାହା ମାନି ନେଇଥିଲେ ଏବଂ ତା ବଦଳରେ ମୁଁ ଦାବି କରୁଥିବା ଦଳିତ ଶ୍ରେଣୀଙ୍କ ପାଇଁ ସାମାଜିକ ପ୍ରତିନିଧିତ୍ୱକୁ ବିରୋଧ କରିବାକୁ ସେମାନଙ୍କୁ ପ୍ରବର୍ତ୍ତାଇ ଥିଲେ । ଏହା ମୁସଲିମ ପ୍ରତିନିଧିମାନଙ୍କର କୃତିତ୍ୱ ଯେ ସେମାନେ ଏହି କଳା ଆଇନ ସପକ୍ଷରେ ଏକମତ ହେବାକୁ ମନା କଲେ ଏବଂ ମହାତ୍ମାଗାନ୍ଧୀ ଓ ମୁସଲିମମାନଙ୍କ ମିଳିତ ବିରୋଧ ଜନିତ ବିପର୍ଯ୍ୟୟରୁ ଦଳିତ ଶ୍ରେଣୀଙ୍କୁ ରକ୍ଷା କଲେ ।

କମ୍ୟୁନାଲ ଆୱାର୍ଡ ପ୍ରତି ଗାନ୍ଧିଜୀଙ୍କର ବୈରି ମନୋଭାବର କାରଣ ମୁଁ ବୁଝିପାରୁନାହିଁ । ସେ କୁହନ୍ତି ଯେ କମ୍ୟୁନାଲ ଆୱାର୍ଡ ଦଳିତ ଶ୍ରେଣୀଙ୍କୁ ହିନ୍ଦୁ ସମ୍ପ୍ରଦାୟରୁ ଅଲଗା କରିଦେବ । ଅପର ପକ୍ଷରେ ଡ଼ଃ ମୁଞ୍ଜେ, ଯେ କି ଜଣେ ଶକ୍ତିଶାଳୀ ହିନ୍ଦୁ ସମର୍ଥକ ଓ ହିନ୍ଦୁମାନଙ୍କର ଏକ ଉଗ୍ର ପୁରୋଧା, ସେ ଏଥିରେ ସମ୍ପୂର୍ଣ୍ଣ ଭିନ୍ନ ମତ ପ୍ରକାଶ କରନ୍ତି । ଲଣ୍ଡନରୁ ଫେରିବା ପରେ ସେ ଯେଉଁ ଭାଷଣ ଦେଇଛନ୍ତି ଡ଼ଃ ମୁଞ୍ଜେ କହିଛନ୍ତି ଯେ କମ୍ୟୁନାଲ ଆୱାର୍ଡ ହିନ୍ଦୁ ଓ ଦଳିତ-ଶ୍ରେଣୀ ମଧ୍ୟରେ କୌଣସି ପୃଥକ ଭାବ ସୃଷ୍ଟି କରୁନାହିଁ । ବାସ୍ତବରେ ସେ ଗର୍ବ କରୁଥିଲେ ଯେ ସେ ମୋଟେ ଦଳିତ ଶ୍ରେଣୀଙ୍କୁ ହିନ୍ଦୁମାନଙ୍କଠାରୁ ରାଜନୈତିକ ପୃଥକୀକରଣ ଅପଚେଷ୍ଟାରୁ ପରାସ୍ତ କରିଛନ୍ତି । କମ୍ୟୁନାଲ ଆୱାର୍ଡ ପାଇଁ ଡ଼ଃ ମୁଞ୍ଜେଙ୍କର କୃତିତ୍ୱ ସମ୍ବନ୍ଧରେ ମୁଁ ନିଶ୍ଚିତ ନହେଲେ ମଧ୍ୟ ତାଙ୍କର 'କମ୍ୟୁନାଲ ଆୱାର୍ଡ' ସମ୍ବନ୍ଧରେ ବ୍ୟାଖ୍ୟା ନିଶ୍ଚିତଭାବେ ଠିକ୍ । ଏଣୁ ଏହା ଆଶ୍ଚର୍ଯ୍ୟ ଯେ ମହାତ୍ମା ଗାନ୍ଧୀଙ୍କ ଭଳି ଜଣେ ଜାତୀୟତାବାଦୀ ଯେ କି ଅନ୍ତତଃପକ୍ଷେ ଜଣେ ସାମ୍ପ୍ରଦାୟିକବାଦୀ ନୁହଁନ୍ତି, ସେ କମ୍ୟୁନାଲ ଆୱାର୍ଡ ସପକ୍ଷରେ ଭାବିବା ଉଚିତ୍ ଯେ ଏହା କେତେଦୂର ଦଳିତ ଶ୍ରେଣୀଙ୍କ ପାଇଁ ପ୍ରଯୁଜ୍ୟ । ଏ ଦୃଷ୍ଟିଭଙ୍ଗୀ ଡ଼ଃ ମୁଞ୍ଜେଙ୍କ ପରି ଜଣେ ସାମ୍ପ୍ରଦାୟିକ ବାଦୀଙ୍କ ଠାରୁ ଉନ୍ନତ ହେବା ଉଚିତ୍ । ଯଦି ଡ଼ଃ ମୁଞ୍ଜେ କମ୍ୟୁନାଲ ଆୱାର୍ଡ ଦ୍ୱାରା ଦଳିତ ଶ୍ରେଣୀ ହିନ୍ଦୁଙ୍କଠାରୁ ପୃଥକ ହେବାର ଜାଣି ନପାରିଲେ, ମହାତ୍ମା ଏଥିରେ ସମ୍ପୂର୍ଣ୍ଣ ଅସନ୍ତୋଷ ପ୍ରକାଶ କରିବା କଥା ।

ମୋ ମତରେ କମ୍ୟୁନାଲ ଆୱାର୍ଡ କେବଳ ଯେ ହିନ୍ଦୁମାନଙ୍କୁ ସନ୍ତୁଷ୍ଟ କରିବ ତାହା ନୁହେଁ, ଏହା ମଧ୍ୟ ଯୁଗ୍ମ ଭୋଟର ପକ୍ଷପାତୀ, ଦଳିତ ଶ୍ରେଣୀର ବ୍ୟକ୍ତି-ବିଶେଷ ଯଥା ରାୟ ବାହାଦୂର ରଜା, ଶ୍ରୀଯୁକ୍ତ ବାଲୁ, କିମ୍ବା ଶ୍ରୀଯୁକ୍ତ ଗାୱାଇଙ୍କୁ

ମଧ୍ୟ ସନ୍ତୁଷ୍ଟ କରିବ । ବିଧାୟକ ରଜା ବାହାଦୁରଙ୍କର ସୂଚନା ମୋତେ ଅତ୍ୟଧିକ ଆନନ୍ଦିତ କରିଥିଲା । ପୃଥକ ଭୋଟର ସେ ଜଣେ ଦୃଢ଼ ସମର୍ଥକ ଓ ହିନ୍ଦୁମାନଙ୍କର ଯଥେଚ୍ଛାଚାରର ଜଣେ ଉଗ୍ର ସମାଲୋଚକ । ବର୍ତ୍ତମାନ ଯୁଗ୍ମ ଭୋଟ ପ୍ରଥା ଓ ହିନ୍ଦୁମାନଙ୍କ ପ୍ରତି ଅନୁରକ୍ତ ପୂର୍ଣ୍ଣ ଆସ୍ଥା ପ୍ରକାଶ କରୁଅଛନ୍ତି । ତାଙ୍କୁ ଗୋଲଟେବୁଲ ବୈଠକକୁ ଡ଼କାଯାଇନଥିଲା । ସେ କେତେଦୂର ସ୍ୱଇଚ୍ଛାରେ ବିସ୍ମୃତିଗର୍ଭରୁ ଫେରି ଆସିଲେ ଏବଂ କେତେଦୂର ତାଙ୍କର ବିଶ୍ୱାସ ପରିବର୍ତ୍ତନ କଲେ ତାହା ମୁଁ ଆଲୋଚନା କରିବାକୁ ଇଚ୍ଛା କରୁନାହିଁ ।

ଶ୍ରୀଯୁକ୍ତ ରଜା କମ୍ୟୁନାଲ ଆଓ୍ୱାର୍ଡ ଉପରେ ମୁଖ୍ୟତଃ ଯେଉଁ ଦୁଇଟି କାରଣ ଉପରେ ସମାଲୋଚନା କରନ୍ତି ତାହାହେଲେ (୧) ଦଳିତ ଶ୍ରେଣୀମାନେ ସେମାନଙ୍କ ସଂଖ୍ୟା ଅନୁପାତରେ ଯେତିକି ସ୍ଥାନ ପାଇବାର କଥା ତାଠାରୁ କମ ସଂଖ୍ୟକ ସ୍ଥାନ ପାଇଲେ ଏବଂ (୨) ଦଳିତ ଶ୍ରେଣୀ ହିନ୍ଦୁମାନଙ୍କ ଠାରୁ ଅଲଗା ହୋଇଗଲେ ।

ମୁଁ ପ୍ରଥମଟିରେ ତାଙ୍କ ସହ ଏକମତ । କିନ୍ତୁ ଯେତେବେଳେ ରାୟବାହାଦୁର କହନ୍ତି ଯେ ଗୋଲ ଟେବୁଲ ବୈଠକରେ ଯେଉଁମାନେ ଦଳିତ ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲେ ସେମାନେ ଅନ୍ୟ ପ୍ରତିନିଧିମାନଙ୍କୁ ସେମାନଙ୍କର ଅଧିକାର ବିକ୍ରୀ କରି ଦେଇ ଆସିଲେ । ମୁଁ ଏହା କହିବାକୁ ବାଧ୍ୟ ଯେ ଭାରତର କେନ୍ଦ୍ରୀୟ କମିଟି ସଦସ୍ୟ ହିସାବରେ ରଜା କଣ କରିଛନ୍ତି ? ସେହି କମିଟି ରିପୋର୍ଟରେ ମାନ୍ଦ୍ରାଜର ୧୫୦ଟି ଆସନରୁ ୧୦ଟି ଆସନ ଦଳିତ ଶ୍ରେଣୀ ପାଇଥିଲେ, ବମ୍ବେରେ ୧୪ଟି ଆସନରୁ ୮ଟି ଆସନ, ବଙ୍ଗରେ ୨୦୦ଟିରୁ ୮, ଉତ୍ତର ପ୍ରଦେଶରେ ୧୮୧ଟିରୁ ୮ଟି, ପଞ୍ଜାବରେ ୧୫୦ଟିରୁ ୬ଟି, ବିହାର ଓ ଓଡ଼ିଶାରେ ୧୫୦ଟିରୁ ୬ଟି କେନ୍ଦ୍ର ପ୍ରଦେଶରେ ୧୨୫ଟିରୁ ୮ଟି ଏବଂ ଆସାମରେ ୭୫ଟିରୁ ୯ଟି ଦଳିତ ଓ ଗରିବ ଶ୍ରେଣୀଙ୍କୁ ମିଳିଥିଲା । ଏଥିରେ ଲୋକ ସଂଖ୍ୟାର ଅନୁପାତ ଦର୍ଶାଇ ମୁଁ ବିବୃତିଟିକୁ ଦୀର୍ଘ କରିବାକୁ ଇଚ୍ଛା କରୁନାହିଁ । କିନ୍ତୁ ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ ଦଳିତ ଶ୍ରେଣୀଙ୍କ ପ୍ରତିନିଧିତ୍ୱ ପ୍ରତି ଅବମାନନା ଓ ଅବହେଳା ଏହି ଆସନ ବଣ୍ଟନରେ ଶ୍ରୀଯୁକ୍ତ ରଜା ବାହାଦୁର ଜଣେ ପକ୍ଷ ଥିଲେ । କମ୍ୟୁନାଲ ଆଓ୍ୱାର୍ଡ ଏବଂ ଅନ୍ୟମାନଙ୍କୁ ସମାଲୋଚନା କରିବା ପୂର୍ବରୁ ଶ୍ରୀଯୁକ୍ତ ରଜା ବାହାଦୁର ନିଜେ ଭାରତୀୟ କେନ୍ଦ୍ରୀୟ କମିଟିରେ ଦଳିତ ଶ୍ରେଣୀଙ୍କ ପ୍ରତିନିଧି ହିସାବରେ ବିନା ପ୍ରତିବାଦରେ ଯାହା ଗ୍ରହଣ କରି ନେଇଥିଲେ ତାହା ମନେ ପକାଇବା ଉଚିତ୍ । ଯଦି ତାଙ୍କ ମତରେ ଜନସଂଖ୍ୟା ଅନୁପାତରେ ପ୍ରତିନିଧିତ୍ୱ ଦଳିତ ଶ୍ରେଣୀର ନ୍ୟାର୍ଯ୍ୟ ଅଧିକାର ଏବଂ ସେମାନଙ୍କର ସୁରକ୍ଷା ପାଇଁ ଏହାକୁ ପୂର୍ଣ୍ଣରୂପେ ହାସଲ କରିବା,

ଆବଶ୍ୟକ ତେବେ ସେ କେନ୍ଦ୍ରୀୟ କମିଟିକୁ ଏହା ବାଧ ନ କଲେ କାହିଁକି ? ସେତେବେଳେ ସେ ଦାବୀ କରିବାର, ଏହି ସୁଯୋଗ ପାଇଥିଲେ ।

କମ୍ୟୁନାଲ ଆୱାର୍ଡରେ ଦଳିତ ଶ୍ରେଣୀ ଓ ହିନ୍ଦୁ ଜାତି ପୃଥକ ହୋଇ ଯାଇଛନ୍ତି । ଏହି ମତ ଉପରେ ମୁଁ ରାଜି ନୁହେଁ । ଯଦି ଶ୍ରୀଯୁକ୍ତ ରାଜା ବାହାଦୁର-ଙ୍କର ପୃଥକ ଭୋଟରେ କୌଣସି ସଚେତନଶୀଳ ଆପତ୍ତି ଥାଏ, ତେବେ ପୃଥକ ଭୋଟରେ ପ୍ରାର୍ଥୀ ହେବାପାଇଁ ତାଙ୍କୁ ବାଧ କରାଯାଇ ନାହିଁ । ସାଧାରଣ ଭୋଟରେ ପ୍ରାର୍ଥୀ ହେବାକୁ ଏବଂ ଭୋଟ ନେବାକୁ ରାଜ୍ୟରେ ଅଧିକାର ରହିଛି । ରାଜା ବାହାଦୁର ଏହା ମୁକ୍ତ ଭାବରେ ଉପଭୋଗ କରିପାରନ୍ତି । ରାଜାସାହେବ ଉଚ୍ଚ ସ୍ୱରରେ କହୁଛନ୍ତି ଯେ ହିନ୍ଦୁ ଜାତିର ହୃଦୟରେ ସଂପୂର୍ଣ୍ଣ ପରିବର୍ତ୍ତନ ଆସିଛି । ସାଧାରଣ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ତାଙ୍କ କଥାରେ ବିଶ୍ୱାସ କରୁ ନଥିବା ଦଳିତ ଶ୍ରେଣୀଙ୍କୁ ବୁଝାଇ ଦେବାକୁ ଇଚ୍ଛା ପ୍ରକାଶ କରନ୍ତୁ । ଯେଉଁ ହିନ୍ଦୁମାନେ ଦଳିତ ଶ୍ରେଣୀ ପାଇଁ ସେମାନଙ୍କର ଅକୁଣ୍ଠିତ ଅନୁରକ୍ତି ପ୍ରକାଶ କରୁଛନ୍ତି ସେମାନେ ଶ୍ରୀଯୁକ୍ତ ରାଜାଙ୍କୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ କରି ସେମାନଙ୍କ ବିଶ୍ୱାସର ବାସ୍ତବ ପ୍ରମାଣର ସୁଯୋଗ ଉପଭୋଗ କରନ୍ତୁ ।

ଅତଏବ ମୋ ମତରେ କମ୍ୟୁନାଲ ଆୱାର୍ଡ ପୃଥକ ଭୋଟ ଇଚ୍ଛା କରୁଥିବା ଓ ଯୁଗ୍ମ ଭୋଟ ଇଚ୍ଛା କରୁଥିବା ଉଭୟ ପକ୍ଷକୁ ସନ୍ତୁଷ୍ଟ କରେ । ଏହା ଏହି ଅର୍ଥରେ ଏକ ସମାଧାନ ଏବଂ ଏହାକୁ ଗ୍ରହଣ କରାଯିବା ଉଚିତ । ମହାତ୍ମା ଗାନ୍ଧୀ ଯେ କ'ଣ ଚାହାଁନ୍ତି ତାହା ମୁଁ ଜାଣେ ନାହିଁ । ଏହା ମନେରଖିବାକୁ ହେବ ଯେ ଯଦିଓ ମହାତ୍ମା ଗାନ୍ଧୀ ପୃଥକ ଭୋଟକୁ ବିରୋଧ କରନ୍ତି ମାତ୍ର ଯୁଗ୍ମ ଭୋଟ ଓ ସଂରକ୍ଷିତ ଆସନକୁ ବିରୋଧ କରନ୍ତି ନାହିଁ । ଏହା ଏକ ବଡ଼ ଭୁଲ । ତାଙ୍କର ବର୍ତ୍ତମାନ ମତ ଯାହା ହେଉନା କାହିଁକି, ସେ ଲଣ୍ଡନରେ ଥିବାବେଳେ ଦଳିତ ଜାତିର ଏକମାତ୍ର ଭୋଟ ପୃଥକ ଭୋଟଦ୍ୱାରା ଦଳିତ ଶ୍ରେଣୀଙ୍କ ସ୍ୱତନ୍ତ୍ର ପ୍ରତିନିଧିତ୍ୱକୁ ବିରୋଧ କରୁଥିଲେ । ପ୍ରାପ୍ତ ବୟସ୍କମାନଙ୍କର ଭୋଟଦେବା ଅଧିକାର ଭିତ୍ତିରେ ସାଧାରଣ ଭୋଟରେ ଭୋଟ ଦେବା ବ୍ୟତୀତ ସେ ଦଳିତ ଶ୍ରେଣୀମାନଙ୍କର ରାଜ୍ୟ ବିଧାନସଭାରେ ପ୍ରତିନିଧିତ୍ୱକୁ ସୁରକ୍ଷିତ କରିବାକୁ କୌଣସି ପଦକ୍ଷେପ ନେବାକୁ ରାଜି ନଥିଲେ । ପ୍ରଥମରୁ ହିଁ ସେ ଏହି ମନୋଭାବର ବଶବର୍ତ୍ତୀ ନଥିଲେ । ଗୋଲ୍‌ଟେବୁଲ୍ ବୈଠକର ଶେଷ ଅଡ଼କୁ ସେ ମୋତେ ଏକ ପରିକଳ୍ପନାର ବ୍ୟବସ୍ଥା ସମ୍ବନ୍ଧରେ ପ୍ରସ୍ତାବ ଦେଇଥିଲେ । ସେ କହିଥିଲେ ତାହାର ଉପରେ ସେ ବିଚାର କରିବାକୁ ପ୍ରସ୍ତୁତ ଅଛନ୍ତି । ମାତ୍ର ସେ ପରିକଳ୍ପନା, ସଂପୂର୍ଣ୍ଣ ରୂପେ ଲୋକାକର୍ଷକ ମାତ୍ର । ତା' ପଛରେ କୌଣସି ସାମ୍ବିଧାନିକ ନ୍ୟାୟ ନଥିଲା କିମ୍ବା ନିର୍ବାଚନ ନିୟମରେ କୌଣସି ଗୋଟିଏ ହେଲେ ସ୍ଥାନର ସଂରକ୍ଷଣ ବ୍ୟବସ୍ଥା ନଥିଲା ।

ପରିକଳ୍ପନାଟି ନିମ୍ନରେ ପ୍ରଦତ୍ତ ହେଲା ।

ଦଳିତ ଶ୍ରେଣୀର ପ୍ରାର୍ଥୀମାନେ ସାଧାରଣ ନିର୍ବାଚନରେ ହିନ୍ଦୁ ଜାତିର ପ୍ରାର୍ଥୀଙ୍କ ସହ ପ୍ରତିଦ୍ୱନ୍ଦିତା କରିପାରିବେ । ଯଦି କୌଣସି ଦଳିତ ଶ୍ରେଣୀର ପ୍ରାର୍ଥୀ ପ୍ରତିଦ୍ୱନ୍ଦିତାରେ ହାରିଯାଆନ୍ତି, ତାହାହେଲେ ସେ ଗୋଟିଏ ନିର୍ବାଚନ ଅଭିଯୋଗ ଉପସ୍ଥାପନ କରିବେ ଓ ଅନୁମତି ଲାଭ କରିବେ ଯେ ସେ ତାଙ୍କର ଅସ୍ପୃଶ୍ୟତା ଯୋଗୁ ପରାଜୟ ହୋଇଛନ୍ତି । ଏହା ପ୍ରମାଣିତ ହୋଇ ପାରିଲେ ମହାତ୍ମାଙ୍କ କଥା ଅନୁଯାୟୀ କୌଣସି ହିନ୍ଦୁ ସଭ୍ୟଙ୍କୁ ଇସ୍ତଫା ଦେବାକୁ କୁହାଯିବ ତାହାପରେ ଆଉଥରେ ନିର୍ବାଚନ ହେବ ଓ ଦଳିତ ଶ୍ରେଣୀର ପାର୍ଥୀ ପୁଣି ଥରେ ହିନ୍ଦୁ ପାର୍ଥୀଙ୍କ ବିରୁଦ୍ଧରେ ତାର ଭାଗ୍ୟ ପରୀକ୍ଷା କରିବ । ପୁଣି ଥରେ ସେ ଯଦି ପରାସ୍ତ ହୁଏ ପୁଣି ତାକୁ ସେହି ପ୍ରଥା ଗ୍ରହଣ କରିବାକୁ ପଡ଼ିବ । ଯେହେତୁ କେତେକ ଲୋକ ଅନୁଭବ କରନ୍ତି ଯେ ମହାତ୍ମାଗାନ୍ଧୀ ଯୁଗ୍ମ ନିର୍ବାଚନ ଓ ସ୍ଥାନ ସଂରକ୍ଷଣରେ ସନ୍ତୁଷ୍ଟ ଅଛନ୍ତି, ସେଥିପାଇଁ ମୁଁ ଏହି ଘଟଣାଟିକୁ ପ୍ରକାଶ କରିବାକୁ ବାଧ୍ୟ ହେଲି । ଏହା ସୂଚାଇ ଦିଏ ଯେ କାହିଁକି ମୁଁ ଯୋର ଦେଇ କହୁଥିଲି, ମହାତ୍ମାଗାନ୍ଧୀଙ୍କ ପ୍ରକୃତ ଉଦ୍ଦେଶ୍ୟ ଜଣା ନଗଲେ ଏ ପ୍ରଶ୍ନ ଉପରେ ଆଲୋଚନା କରିବାର କୌଣସି ଲାଭ ହେବ ନାହିଁ ।

ମୁଁ ମଧ୍ୟ ଏହା ସୂଚାଇ ଦେଉଛି ମହାତ୍ମା ଓ ତାଙ୍କର କଂଗ୍ରେସ ଯେଉଁ ଆଶ୍ୱାସନା ଦେଉଛନ୍ତି "ଆବଶ୍ୟକ ଅନୁଯାୟୀ ସଠିକ କାର୍ଯ୍ୟ ପନ୍ଥା ଗ୍ରହଣ କରାଯିବ" ଏହା ମୁଁ ଗ୍ରହଣ କରିପାରିବି ନାହିଁ । ମୋର ଲୋକମାନଙ୍କର ସୁରକ୍ଷା ଭଳି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନକୁ ମୁଁ କେବଳ ନେତାଗିରି ଓ ଭୁଲ୍ ଧାରଣା ଉପରେ ଛାଡ଼ି ଦେଇ ପାରିବି ନାହିଁ । ମହାତ୍ମାଗାନ୍ଧୀ ଅମର ନୁହଁନ୍ତି । କଂଗ୍ରେସ ହିଂସା-ରହିତ ନ ହେଲେ ମଧ୍ୟ ଏହାର ସ୍ଥିତି ସ୍ଥାୟୀ ନୁହେଁ । ଭାରତରେ ଅନେକ ମହାତ୍ମା ଆସିଛନ୍ତି ଯେଉଁମାନେ ଅସ୍ପୃଶ୍ୟତା ଦୂର କରିବା ପାଇଁ ଓ ଦଳିତ ଶ୍ରେଣୀଙ୍କୁ ଉଚ୍ଚସ୍ତରକୁ ନେବା ପାଇଁ ଦୃଢ଼ ପଣେକର ହୋଇଛନ୍ତି, ମାତ୍ର ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ବିଫଳ ହୋଇଛନ୍ତି । ମହାତ୍ମାମାନେ ଆସିଲେ ଓ ମହାତ୍ମାମାନେ ଚାଲିଗଲେ, ମାତ୍ର ଅସ୍ପୃଶ୍ୟମାନେ ଚିରଦିନ ପାଇଁ ଅସ୍ପୃଶ୍ୟ ହୋଇ ରହିଗଲେ ।

ମାହାଡ଼ ଓ ମାସିକରେ ଘଟିଥିବା ଦିନରେ, ଶାନ୍ତ ଓ ସଂସ୍କାରର ଗତି ଏବଂ ସଂସ୍କାରକ ମାନଙ୍କର ବିଶ୍ୱାସ ଉପରେ ମୋର ଯଥେଷ୍ଟ ଅଭିଜ୍ଞତା ଅଛି । ମୁଁ ଅଭିଜ୍ଞତାରୁ କହୁଅଛି ଯେ ସମାଜ ସଂସ୍କାରକମାନେ ଦଢ଼ସନ୍ଧୀ ମୁହୂର୍ତ୍ତରେ ନିଜର ଆତ୍ମୀୟ ସ୍ୱଜନମାନଙ୍କୁ ଆଘାତ ଦେବା ପରିବର୍ତ୍ତେ ନିଜର ମତକୁ ଜଳାଞ୍ଜଳି

ଦେବାକୁ ପସନ୍ଦ କରନ୍ତି । ତେଣୁ ସେମାନେ ଦଳିତ ଶ୍ରେଣୀର କୌଣସି କାର୍ଯ୍ୟରେ ଯଦି ସେମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତି ସମାଜ ସଂସ୍କାରକଙ୍କ ସହ ଏକମତ ହୋଇପାରନ୍ତି ମାତ୍ର କାର୍ଯ୍ୟରେ କୌଣସିମତେ ଅଗ୍ରସର ହେବେ ନାହିଁ ।

ତେଣୁ ମୁଁ ମୋର ଲୋକମାନଙ୍କ ସୁରକ୍ଷା ପାଇଁ ବୈଧାନିକ ଅଧିକାର ଯୁକ୍ତ ଦାବୀ ଗୁଡ଼ିକୁ ଉପସ୍ଥାପନ କରିବାକୁ ବାଧ୍ୟ । ଯଦି ଗାନ୍ଧୀ କମ୍ୟୁନାଲ ଆୱାର୍ଡର ପରିବର୍ତ୍ତନ ଚାହାନ୍ତି ତାହାହେଲେ ସେ ତାଙ୍କର ପ୍ରସ୍ତାବ ଦିଅନ୍ତୁ । ପ୍ରମାଣ କରନ୍ତୁ ଯେ ସେମାନେ ଅମ୍ଭମାନଙ୍କୁ କମ୍ୟୁନାଲ ଆୱାର୍ଡରେ ଦିଆଯାଇଥିବା ଅଙ୍ଗୀକାର ଠାରୁ ଉନ୍ନତ ବା ଅଧିକ ସୁବିଧା ସୁଯୋଗର ସ୍ୱୀକାରୋକ୍ତି ଦେଉଛନ୍ତି ।

ମୁଁ ଆଶା କରୁଛି ଯେ ମହାତ୍ମାଗାନ୍ଧୀ ଯେଉଁ ଚରମ ପଦକ୍ଷେପ ନେବାକୁ ଇଚ୍ଛା କରୁଛନ୍ତି ସେଥିରୁ ସେ ନିବୃତ୍ତ ହୁଅନ୍ତୁ । ଅମ୍ଭେ ପୃଥକ ଭୋଟ ଦାବୀ କରି ହିନ୍ଦୁ ସମାଜର କୌଣସି କ୍ଷତି କରିନାହୁଁ । ହିନ୍ଦୁମାନଙ୍କ ଦ୍ୱାରା ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଭାଗ୍ୟ ନିୟନ୍ତ୍ରଣକୁ ଏଡ଼ାଇବାକୁ ଆମେ ଏହା କରୁଛୁଁ । ମହାତ୍ମା ଗାନ୍ଧୀଙ୍କ ଭଳି ଅମ୍ଭେମାନେ ମଧ୍ୟ ଅମ୍ଭମାନଙ୍କ ଅଧିକାର ଦାବୀ କରୁଛୁଁ ଏବଂ ଆଶା କରୁଛୁଁ ସେ ଆମକୁ ସେହି ଅଧିକାରରୁ ବଞ୍ଚିତ କରିବେ ନାହିଁ । ତାଙ୍କର ଆମରଣ ଅନଶନ କରିବାର ପ୍ରତିଜ୍ଞା ଏହା ଅପେକ୍ଷା ଅନ୍ୟ କୌଣସି ମହତ ଉଦ୍ଦେଶ୍ୟ ଉପରେ କରାଯାଇ ପାରିଥାନ୍ତା । ହିନ୍ଦୁ ଓ ମୁସଲମାନ ମଧ୍ୟରେ ବା ହିନ୍ଦୁ ଓ ଦଳିତ ଶ୍ରେଣୀ ମଧ୍ୟରେ ସାମ୍ପ୍ରଦାୟିକ ଦଙ୍ଗା ଅବସାନ କରିବାକୁ ବା କୌଣସି ଜାତୀୟ କାରଣରେ ମହାତ୍ମା ଏହି ଚରମ ପଦକ୍ଷେପ ନେଇଥିଲେ ମୁଁ ଏହାର ଯଥାର୍ଥତା ବୁଝିଥାନ୍ତି । ନିଶ୍ଚିତ ଭାବରେ ଗାନ୍ଧୀଜୀଙ୍କର ଏହି ଅନଶନ ଦଳିତ ମାନଙ୍କର ଭାଗ୍ୟରେ କୌଣସି ଉନ୍ନତି ଆଣିବ ନାହିଁ । ମହାତ୍ମା ଜାଣିଛନ୍ତି କି ନାହିଁ, ତାଙ୍କର ଏତାଦୃଶ କାର୍ଯ୍ୟ ଦେଶ ସାରା, ଦଳିତ ମାନଙ୍କ ପ୍ରତି, ତାଙ୍କର ସମର୍ଥକ ମାନଙ୍କର କାର୍ଯ୍ୟ ହିଂସା ବାଦରେହିଁ ପ୍ରତିଫଳିତ ହେବ ।

ଯଦି ଦଳିତ ମାନେ ହିନ୍ଦୁ ଧର୍ମ ଛାଡ଼ି ବାହାରି ଯିବାକୁ ଚାହାଁନ୍ତି ତେବେ ଏତାଦୃଶ ବଳ ପ୍ରୟୋଗ ଦ୍ୱାରା ସେମାନଙ୍କୁ ହିନ୍ଦୁ ମାନଙ୍କ ନିକଟକୁ ଅଣାଯାଇ ପାରିବ ନାହିଁ ।

ଯଦି ମହାତ୍ମା ଗାନ୍ଧୀ, ହିନ୍ଦୁ ଧର୍ମରେ ବିଶ୍ୱାସ ଓ ରାଜନୈତିକ କ୍ଷମତା, ଏ ଦୁଇଟି ମଧ୍ୟରୁ ଗୋଟିକୁ ବାଛିନେବା ପାଇଁ ଦଳିତ ଶ୍ରେଣୀକୁ ଅନୁମତି ଦିଅନ୍ତି ତେବେ ମୁଁ ନିଶ୍ଚିତ ଭାବେ କହିବି ଯେ ଦଳିତ ଶ୍ରେଣୀ ନିଃସନ୍ଦେହରେ

ରାଜନୈତିକ କ୍ଷମତା ବାଛି ନେବେ ଏବଂ ମହାତ୍ମାଙ୍କୁ ଆତ୍ମହତ୍ୟାରୁ ରକ୍ଷା କରିବେ । ଯଦି ଗାନ୍ଧୀ ଶାନ୍ତ ଭାବେ ନିଜ ଆଚରଣ ପ୍ରଦର୍ଶନ କରନ୍ତି ତାହାହେଲେ ସେ ଦେଖନ୍ତେ ତାଙ୍କର ବିଜୟର ମୂଲ୍ୟ ରହିବ କି ନାହିଁ । ଏହା ମଧ୍ୟ ଲକ୍ଷ୍ୟ କରିବା ଗୁରୁତ୍ୱ ପୂର୍ଣ୍ଣ ଯେ ମହାତ୍ମାଗାନ୍ଧୀ କେତେକ ରକ୍ଷଣଶୀଳ ଏବଂ ଅନାସ୍ଥିତ ଦଳ ସୃଷ୍ଟି କରି ଯାଇଛନ୍ତି ଏବଂ ହିନ୍ଦୁ ସମ୍ପ୍ରଦାୟ ଓ ଦଳିତ ଶ୍ରେଣୀ ମଧ୍ୟରେ ଘୃଣା ଭାବ ବଢ଼ାଇ ଅଛନ୍ତି ଏବଂ ତାହାଦ୍ୱାରା ଉଭୟଙ୍କର ମଧ୍ୟରେ ପାର୍ଥକ୍ୟ ବଢ଼ି ଯାଉଅଛି । ମୁଁ ଯେତେବେଳେ ଗୋଲ ଟେବୁଲ ବୈଠକରେ ଗାନ୍ଧୀଙ୍କୁ ବିରୋଧ କଲି ସେତେବେଳେ ମୋ ବିରୁଦ୍ଧରେ ଦେଶରେ ଗଣ୍ଡଗୋଳ ଲାଗିଲା ଏବଂ ତଥାକଥିତ ଜାତୀୟତାବାଦୀ ସମ୍ବାଦ ପତ୍ରରେ ମୋତେ ଜାତୀୟତାବାଦ ବିରୁଦ୍ଧରେ ଏକ "ପ୍ରବଞ୍ଚକ" ରୂପେ ଚିହ୍ନଟ କରାଯାଇଥିଲା । ମୋ ଠାରୁ ଆସୁଥିବା ସମସ୍ତ ପତ୍ର ଚାପି ଦିଆଯାଉଥିଲା ଏବଂ ଅତି ରଞ୍ଜିତ ସମ୍ବାଦ ପ୍ରକାଶ ଦ୍ୱାରା ମୋ ଦଳ ବିରୁଦ୍ଧରେ ସବୁ ସମ୍ମିଳନୀରେ ପ୍ରଚାର ପାଇଁ ଷଡ଼ଯନ୍ତ୍ର କରାଯାଉଥିଲା । ଦଳିତ ଶ୍ରେଣୀଙ୍କ ମର୍ଯ୍ୟାଦା ମଧ୍ୟରେ ବିଭେଦ ସୃଷ୍ଟି କରିବା ପାଇଁ ଅବାଧରେ ଟଙ୍କାର ସ୍ରୋତ (ସିଲଭର ବୁଲେଟ) ଛୁଟିଲା । କେତେକ ସ୍ଥାନରେ ମଧ୍ୟ ସଂଘର୍ଷ ଦେଖା ଦେଇଥିଲା ଯାହାର ଶେଷ ହିଂସା କାଣ୍ଡରେ ପରିଣତ ହେଲା ।

ଯଦି ମହାତ୍ମା ଗାନ୍ଧୀ ଏହି ସବୁର ଅଧିକ ପୁନରାବୃତ୍ତି ନ ଚାହାନ୍ତି ତେବେ ଈଶ୍ୱରଙ୍କ ଦୋହାଇ, ସେ ତାଙ୍କର ସିଦ୍ଧାନ୍ତର ପୁନଃବିଚାର କରନ୍ତୁ, ଏବଂ ଏ ବିଷମୟ ପରିସ୍ଥିତିକୁ ଏଡ଼ାଇ ଦିଅନ୍ତୁ । ମୁଁ ବିଶ୍ୱାସ କରୁଛି ମହାତ୍ମା ଏହା ଚାହାନ୍ତି ନାହିଁ । ଯଦି ସେ ନିବୃତ୍ତ ନହୁଅନ୍ତି ତେବେ ତାଙ୍କ ଅନିଚ୍ଛା ସତ୍ତ୍ୱେ ଦିନ ପରେ ରାତି ଆସିଲା ପରି ଏହି ପରିଣାମ ନିଶ୍ଚୟ ଘଟିବ ।

ମୋର ବିବୃତ୍ତି ସମାପ୍ତ କରିବା ପୂର୍ବରୁ ମୁଁ ଜନସାଧାରଣଙ୍କୁ ଏ ପ୍ରତିଶ୍ରୁତି ଦେଉଛି, ମୁଁ ଯଦିଓ କହୁଛି ଯେ ଏ ଘଟଣା ସମାପ୍ତ ହୋଇଯାଇଛି, ତଥାପି ମୁଁ ମହାତ୍ମାଙ୍କର ପ୍ରସ୍ତାବ ପୁନର୍ବିଚାର କରିବାକୁ ପ୍ରସ୍ତୁତ ଅଛି । ଯାହା ହେଉ ମୁଁ ଆଶା କରେ ମହାତ୍ମା ମୋତେ ତାଙ୍କର ଜୀବନ ଓ ମୋ ଲୋକମାନଙ୍କର ଅଧିକାର ଏହି ଦୁଇଟିରୁ ଗୋଟିଏ ବାଛି ନେବା ପରିସ୍ଥିତିକୁ ମୋତେ ଟାଣି ନେବେ ନାହିଁ । କାରଣ ମୁଁ ମୋ ଲୋକଙ୍କୁ ଶୃଙ୍ଖଳ ହସ୍ତରେ ପୁରୁଷ ପୁରୁଷ ଧରି ହିନ୍ଦୁ ଜାତିର ପାଦତଳେ ସମର୍ପି ଦେଇ ପାରିବ ନାହିଁ ।

—o—

# ପୁନା ପ୍ୟାକ୍ଟର ସିଂହାବଲୋକନ

(ପୁନା ପ୍ୟାକ୍ଟ ସ୍ୱାକ୍ଷରିତ ହେବାପରେ ତା୨୫ ନଭେମ୍ବର ୧୯୩୨ରେ ବମ୍ବେ ହିନ୍ଦୁ କନଫରେନ୍ସର ଉଦ୍‌ଘାଟନ ସଭାରେ ପୁନା ପ୍ୟାକ୍ଟ ଉପରେ ବାବା ସାହେବଙ୍କର ଆଲୋଚନାତ୍ମକ ବାଖ୍ୟାନ ।)

ବନ୍ଧୁଗଣ, ମୁଁ ବିଶ୍ୱାସ କରେ, ମୋର ଏହି ଭାଷଣରେ କିଛି ଅତିଶୟୋକ୍ତି ନାହିଁ । ଗତ କିଛି ଦିନ ତଳେ ଯେଉଁ ପରିମାଣରେ ମୁଁ ଧର୍ମ ସଙ୍କଟ ମଧ୍ୟରେ ଗତି କରୁଥିଲି, ସେ ପ୍ରକାର ଧର୍ମ ସଙ୍କଟ ମଧ୍ୟରେ ଅନ୍ୟ କେହି ରହି ପାରିବେ ନାହିଁ । ମୁଁ ଏକ ଅସାଧାରଣ କଠିନ ପରିସ୍ଥିତି ମଧ୍ୟରେ ଚାଲୁଥିଲି । କାରଣ ମୋତେ ଦୁଇଟି କଠିନ ରାସ୍ତା ମଧ୍ୟରୁ ଗୋଟିକୁ ବାଛିନେବା ବ୍ୟତୀତ ଅନ୍ୟ ଉପାୟ ମୋର ନଥିଲା । ସେ ଦୁଇଟି କଠିନ ସମସ୍ୟା ହେଲା, ପ୍ରଥମତଃ ମୁଁ ଭାରତର ଏକ ମହାନତମ ମନୁଷ୍ୟର ଜୀବନକୁ ବଞ୍ଚାଇବି, ଦ୍ୱିତୀୟତଃ, ଯେଉଁ ମେଉଁ ଶ୍ରେଣୀର ହିତ ତଥା ସ୍ୱାର୍ଥ ରକ୍ଷା କରିବା ପାଇଁ ମୁଁ ମୋର ସମସ୍ତ ଚେଷ୍ଟା, ଶକ୍ତି ଖଟାଇ ଗୋଲ ଟେବୁଲ ବୈଠକ ଠାରୁ ଚେଷ୍ଟା କରି ଆସୁଛି ସେମାନଙ୍କର ହିତ ବା ସ୍ୱାର୍ଥ ରକ୍ଷା କରିବି । ଏହା ଏକ ଆନନ୍ଦର କଥା ଯେ ସମସ୍ତଙ୍କର ସହଯୋଗରେ ଆମ୍ଭେମାନେ ଏପରି ଏକ ସମାଧାନର ସୂତ୍ର ବାହାର କରିବାକୁ ସମର୍ଥ ହୋଇଛୁଁ, ଯେଉଁଥିରେ ମହାତ୍ମାଗାନ୍ଧୀଙ୍କ ଜୀବନ ରକ୍ଷା ହୋଇପାରିବ ଓ ଦଳିତ ବର୍ଗଙ୍କର ହିତ ବା ସ୍ୱାର୍ଥ ଭବିଷ୍ୟତରେ କେତେକ ପରିମାଣରେ ସଂରକ୍ଷଣ ହୋଇପାରିବ । ମୁଁ, ବୁଝୁଛି ଏହି ସମସ୍ତ ଘଟଣା ମଧ୍ୟରେ ଥିବା ସମସ୍ୟାର ସମାଧାନ ପ୍ରଧାନତଃ ସ୍ୱୟଂ ମହାତ୍ମାଗାନ୍ଧୀଙ୍କ ଶ୍ରେଷ୍ଠତ୍ୱ ଉପରେ ପ୍ରତିଷ୍ଠିତ । ମୋର ଏହା ସ୍ୱୀକାର କରିବା ଉଚିତ୍, ଯେତେବେଳେ ମୁଁ ତାଙ୍କ ସହିତ ଭେଟିଲି, କଥା ବାର୍ତ୍ତାରୁ ଜାଣିପାରିଲି, ତାଙ୍କର ଓ ମୋର କଥାବାର୍ତ୍ତାର ଭାବନାରେ ଓ କଥାରେ କେତେକ କ୍ଷେତ୍ରରେ ସମତା ଅଛି । ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ।

ସାଧାରଣତଃ, ଯେତେବେଳେ କୌଣସି କଥା ତାଙ୍କ ଆଗରେ ରଖାଗଲା ଓ ସାର ତେଜ୍ ବାହାଦୁର ସାପ୍ରୁ ତାଙ୍କୁ ଏକଥା କହିଲେ, ସେ ମତବ୍ୟକ୍ତ କଲେ ଯେ ତାଙ୍କ ଆଗରେ ବଡ଼ ଆଶ୍ଚର୍ଯ୍ୟ ଜନକ ପରିସ୍ଥିତି ପହଞ୍ଚିଥିଲା । ଏହା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଯେଉଁଲୋକ ଗୋଲ ଟେବୁଲ ବୈଠକରେ କଠିନ ବିରୋଧ ବିଚାର ବ୍ୟକ୍ତ କରୁଥିଲେ, ସେହି ବ୍ୟକ୍ତି ଅନ୍ୟ ପାଖକୁ ସମର୍ଥନ

ନିକଟ ମୋର ପକ୍ଷରେ ମତବ୍ୟକ୍ତ କଲେ । ମୁଁ ମହାତ୍ମାଗାନ୍ଧୀଙ୍କ ନିକଟରେ କୃତଜ୍ଞ । କାରଣ ସେ ମୋତେ ବହୁତ କଠିନ ପରିସ୍ଥିତିରୁ ଉଦ୍ଧାର କଲେ । ମୋର କେବଳ ଏହା ଦୁଃଖ ହେଉଛି ଯେ ମହାତ୍ମାଗାନ୍ଧୀ ଗୋଲ ଟେବୁଲ ବୈଠକରେ ତାଙ୍କର ଏହି ମନୋଭାବ ବ୍ୟକ୍ତ କଲେ ନାହିଁ କାହିଁକି ? ଯଦି ସେ ମୋ ବର୍ଗର ସହିତ ସେହି ସମୟରେ ତାଙ୍କର ଏହି ଉଦାରମୂର୍ତ୍ତି ବ୍ୟବହାର ଦେଖାଇ ଥାନ୍ତେ, ତାହେଲେ ତାଙ୍କୁ ଏପରି ସଙ୍କଟରେ ପଡ଼ିବାକୁ ପଡ଼ିନଥାନ୍ତା । ଯାହା ହେଉ ଏହା ହେଉଛି ଗତ ଘଟଣାର କଥା । ମୁଁ ଆନନ୍ଦିତ ଯେ ମୁଁ ଏହି ଘଟଣା ପ୍ରତି ସମର୍ଥନ ଦେବାକୁ ଏଠାରେ ଉପସ୍ଥିତ ହୋଇଅଛି ।

ଯାହାହେଉ ସମ୍ପ୍ରଦାୟପକ୍ଷରେ ଏହି ସ୍ୱୀକାରୋକ୍ତି ପ୍ରଚାର କରିଗଲା । ସମ୍ଭବତଃ ଏହି ବୁଝାମଣା ପାଇଁ ସବୁ ଦଳିତ ଶ୍ରେଣୀଙ୍କ ଠାରୁ ସମର୍ଥନ ମିଳିଲା ନାହିଁ । ମୁଁ ଏହାକୁ ସ୍ପଷ୍ଟ କରିଦେବାକୁ ଚାହେଁ, ଯେଉଁ ପର୍ଯ୍ୟନ୍ତ ସମ୍ବନ୍ଧ ସେମାନଙ୍କ ସହିତ ଅଛି ଓ ଏହି ଦଳ ସହିତ ଯେତିକି ସମ୍ପର୍କ ମୋର ଅଛି କିମ୍ବା ଯେଉଁମାନେ ମୋ ସହିତ ଅଛନ୍ତି, ମୋର ବିଶ୍ୱାସ ହେଉଛି, ମୋର ଅନ୍ୟ ବନ୍ଧୁଗଣ ଯେ ଯେଉଁଠାରେ ଥାଆନ୍ତୁ, ମୁଁ ସେମାନଙ୍କ ତରଫରୁ ମଧ୍ୟ କହୁଛି ଯେ ଆମ୍ଭେ ସମସ୍ତେ ଏହି ବୁଝାମଣାକୁ ଅକ୍ଷରେ ଅକ୍ଷରେ ପାଳନ କରିବୁ । ଏ ବିଷୟରେ କାହାର ମନରେ କୌଣସି ସନ୍ଦେହ ରହିବା ଉଚିତ୍ ନୁହେଁ ।

ମୋର ଯଦି କୌଣସି ଚିନ୍ତା ଥାଏ, ତାହା ହେଉଛି ହିନ୍ଦୁ ସମାଜ କଣ ଏହି ନିଷ୍ପତ୍ତିକୁ ପାଳନ କରିବ ? (ସ୍ୱର ଉଠିଲା ଆମ୍ଭେ ପାଳନ କରିବୁ) କାରଣ ଏହା ଅନୁଭବ କରିବାର କଥା ଯେ ଦୁର୍ଭାଗ୍ୟକୁ ହିନ୍ଦୁ ଗୋଟିଏ ଜାତି ନୁହେଁ । ଏହା କେବଳ ଛୋଟ ଛୋଟ ନାନା ଶ୍ରେଣୀର ଗୋଟିଏ ଗୋଟିଏ ସଂଘ ଅଟେ । ମୋର ବିଶ୍ୱାସ ଓ ମୁଁ ଆଶା କରୁଛି, ହିନ୍ଦୁମାନେ ଏହାକୁ ଏକ ପବିତ୍ର ନିଷ୍ପତ୍ତି ରୂପେ ମାନି-ନେବେ ଓ ଏହାକୁ ପାଳନ କରିବା ସମ୍ବନ୍ଧରେ ନିଜର ସମ୍ମାନରେ ଆଞ୍ଚ ଆଣିବାକୁ ଦେବେନାହିଁ ।

ଅଉ ଏକ ଛୋଟିଆ କଥା ଯାହାକି ମୁଁ କହିବାକୁ ଚାହୁଁଛି । ଯେଉଁସବୁ ହିନ୍ଦୁମାନେ ଏହି ବାର୍ତ୍ତାଳାପରେ ଭାଗନେଇଥିଲେ ସେମାନଙ୍କ ପାଖରେ ମୁଁ କୃତଜ୍ଞ । ସେମାନଙ୍କ ମଧ୍ୟରେ ସାର୍ ତେଜବାହାଦୁର ସାପ୍ରୁ, ଓ ଶ୍ରୀଯୁକ୍ତ ଚକ୍ର-ବର୍ତ୍ତୀ ରାଜଗୋପାଳଚାରୀଙ୍କ ନାମ ପ୍ରକାଶ କରୁଛି, କାରଣ ସାର୍ ତେଜବାହାଦୁର ସାପ୍ରୁଙ୍କ ସହାୟତା ବିନା ଆମର ଆଲୋଚନାର ଗାଡ଼ି ରାସ୍ତାରେ ଅଟକି ଯାଇ-

ଥାଆନ୍ତା । ଗୋଲଟେବୁଲ ବୈଠକର ପରିଶ୍ରମରୁ ଗତ ଦୁଇବର୍ଷ ମଧ୍ୟରେ ସେ ସମ୍ବନ୍ଧରେ ଯାହା ଅନୁଭବ ହେଲା, ସେଥିରୁ ମୋତେ ସ୍ୱୀକାର କରିବାକୁ ପଡ଼ିବ, ଯଦି ଭାରତରେ ଏପରି କୌଣସି ବ୍ୟକ୍ତି ଥାଆନ୍ତି ଯେକି ସାମ୍ପ୍ରଦାୟିକତାଠାରୁ ଉପରକୁ ଉଠିପାରିଛନ୍ତି, ସେ ହେଉଛନ୍ତି ସାର୍ ତେଜବାହାଦୁର ସାପ୍ରୁ, ତାଙ୍କର ସ୍ପଷ୍ଟବାଦିତା ଓ ନ୍ୟାୟପ୍ରିୟତା ଯୋଗୁଁ ଏହି ଅଳ୍ପ ସଂଖ୍ୟକଙ୍କୁ ଭରସା ମିଳିଲା ଯେ ଭାରତର ନୂଆ ବିଧାନରେ ନିଜପାଇଁ ସଂରକ୍ଷଣ ବ୍ୟବସ୍ଥା କରିବାକୁ କଷ୍ଟ କରିବାକୁ ପଡ଼ିଲା ନାହିଁ । ମୁଁ ମୋର ବନ୍ଧୁ ଶ୍ରୀଯୁକ୍ତ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କୁ ଭୁଲିପାରିବିନାହିଁ, କାରଣ ଆମ୍ଭମାନଙ୍କର ଆଲୋଚନା ସମ୍ପୂର୍ଣ୍ଣ ଭାଙ୍ଗିଯାଉଥିବା ସମୟରେ ସେ ମୋତେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଯଦି ତାଙ୍କର ବିଚାରଧାରାର ଭରସା ମିଳିନଥାନ୍ତା; ତାହାହେଲେ ଏହି ବୁଝାମଣା ହୋଇପାରିନଥାନ୍ତା । ମୋର ମଧ୍ୟ ପଣ୍ଡିତ ମଦନ ମୋହନ ମାଳବ୍ୟଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ଉଚିତ । କାରଣ ନିଜର ସହନଶୀଳତା ଓ ଉଦାରତା ଯୋଗୁଁହିଁ ଆଲୋଚନାର ସବୁଗରମ ବାତାବରଣ ବେଳେ, ଯେତେବେଳେ ଜଣେ ଅନ୍ୟଜଣଙ୍କ ଉପରେ ଦୋଷ ଢାଳିଦେଉଥିଲେ ସେତେବେଳେ ମାଳବ୍ୟ ଧୀର ଶାନ୍ତଭାବେ ଆଲୋଚନାର ବାତାବରଣକୁ ଶାନ୍ତ ରଖିବାକୁ ସକ୍ଷମ ଥିଲେ । "କମୁନାଲ ଆୱାର୍ଡ଼"ର ପରିବର୍ତ୍ତନ କେବଳ ଏହି ଜିଦ୍ ଉପରେହିଁ ସ୍ୱୀକାର କରିନିଆଗଲା, କାରଣ କୁହାଗଲା ଯେ ପୃଥକ ପ୍ରତିନିଧିତ୍ୱ ରାଷ୍ଟ୍ରୀୟତାର କ୍ଷତିକାରକ ହେବ । ମୁଁ ସ୍ପଷ୍ଟଭାବେ କହିଦେବାକୁ ଚାହେଁ ମୁଁ ବର୍ତ୍ତମାନ ସୁଦ୍ଧା ଏକଥାକୁ ମାନୁନାହିଁ । ମୁଁ ଏଥିରୁ ସ୍ପଷ୍ଟଭାବେ ବୁଝିପାରୁଛି ଯେ ବହୁଜନ ପ୍ରତିନିଧିତ୍ୱର ହିତ ପାଇଁ ପୃଥକ ନିର୍ବାଚନ କ୍ଷତିକାରକ ନୁହେଁ ।

ମୁଁ ଏକଥାକୁ ମଧ୍ୟ ବିଶ୍ୱାସ କରୁନାହିଁ ଯେ ମିଳିତ ନିର୍ବାଚନ ଦଳିତଶ୍ରେଣୀଙ୍କୁ ହିନ୍ଦୁ ସମାଜରେ ସାମିଲ୍ କରିଦେବା ସମସ୍ୟାର ଶେଷ ଓ ଉପଯୁକ୍ତ ଔଷଧ ହେବ । କୌଣସି ପ୍ରକାରର ନିର୍ବାଚନ ବ୍ୟବସ୍ଥା ମହାନ ସାମାଜିକ ସମସ୍ୟାର ସମାଧାନ ଦିଗରେ ସହାୟକ ହୋଇପାରିବ ବୋଲି ମୋର ବିଶ୍ୱାସ ହୁଏନାହିଁ । ଏହି କାରଣରୁ କୌଣସି ରାଜନୈତିକ ବୁଝାମଣାର କିଛି ଅଧିକ ଆବଶ୍ୟକତା ରହୁଛି । ମୁଁ ଆଶାକରେ ଯେ ନିଜ ପାଇଁ ଏହା ସମ୍ଭବ । ନିଜେ ଏହି ରାଜନୀତିକ ବୁଝାମଣାର ଊର୍ଦ୍ଧ୍ୱରେ ରହି ଏପରି କଥା କରିହେବ ଯେଉଁଥିରେ ଦଳିତ ଶ୍ରେଣୀଙ୍କୁ ସମାଜରେ ସମ୍ମାନ ସହିତ ସାମାଜିକ ସମତାର ଆସନ ମିଳିଯିବ ଓ ସେମାନଙ୍କ ପକ୍ଷରେ ହିନ୍ଦୁ ସମାଜରେ ଏକ ଅଂଶରୂପେ ରହିବା ସମ୍ଭବ ହେବ ।

ଯେ ପର୍ଯ୍ୟନ୍ତ ଦଳିତ ଶ୍ରେଣୀ ଅଜ୍ଞାନ ଅନ୍ଧକାର ମଧ୍ୟରେ ପଡ଼ି ରହିଥିବେ ଏବଂ ସେମାନଙ୍କ ମଧ୍ୟରେ ଆତ୍ମସମ୍ମାନର ଭାବନା ଜାଗ୍ରତ ହୋଇନଥିବ, ସେପର୍ଯ୍ୟନ୍ତ ସେମାନଙ୍କ ପାଇଁ ହିନ୍ଦୁ ବ୍ୟବସ୍ଥା ଅନୁଯାୟୀ ଯେଉଁଠାରେ ସ୍ଥାନ ନିର୍ଦ୍ଧାରିତ କରି ରଖାଯାଇଛି ତାହାକୁ ସେମାନେ ସ୍ୱୀକାର କରୁଥିବେ । କିନ୍ତୁ ସେମାନଙ୍କ ମଧ୍ୟରେ ଯେତିକି ଯେତିକି ଶିକ୍ଷା ବଢ଼ିବ ସେତିକି ପରିମାଣରେ ସେହି ବିଧାନକୁ ସେମାନେ ବରଦାସ୍ତ କରିବେନାହିଁ । ଯାହାକି ମାନବତାର ବିରୁଦ୍ଧ ଓ ହିନ୍ଦୁ ସମାଜଠାରୁ ଦୂରେଇ ରଖିବାପାଇଁ ଏକ ବିରାଟ ଫାଟ, ଯାହା ଦିନକୁ ଦିନ ବଡ଼ ବଢ଼ି ଚାଲିଛି ।

ଅତଏବ, ମୁଁ ଆପଣମାନଙ୍କଠାରେ ପ୍ରାର୍ଥନା କରୁଛି । ଆପଣ ଏହି କଥାରେ ଭୁଲ ନକରନ୍ତୁ ଓ ଏହି ସମ୍ବନ୍ଧରେ ଆପଣ ଯାହା କରିବାପାଇଁ ଦରକାର ଅନୁଭବ କରୁଛନ୍ତି ତାହା କରନ୍ତୁ । ଏଥିରେ ବିଳମ୍ବ କରନ୍ତୁ ନାହିଁ ।



# ହିନ୍ଦୁ ମନ୍ଦିର ମଧ୍ୟରେ ପ୍ରବେଶ

(ପୁନା ପ୍ୟାକେଟ୍ ମୁଦ୍ରିତ ହୋଇଯିବା ପରେ ହିନ୍ଦୁମାନେ ଅଛୁଆମାନଙ୍କୁ ହିନ୍ଦୁ ମନ୍ଦିରମାନଙ୍କରେ ପ୍ରବେଶ କରିବା ପାଇଁ ଆନ୍ଦୋଳନ ଚଳାଇଲେ ଓ ବହୁଗୁଡ଼ିଏ ମନ୍ଦିରର ଦ୍ୱାର ଅଛୁଆମାନଙ୍କ ପାଇଁ ଖୋଲିଦେଲେ । ଅନେକ ମନ୍ଦିରରେ ମଧ୍ୟ ସତ୍ୟାଗ୍ରହ ହେଲା । କେତେକ ମନ୍ଦିରର ଦ୍ୱାର ଆଜିପର୍ଯ୍ୟନ୍ତ ମଧ୍ୟ ବନ୍ଦ ଅଛି । ୧୯୩୩ ମସିହାରେ ଗାନ୍ଧିଜୀଙ୍କର ଇଚ୍ଛା ଅନୁସାରେ ଶ୍ରୀ ରଙ୍ଗା ଆୟାରଙ୍କ ଦ୍ୱାରା କେନ୍ଦ୍ରୀୟ ଆସେମ୍ବ୍ଲିରେ ଏକ "ହିନ୍ଦୁ ମନ୍ଦିର ପ୍ରବେଶ" ବିଲ୍ ଉପସ୍ଥାପନ କରାଗଲା । ଗାନ୍ଧିଜୀ ଚାହୁଁଥିଲେ ଡକ୍ଟର ଆମ୍ବେଦକର ଏହି ବିଲ୍‌କୁ ସମର୍ଥନ କରନ୍ତୁ । କିନ୍ତୁ ସେ ଏହାକୁ ସ୍ୱୀକାର କଲେ ନାହିଁ । ପୁଣି ଯେତେବେଳେ ଗାନ୍ଧିଜୀ ବାବା ସାହେବଙ୍କୁ ବାରମ୍ବାର ମନ୍ଦିର ପ୍ରବେଶ ଆନ୍ଦୋଳନରେ ସକ୍ରିୟ ଭାଗନେବା ପାଇଁ ଅନୁରୋଧ କଲେ ବାବା ସାହେବ ୧୪ ଫେବୃଆରୀ ୧୯୩୩ ମସିହାରେ ନିମ୍ନଲିଖିତ ବକ୍ତବ୍ୟ ଦେଇ ଏହି ମାମଲାକୁ ସବୁଦିନ ପାଇଁ ପରିଷ୍କାର କରିଦେଲେ ।)

## ମନ୍ଦିର ପ୍ରବେଶ ସମ୍ପର୍କରେ ବାବା ସାହେବଙ୍କର ବକ୍ତବ୍ୟ

ମୋତେ ବାରମ୍ବାର ପଚରାଯାଉଛି, ମୁଁ ମନ୍ଦିର ପ୍ରବେଶ ଆନ୍ଦୋଳନରେ ସକ୍ରିୟ ସହଯୋଗ କରେ । ଏ ବିଷୟରେ ମୋର ଯାହା ନିଶ୍ଚିତ ବିଚାର ତାହା ବ୍ୟକ୍ତ କରୁଛି । 'ଅଛୁଆଙ୍କ ପାଇଁ ମନ୍ଦିର ପ୍ରବେଶ ଆନ୍ଦୋଳନ କରାଯାଉ" । ଏହି କଥା କହିଲାବେଳେ ପ୍ରଶ୍ନ ଉଠେ ଅଛୁଆ ଜାତିମାନେ ମନ୍ଦିର ପ୍ରବେଶ କରିବା ଚାହାନ୍ତି ନା-ନାହିଁ । ଏହି ପ୍ରଶ୍ନ ଉପରେ ଅଛୁଆଁମାନେ ଦୁଇଟି ଦୃଷ୍ଟିରୁ ବିଚାର କରୁଛନ୍ତି । ସେମାନଙ୍କର ପ୍ରଥମ ଉଦ୍ଦେଶ୍ୟ ହେଉଛି, ଯଦି ସେମାନଙ୍କ ସାମାଜିକ ସ୍ଥିତି ଠିକ୍ ହୋଇଯିବ ତେବେ ସେମାନଙ୍କ ପ୍ରତି ଅଛୁଆଁ ଭାବ ଆପେ ଆପେ ବଦଳି ଯିବ । ଯଦି ସାମାଜିକ ସ୍ଥିତି ଠିକ ହୋଇଯିବ, ସେମାନେ ସାମାଜିକ ଜୀବନର ସମାନ ସ୍ତରକୁ ଉଠିଯିବେ, ସେମାନଙ୍କ ପ୍ରତି ଅଛୁଁଆ ଭାବ ଆପେ ଆପେ ବଦଳି ଯିବ । ଏହି ସାମାଜିକ ସ୍ଥିତି ଠିକ୍ ହେବା ପାଇଁ ସେମାନଙ୍କୁ ଉଚ୍ଚ ଶିକ୍ଷା, ଉଚ୍ଚ ଚାକିରୀ ଓ ଜୀବନ ନିର୍ବାହ ପାଇଁ ଅନ୍ୟାନ୍ୟ ଉପଯୁକ୍ତ ସାଧନ ଦରକାର । ଯଦି ସେମାନଙ୍କ ସାମାଜିକ ସ୍ଥିତି ଠିକ୍ ହୋଇଯିବ ଏବଂ ସେମାନେ ସାମାଜିକ ଜୀବନର ସମାନ ସ୍ତରକୁ ଉଠିଯିବେ, ତେବେ ସେମାନଙ୍କ ପ୍ରତି କଟ୍ଟର ହିନ୍ଦୁମାନଙ୍କ ଦୃଷ୍ଟିକୋଣ ସ୍ୱତଃ ପରିବର୍ତ୍ତନ ହୋଇଯିବ । ଯଦି ପରିବର୍ତ୍ତନ ନହୁଏ

ତେବେ ଅଛୁଆଁ ମାନଙ୍କର କୌଣସି ଲାଭ ହେବ ନାହିଁ । ଏହି ବିଷୟରେ ଅଛୁଆଁ ମାନେ ନିଜର ସମୟ ଓ ଶକ୍ତି ମନ୍ଦିର ପ୍ରବେଶ ଭଳି ଏକ ଗୌଣ କଥାରେ ଖଟାଇବା ପାଇଁ କୌଣସି ବିଶେଷ ଆବଶ୍ୟକତା ମନେ କରନ୍ତି ନାହିଁ । ଦ୍ୱିତୀୟ କଥା ଆତ୍ମସମ୍ମାନର ବିଚାର, ଯାହାକି ମନ୍ଦିର ପ୍ରବେଶ ପାଇଁ ଲଢ଼ିବାର ପ୍ରତିବନ୍ଧକ । କିଛିଦିନ ଆଗରୁ ଭାରତରେ ରହୁଥିବା କେତେକ ଇଂରେଜଙ୍କ କ୍ଲବ ଦ୍ୱାରରେ ଲଗାଯାଇଥିବା ବୋର୍ଡରେ ଲେଖା ହୋଇଥିଲା । "କୁକୁର ଓ ସ୍ଥାନୀୟ ହିନ୍ଦୁଙ୍କ ପ୍ରବେଶ ନିଷେଧ ।" ହିନ୍ଦୁମାନଙ୍କ ଦେବ ମନ୍ଦିର ମାନଙ୍କରେ ମଧ୍ୟ ଅଛୁଆଁ ମାନଙ୍କ ବିରୁଦ୍ଧରେ ଏହିପରି ସେମାନଙ୍କ ଚିରାଗତ ପ୍ରଥା ଜନିତ ଅଲେଖା ବୋର୍ଡ ଲାଗିଛି । ତଫାତ୍ କେବଳ ଏହା ଯେ ହିନ୍ଦୁ ମନ୍ଦିରର ବୋର୍ଡ ଯୁଗ ଯୁଗାନ୍ତରରୁ ହୁକୁମ୍ ଦେଇ ଆସୁଛି "ହିନ୍ଦୁମାନେ ନିଜର କୁକୁର ଓ ଜାନୁଆର ମାନଙ୍କୁ ନେଇ ମନ୍ଦିର ଭିତରକୁ ଯିବାକୁ ଅନୁମତି ପାଇ ପାରନ୍ତି ମାତ୍ର ଅଛୁତମାନଙ୍କୁ ଯିବା ସମ୍ପୂର୍ଣ୍ଣ ନିଷେଧ ।"

ହିନ୍ଦୁସ୍ଥାନର ଲୋକେ ଏହି କ୍ଲବରେ ପ୍ରବେଶ ପାଇଁ ଇଂରେଜମାନଙ୍କ ପାଖରେ କେବେହେଲେ ଭିକ୍ଷା କରି ନାହାନ୍ତି । କାହିଁକି କରି ନାହାନ୍ତି ? କାରଣ ହିନ୍ଦୁସ୍ଥାନୀଙ୍କ ଆତ୍ମସମ୍ମାନ ଏହି ଅହଂକାରୀ ୟୁରୋପୀୟ ମାନଙ୍କ ଠାରେ ଭିକ୍ଷା ମାଗିବାକୁ ଦେଇନାହିଁ । ତେବେ ଆତ୍ମସମ୍ମାନ ଥିବା କୌଣସି ଅଛୁଆଁ, କାହିଁକି ଏପରି ଭିକ୍ଷା ମାଗିବ, ଯାହା ଉପରେ ହିନ୍ଦୁମାନଙ୍କର ଅହଂକାର ଓ ସେମାନଙ୍କ ତ୍ରୁଟିପୂର୍ଣ୍ଣ ପ୍ରତିବନ୍ଧକ ରହିଛି । ଏହି ମନ୍ଦିର ପ୍ରବେଶର ପ୍ରଶ୍ନ ଉପରେ ହିନ୍ଦୁମାନଙ୍କୁ କେବଳ ଏହି ଉତ୍ତର ଦେଇ ପାରିବ ଯେ "ମନ୍ଦିରର ଦ୍ୱାର ଅଛୁଆଁ ମାନଙ୍କ ପାଇଁ ଖୋଲିଯାଉ ବା ନଯାଉ ତାହା ସେମାନଙ୍କର ବିଚାର କରିବାର କଥା, ମୋର ଆନ୍ଦୋଳନ କରିବା କଥା ନୁହେଁ । ଯଦି ତୁମେ ବୁଝିପାରୁଛ କୌଣସି ମାନବ ଜାତିର ପବିତ୍ର ଆତ୍ମାକୁ ଅପମାନ କରିବା ଖରାପ କଥା, ଯଦି ତୁମେ ବୁଝିପାରୁଛ କୌଣସି ମାନବ, ନିଜର ମନ୍ଦିରର ଦ୍ୱାର ଖୋଲି ଦେଇ ମହତ ଲୋକ ହୋଇପାରିବ କିମ୍ବା ଯଦି ମହତ୍ତ୍ୱବାଦୀ ନହୋଇ ଅହଂକାରୀ ସଙ୍କୀର୍ଣ୍ଣମନା ହିନ୍ଦୁ ହୋଇ ରହିବାକୁ ଅଧିକ ପସନ୍ଦ କରିବ ତାହାହେଲେ ନିଜର ମନ୍ଦିରର ଦ୍ୱାର ସମ୍ପୂର୍ଣ୍ଣ ବନ୍ଦ କରିଦିଅ, ମୋର ତୁମ୍ଭମାନଙ୍କର ମନ୍ଦିର ଭିତରକୁ ଯିବାର କୌଣସି ଆବଶ୍ୟକତା ନାହିଁ ।"

ମନ୍ଦିର ପ୍ରବେଶ ସମ୍ବନ୍ଧରେ ଆହୁରି ମଧ୍ୟ ଅନେକ ପ୍ରଶ୍ନ ଅଛି । ଯାହାଦ୍ୱାରା କି ଅଛୁଆଁ ମାନଙ୍କୁ ମନ୍ଦିର ପ୍ରବେଶ ଅଧିକାର କାହିଁକି ଦିଆଗଲା ? ଏହାର

ମୂଳରେ ଆପଣମାନଙ୍କର ଉ ଉଣ୍ୟ କଣ ? ମନ୍ଦିର ପ୍ରବେଶ କଣ ଅଚ୍ଛୁଆଁମାନଙ୍କର ସାମାଜିକ ଉନ୍ନତିର ଅନ୍ତିମ ଧ୍ୟେୟ ଅଟେ ? କିମ୍ବା ଅଚ୍ଛୁଆଁ ମାନଙ୍କର ଉନ୍ନତି ପାଇଁ ଏହା ପ୍ରଥମ ପଦକ୍ଷେପ ? ଯଦି ଏହା ପ୍ରଥମ ପଦକ୍ଷେପ ହୁଏ, ତାହାହେଲେ ଅନ୍ତିମ ଧ୍ୟେୟ କ'ଣ ? ଯଦି ମନ୍ଦିର ପ୍ରବେଶ ଅଚ୍ଛୁଆଁମାନଙ୍କର ଅନ୍ତିମ ଧ୍ୟେୟ ଅଟେ, ତାହାହେଲେ ଅଚ୍ଛୁଆଁ ଲୋକେ ମନ୍ଦିର ପ୍ରବେଶକୁ ସମର୍ଥନ କରିବେ ନାହିଁ । ମାତ୍ର ଏହା ବୁଝିବେ ଯେ ହିନ୍ଦୁ ସମାଜରେ ସେମାନଙ୍କ ପାଇଁ ନିଜର କିଛୁ ନାହିଁ । ସେମାନେ ନିଜର ଶକ୍ତି ପରୀକ୍ଷା ଅନ୍ୟ କୌଣସିଠାରେ କରିବେ । ଯଦି ମନ୍ଦିର ପ୍ରବେଶ ଅଚ୍ଛୁଆଁମାନଙ୍କ ଉନ୍ନତିର ପ୍ରଥମ ପଦକ୍ଷେପ ହୁଏ, ତାହାହେଲେ ସେମାନେ ତାର ସମର୍ଥନ ଏହି କାରଣରୁ କରିବେ, କାରଣ ସେମାନେ ଏପରି ଏକ ଧର୍ମ ଚାହାନ୍ତି, ଯେଉଁଥିରେ ସେମାନେ ଭାଗିଦାର ବା ସାମାଜିକ ସମତା ପ୍ରାପ୍ତ ହୋଇପାରିବେ । ଅଚ୍ଛୁଆଁ ପ୍ରଥା ଉଦାରଭଳ ଧର୍ମକୁ କେବେ ବରଦାସ୍ତ କରିବେ ନାହିଁ, ଯେଉଁଥିରେ ଆଜନ୍ମରୁ ସାମାଜିକ ବିଷମତା ଓ ସାମାଜିକ ଭେଦଭାବ ସୃଷ୍ଟି କରାଯାଇଛି ।

ଯଦି ହିନ୍ଦୁ ଧର୍ମ ଅଚ୍ଛୁତ ମାନଙ୍କର ମଧ୍ୟ ଧର୍ମ ହୁଏ, ତାହାହେଲେ ସେମାନଙ୍କୁ ସାମାଜିକ ସମତାରେ ଧର୍ମ ଗଠନ କରିବାକୁ ହେବ । କେବଳ ମନ୍ଦିର ପ୍ରବେଶ କଥାକୁ ଯୋଡିଦେଲେ ହିନ୍ଦୁ ଧର୍ମ ଏକ ସାମାଜିକ ସମତା ସମ୍ପନ୍ନ ଧର୍ମ ହୋଇ-ପାରିବ ନାହିଁ । ଏଥିପାଇଁ ଚତୁର୍ବର୍ଣ୍ଣର ସିଦ୍ଧାନ୍ତକୁ, ଯେ କି ଜାତିଭେଦ, ଉଚ୍ଚନୀଚ ଓ ଛୁଆଁ ଅଚ୍ଛୁଆଁର ଜନକ, ତାକୁ ଦୂରେଇ ଦେବାକୁ ପଡ଼ିବ । ଯଦି ଚତୁର୍ବର୍ଣ୍ଣର ସିଦ୍ଧାନ୍ତକୁ ଦୂରେଇ ଦେବା ସମ୍ଭବ ନୁହେଁ, ତାହାହେଲେ ଅଚ୍ଛୁଆଁ ଲୋକେ ମନ୍ଦିର ପ୍ରବେଶ ଓ ହିନ୍ଦୁ ଧର୍ମ ଉଭୟକୁ ତ୍ୟାଗ କରିବେ । ଚତୁର୍ବର୍ଣ୍ଣ ଓ ଜାତିଭେଦ ଦୁଇଟିଯାକ ଅଚ୍ଛୁଆଁମାନଙ୍କର ଅସମ୍ମାନର ବିଷୟ । ଯେତେଦିନ ପର୍ଯ୍ୟନ୍ତ ଚତୁର୍ବର୍ଣ୍ଣ ଓ ଜାତିଭେଦ ହିନ୍ଦୁ ସମାଜର ଆଧାରଭୂତ ସିଦ୍ଧାନ୍ତ ବୋଲି ମାନି ନିଆଯାଉଥିବ ସେତେଦିନ ପର୍ଯ୍ୟନ୍ତ ଅଚ୍ଛୁଆଁମାନଙ୍କୁ ଦୃଷ୍ଟିରେ ରଖି ଦୂର କରୁଥିବେ, ଅଚ୍ଛୁଆଁମାନେ ସେତିକିବେଳେ ନିଜକୁ ହିନ୍ଦୁ ବୋଲି ମାନିବେ ଯେତେବେଳେ ହିନ୍ଦୁ ଧର୍ମ ଓ ହିନ୍ଦୁ ଶାସ୍ତ୍ରରୁ ବର୍ଣ୍ଣ ବ୍ୟବସ୍ଥା ଓ ଜାତିଭେଦ ଦୂରେଇ ଦିଆଯିବ । ଯେଉଁମାନେ ନିଜକୁ ସଂସ୍କାରକ କହୁଛନ୍ତି, ସେମାନେ ଓ ନିଜେ ମହାତ୍ମାଗାନ୍ଧୀ କଣ ଏହି ସିଦ୍ଧାନ୍ତକୁ ମାନିବାକୁ ପ୍ରସ୍ତୁତ ଅଛନ୍ତି ? ଏଥିପାଇଁ କଣ କୌଣସି ମିଳିତ ପଦକ୍ଷେପ ନିଆଯାଇ ପାରିବ ? ଏଭଳି ଏକ ଆନ୍ଦୋଳନ ଚଳାଇବାର ସାହସ କଣ କରାଯାଇ ପାରିବ ? ମୁଁ ମୋର ଶେଷ କର୍ତ୍ତବ୍ୟ ସ୍ଥିର କରିବା ପୂର୍ବରୁ ଏହି ପ୍ରଶ୍ନର ଉତ୍ତର ଚାହୁଁଛି ଏବଂ ମୁଁ ଏହା ଉପରେ ଗାନ୍ଧିଜୀ ବା

ହିନ୍ଦୁ ସମ୍ପାଦକ ମାନଙ୍କ ବକ୍ତବ୍ୟ ଶୁଣିବା ପାଇଁ ଅପେକ୍ଷା କରି ରହିଛୁ । ମହାତ୍ମାଗାନ୍ଧୀ ଓ ହିନ୍ଦୁ ସମ୍ପାଦକଗଣ ଏଥିପାଇଁ ପ୍ରସ୍ତୁତ ହୁଅନ୍ତୁ ବା ନହୁଅନ୍ତୁ, ମାତ୍ର ଅଛୁତମାନେ ଏଥିରୁ କମରେ ସନ୍ତୁଷ୍ଟ ହୋଇ ପାରିବେ ନାହିଁ । କେବଳ ମନ୍ଦିର ପ୍ରବେଶରେ ଅଛୁତମାନଙ୍କୁ ସନ୍ତୁଷ୍ଟ କରାଯାଇ ପାରିବେ ନାହିଁ । ଏହାହିଁ ତ ଅନୁରୋଧ ।”

ମୋର ଏହି ପ୍ରସ୍ତାବକର ବିରୋଧରେ ଗାନ୍ଧିଜୀ ଓ ହିନ୍ଦୁ ସମ୍ପାଦକମାନେ ଏହି ପ୍ରସ୍ତାବ ଉପସ୍ଥାପନ କରିପାରନ୍ତି - ଅଛୁତମାନେ ଯଦି ମନ୍ଦିର ପ୍ରବେଶ କରନ୍ତି ତାହାହେଲେ ଏହାପରେ ବର୍ଣ୍ଣ ବ୍ୟବସ୍ଥା ଓ ଜାତିଭେଦର ବିନାଶ ପାଇଁ ସେମାନଙ୍କର ଆନ୍ଦୋଳନ ଅଟକିଯିବ ନାହିଁ । ମୁଁ ଏହାର ଉତ୍ତରରେ ଏହା କହିବି, ଆଚ୍ଛା, ମୁଁ ମନ୍ଦିର ପ୍ରବେଶ ସ୍ୱୀକାର କରୁଛି, କିନ୍ତୁ ଏହାପରେ ବର୍ଣ୍ଣ ବ୍ୟବସ୍ଥା ଓ ଜାତିଭେଦ ବିରୁଦ୍ଧରେ ଯେଉଁ ଆନ୍ଦୋଳନ ଚାଲିବ, ସେଥିରେ କ'ଣ ଗାନ୍ଧିଜୀ ଓ ହିନ୍ଦୁ ସମ୍ପାଦକମାନେ ସମର୍ଥକ ରହିବେ ? ଗାନ୍ଧିଜୀ ସେତେବେଳେ କେଉଁ ପକ୍ଷରେ ରହିବେ ? ଯଦି ଗାନ୍ଧିଜୀ ସେହି ସମୟରେ ସନାତନୀ ହିନ୍ଦୁମାନଙ୍କ ସପକ୍ଷରେ ରହନ୍ତି ତାହାହେଲେ ମୋର ସ୍ପଷ୍ଟ ଜବାବ ହେଉଛି, ମୁଁ ସେମାନଙ୍କର ମନ୍ଦିର ପ୍ରବେଶ ଆନ୍ଦୋଳନକୁ କଦାପି ସମର୍ଥନ କରିବି ନାହିଁ ଏବଂ ଯଦି ଗାନ୍ଧିଜୀ ସେହି ସମୟରେ ସନାତନୀ ମାନଙ୍କ ବିରୁଦ୍ଧରେ ଆମ୍ଭମାନଙ୍କ ସପକ୍ଷରେ ହେବେ ତାହା ହେଲେ ମୁଁ ନିବେଦନ କରିବି ଯେ ସେମାନେ ବର୍ତ୍ତମାନ ଠାରୁ ମୋ ପକ୍ଷକୁ ଖୋଲି ଖୋଲି ଭାବେ ଆସିଯିବା ଉଚିତ୍ । (ବାବା ସାହେବଙ୍କର ଏହି ବିଶୁଦ୍ଧ ଜାତୀୟ ଦାବୀ ମତକୁ ଗ୍ରହଣ ନକରି ଗାନ୍ଧୀ ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ଓ ଅରାଷ୍ଟ୍ରୀୟତା ବୋଲି ଉତ୍ତର ଦେଇଥିଲେ ।

—o—

# ଗାନ୍ଧିଜୀଙ୍କ ଉତ୍ତର

ବାବା ସାହେବଙ୍କ ବକ୍ତବ୍ୟର ଉତ୍ତରରେ ଗାନ୍ଧିଜୀ କହିଲେ, "ଯଦି ଡକ୍ଟର ଆମ୍ବେଦକର ବର୍ଣ୍ଣ ବ୍ୟବସ୍ଥା ବିରୁଦ୍ଧରେ ଲଢ଼ିବାକୁ ଚାହାଁନ୍ତି, ତାହାହେଲେ ମୁଁ ତାଙ୍କ ସପକ୍ଷରେ ହୋଇ ପାରିବ ନାହିଁ । କାରଣ ମୁଁ ମାନୁଛି ଯେ ବର୍ଣ୍ଣାଶ୍ରମ ହିନ୍ଦୁ ଧର୍ମର ମାନଦଣ୍ଡ । ମାତ୍ର ବର୍ଣ୍ଣାଶ୍ରମର ବିଧାନରେ ଉଚ୍ଚ ନୀଚର ଭାବନା ନାହିଁ ।"

ସମୀକ୍ଷା :—ଗାନ୍ଧିଜୀଙ୍କର ଏହି କଥା—"ଆଜନ୍ମରୁ ବର୍ଣ୍ଣ ବିଧାନରେ ଉଚ୍ଚ ନୀଚ ଭାବ ନାହିଁ," ପ୍ରଳାପ ମାତ୍ର । ମାତ୍ର କର୍ଣ୍ଣ ପରି ବୀରକୁ ଦାସୀ ପୁତ୍ର କହି ଅପମାନ କରିବା, ବିଦୁର ଭଳି ଜ୍ଞାନୀକୁ ଦାସୀ ପୁତ୍ର କହି, ରାଜ୍ୟର ଅନଧିକାରୀ ବୋଲି କହି ବଞ୍ଚିତ କରିବା, ଏକଲବ୍ୟ ଭଳି ଧନୁର୍ଦ୍ଧରର ଅଙ୍ଗୁଳି କାଟିଦେବା, ଶମ୍ବୁକ ପରି ତପସ୍ୱୀର ମୁଣ୍ଡକାଟି ପକାଇବା ଆଦି ଯେଉଁ ଅଗଣିତ ଘଟଣା ରହିଛି ତାହା ଗାନ୍ଧିଜୀଙ୍କର ଏହି କଥାକୁ ପରିଷ୍କାର ଭାବେ ମୂଲ୍ୟହୀନ ବୋଲି ସାବ୍ୟସ୍ତ କରେ । ଯେଉଁ ଅବସ୍ଥା ପ୍ରଥମରୁ ଥିଲା, ତାହା ଆଜି ମଧ୍ୟ ଅଛି । କବିର, ରୈଦାସ, ଦାଦୁ, ନାମଦେବ ଓ ଚୋଖାମେଲାଙ୍କ ପରି ସନ୍ଥମାନଙ୍କୁ ଯେଉଁଭଳି ଅପମାନିତ କରାଯାଇଛି, ତାହା ଗାନ୍ଧିଜୀଙ୍କର ଏହି ପ୍ରଳାପୋକ୍ତି ପ୍ରତି ଥଟ୍ଟା ବା ଚପେଟା ଘାତ ପରି । ଏହା କୌଣସି ବୁଦ୍ଧିମାନ ବ୍ୟକ୍ତି ଅସ୍ୱୀକାର କରିବ ନାହିଁ । ବର୍ଣ୍ଣ ବ୍ୟବସ୍ଥା ଓ ଜାତିଭେଦକୁ ଖୋଲି ଖୋଲି ଭାବେ 'ପାପ' ବୋଲି କହି ସେଗୁଡ଼ିକୁ ମନ-ବଚନ କାର୍ଯ୍ୟରୁ ମୂଳତଃ ଉତ୍ପାଟନ କରିବାକୁ ହେବ । ଗୀତା, ରାମାୟଣ, ଭାଗବତ ପରି ଧର୍ମ ପୁସ୍ତକ ଓ ମନୁସ୍ମୃତି ଆଦି ଶାସ୍ତ୍ରମାନଙ୍କର ଯେଉଁ ବର୍ଣ୍ଣ ବ୍ୟବସ୍ଥା ଓ ଜାତିଭେଦର ପ୍ରତିପାଦନ ହୋଇଛି, ବା ସମର୍ଥନରେ ଲେଖା ଯାଇଛି, ସେଗୁଡ଼ିକୁ ଖୋଲି ଖୋଲି ଭାବେ ବହିଷ୍କାର ବା ତିରସ୍କାର କରିବାକୁ ପଡ଼ିବ । ତେବେ ବୁଝାଯିବ ଯେ ହିନ୍ଦୁମାନେ ବିଶୁଦ୍ଧ ଓ ପବିତ୍ର ମାନବ ବାଦକୁ ଅଙ୍ଗୀକାର କରୁଛନ୍ତି ।

ଏହାର ତାତ୍ପର୍ଯ୍ୟ ହେଉଛି ଗାନ୍ଧିଜୀ ଓ ବାବା ସାହେବଙ୍କ ବିଚାର ମଧ୍ୟରେ ଆକାଶ-ପାତାଳ ଓ ପୂର୍ବ-ପଶ୍ଚିମର ପାର୍ଥକ୍ୟ ଅଛି । ଗାନ୍ଧିଜୀ ଏକନିଷ୍ଠ ସନାତନୀ ହିନ୍ଦୁ ଥିଲେ । ସେ ଅଛୁଆମାନଙ୍କୁ ହିନ୍ଦୁ ଧର୍ମର ଜାଲ ଓ ଖାଲରେ ପକାଇ ସେମାନଙ୍କୁ ହିନ୍ଦୁମାନଙ୍କ ଗୋଲାମ କରି ରଖିବାକୁ ଚାହୁଁଥିଲେ । ଏହା ବିରୁଦ୍ଧରେ ସଂଗ୍ରାମ କରି, ବାବା ସାହେବ ମାନବତା ବାଦ ପ୍ରତିଷ୍ଠା କରିବାକୁ ଦୃଢ଼ ସଙ୍କଳ୍ପ

ଥିଲେ । ଅଛୁତମାନଙ୍କୁ ହିନ୍ଦୁ ଦାସତ୍ୱରୁ ମୁକ୍ତ କରି ସ୍ୱତନ୍ତ୍ର ମାନବ ରୂପେ କରିବାକୁ ଚାହୁଁ ଥିଲେ ଓ ଦେଶରେ ସାମାଜିକ ସମତା ସମ୍ପ୍ରସାରଣ କରିବାକୁ ଚାହୁଁ ଥିଲେ । ଦୁହିଁଙ୍କ ଦୃଷ୍ଟିକୋଣ ଅଲଗା ଅଲଗା ଥିଲା । ଏହି କାରଣରୁ ପୁନା ପ୍ୟାକ୍ଟ ପରେ ମଧ୍ୟ ଦୁହିଙ୍କ ମଧ୍ୟରେ, ଅଥବା ହିନ୍ଦୁ ଓ ଅଛୁତଙ୍କ ମଧ୍ୟରେ ଏକମତ ବା ମିଳନ ହୋଇ ପାରିଲା ନାହିଁ ।

## ବୌଦ୍ଧମାନଙ୍କୁ ହିନ୍ଦୁ ମନ୍ଦିର ନିଷେଧ

(୧୯୫୬ ମସିହା ନଭେମ୍ବର ମାସରେ ବାବା ସାହେବ ଯେତେବେଳେ ବାରଣାସିର ସାରନାଥ ଠାରେ ଥିଲେ, ସେତେବେଳେ ଗୋଟିଏ ଗୁଜବ ସୃଷ୍ଟି ହେଲା "ନେପାଳରେ ବାବା ସାହେବଙ୍କୁ ପଶୁପତିନାଥଙ୍କ ମନ୍ଦିରକୁ ଯିବାପାଇଁ ଦିଆଗଲା ନାହିଁ" । ଏହା ଉପରେ ସଫେଇ ଦେଇ ବାବା ସାହେବ ନିମ୍ନୋକ୍ତ ମତେ ତାଙ୍କର ବକ୍ତବ୍ୟ ଦେଇଥିଲେ । )

ଏ ଖବର ମିଥ୍ୟା ଯେ ମୁଁ କାଠମାଣ୍ଡୁ ଠାରେ ପଶୁପତିନାଥଙ୍କ ମନ୍ଦିରକୁ ଯିବାବେଳେ ମୋତେ ଅଟକାଇ ଦିଆଯାଇଥିଲା । ମୁଁ କୌଣସି ହିନ୍ଦୁ ମନ୍ଦିରକୁ ଯାଏନାହିଁ । ଯଦି ମୋତେ ଶହେବାର ଅନୁରୋଧ କରାଯାଏ ତେବେ ମଧ୍ୟ ମୁଁ ପଶୁପତିନାଥଙ୍କ ମନ୍ଦିରକୁ ଯାଇ ନଥାନ୍ତି । ମୋର ବ୍ୟକ୍ତିଗତ ସଚିବ ସହ ଯେବେ ମୁଁ ନେପାଳରେ ଥିଲି ନେପାଳ ସରକାରଙ୍କ ଦ୍ୱାରା ଦିନେ କୁହାଗଲା ଡକ୍ଟର ଆମ୍ବେଦକର ସାହେବଙ୍କୁ ପଶୁପତିନାଥ ମନ୍ଦିରକୁ ନିଆଯିବ ନାହିଁ । ତା'ର ଅର୍ଥ ଏହା ନୁହେଁ ଯେ ହିନ୍ଦୁ ମନ୍ଦିରକୁ ବୌଦ୍ଧ ପ୍ରବେଶ କରୁ । ରୋକ ଦେବାର ଅର୍ଥ ସେହିଠାରେ ପ୍ରଜ୍ୟୋଜ୍ୟ ଯେଉଁଠାରେ ଜଣେ ଯିବାକୁ ଆକାଂକ୍ଷା କରିଥାଏ, ବା ଯିବାକୁ ଇଚ୍ଛା ପ୍ରକାଶ କରିଥାଏ, ସେ ପରିସ୍ଥିତିରେ ତାକୁ ରୋକାଯାଏ । କିନ୍ତୁ ଯେ ନ ଯିବାକୁ ସଂକଳ୍ପ କରି, ଯିବାକୁ ଇଚ୍ଛା ପ୍ରକାଶ କରୁନାହିଁ, ତାଙ୍କ ସମ୍ବନ୍ଧରେ ତାଙ୍କୁ ଅଟକାଇ ଦିଆଗଲା ବୋଲି କହିବାଟା ଏକ ଉଦ୍ଦେଶ୍ୟ ମୂଳକ ପ୍ରଚାର ମାତ୍ର ।

ଏ ବିଷୟରେ ମୁଁ ଶୁଣିଲି ଯେ କେତେକ ନେପାଳୀ ଭିକ୍ଷୁ ଓ କିଛି ସିଂହଳୀ ଭିକ୍ଷୁ ମନ୍ଦିରକୁ ଯିବାକୁ ଚାହୁଁଥିଲେ । ସେମାନଙ୍କୁ ସେଠାରେ ପ୍ରହରୀମାନେ ଯିବାକୁ ଦେଲେ ନାହିଁ । ଯଦି ଏହା ହୋଇଥାଏ, ତାହା ଠିକ୍ ହୋଇଥିଲା । ଯେଉଁ ବ୍ୟକ୍ତି ଯେଉଁ ଦେବତାଙ୍କ ପ୍ରତି ବିଶ୍ୱାସ କରେ ନାହିଁ, ତାହାର ସେ ମନ୍ଦିରକୁ ଯିବା ମଧ୍ୟ ଉଚିତ୍ ନୁହେଁ । ଗଲେ ମଧ୍ୟ, ଦେବ ଦର୍ଶନାର୍ଥୀ ଭାବ ନୁହେଁ, ସଂଗ୍ରହାଳୟ ଦେଖାଳୀ ଭାବେ ଯାଇଥାଏ ।

ବୌଦ୍ଧମାନଙ୍କ ପକ୍ଷରେ ଏହା ପାପ, ଯଦି ସେମାନେ ହିନ୍ଦୁ ମନ୍ଦିରକୁ ଯିବାକୁ ଚେଷ୍ଟା କରନ୍ତି ଓ ସେଥିପାଇଁ ସେମାନଙ୍କୁ ବାଧା ଦିଆଯାଉଥାଏ । କୌଣସି ହିନ୍ଦୁ ମନ୍ଦିରକୁ ବୌଦ୍ଧମାନଙ୍କର ନଯିବା ଉଚିତ୍ । ବୁଦ୍ଧ ମନ୍ଦିର ମାନଙ୍କରେ ସେମାନେ ସମସ୍ତଙ୍କୁ ସମ୍ମାନର ସହିତ ଆସିବାକୁ ଦିଅନ୍ତି, କାହାରିକୁ ନିଷେଧ କରନ୍ତି ନାହିଁ ।

୨୬ ନଭେମ୍ବର ୧୯୫୬ ମସିହାରେ ସାରନାଥ ଠାରେ ଭାଷଣ ଦେଇ ବାବାସାହେବ କହିଲେ :—

ପ୍ରତ୍ୟେକ ବୌଦ୍ଧଙ୍କ ପାଇଁ ଏହା ଅନିବାର୍ଯ୍ୟ ଯେ ସେ ପ୍ରତି ରବିବାର ଦିନ ବୁଦ୍ଧ ମନ୍ଦିରକୁ ଯିବ ଓ ସେଠାରେ କୌଣସି ଭିକ୍ଷୁଙ୍କ ଠାରୁ ଧର୍ମ ଉପଦେଶ ଶୁଣିବ । ଯଦି କୌଣସି ଏପରି ଉପଦେଶକ ନଥାନ୍ତି, ତାହା ହେଲେ, ପରିତ୍ରାଣ ସୂତ୍ର ଅଥବା ଧର୍ମପଦ ଆଦି ପବିତ୍ର ଧର୍ମଗ୍ରନ୍ଥ ଗୁଡ଼ିକର ଅର୍ଥସହ ପାଠ ଶୁଣିବା ଉଚିତ୍ । ଯଦି ଏହା ନହୁଏ, ତାହା ହେଲେ ନବ ଦୀକ୍ଷିତ ବୌଦ୍ଧମାନେ କିଛି ଜାଣି ପାରିବେ ନାହିଁ । ମୋର ଅନୁରୋଧ ଯେ ପ୍ରତ୍ୟେକ କ୍ଷେତ୍ରରେ ଏପରି ବୌଦ୍ଧ ମନ୍ଦିର ତିଆରି କରାଯିବ, ଯେଉଁଥିରେ ସଭା କରିବା ପାଇଁ ପ୍ରଚୁର ସ୍ଥାନ ରହିଥିବ । ଭଗବାନଙ୍କ ସମ୍ମୁଖରେ ସବୁ ସମାଧାନ ହେବା ଦରକାର । ଶ୍ରୀଲଙ୍କା, ବର୍ମା, ତିବ୍ବତ, ଚୀନ ଇତ୍ୟାଦି ସବୁ ବୌଦ୍ଧ ଦେଶରେ ଭିକ୍ଷୁ ବା ଉପାସକ ମାନଙ୍କ କର୍ତ୍ତବ୍ୟ ହେଉଛି ଭାରତରେ ଏହି ପ୍ରକାର ବୌଦ୍ଧ ମନ୍ଦିର ନିର୍ମାଣ ପାଇଁ ଅର୍ଥ ସହାୟତା କରିବାକୁ ଅର୍ଥ ସଂଗ୍ରହ କରିବା ।

—o—

## ଅସ୍ପୃଶ୍ୟ ମାନଙ୍କର ମନ୍ଦିର ପ୍ରବେଶ ସତ୍ୟାଗ୍ରହ

### ( ଏ ସମ୍ବନ୍ଧରେ ବାବାସାହେବଙ୍କ ମନ୍ତବ୍ୟ )

ସେହି ହିନ୍ଦୁଗଣ, ଯେଉଁମାନଙ୍କୁ ହିନ୍ଦୁ ଶାସ୍ତ୍ର ଅନୁସାରେ ଅଛୁଆଁ କରି ଦିଆଯାଇଛି, ସେମାନେ ଯଦି ହିନ୍ଦୁ ଧର୍ମରେ ରହି, ହିନ୍ଦୁ ଶାସ୍ତ୍ର ବିରୁଦ୍ଧରେ ମନ୍ଦିର ପ୍ରବେଶ କରିବାକୁ ଚାହୁଁଛନ୍ତି, ତାହାହେଲେ ଏହା ସେମାନଙ୍କ ପକ୍ଷରେ ସତ୍ୟାଗ୍ରହ ନୁହେଁ ଦୁରାଗ୍ରହ । ଯଦି ସେମାନେ ଅନ୍ୟାୟକୁ ଆଜିପର୍ଯ୍ୟନ୍ତ ସହି ଆସିଛନ୍ତି, ତାହାହେଲେ ସେମାନେ ମନ୍ଦିରରେ ପ୍ରବେଶ କରନ୍ତୁ ବା ନ କରନ୍ତୁ, ମନେରଖିବା ଉଚିତ୍. ସେଭଳି ଦେବତାଙ୍କର ଦର୍ଶନରେ କଣ ମିଳିବ ଯାହାଙ୍କୁ ସେମାନେ ପୂଜା କରିପାରିବେ ନାହିଁ । ଏକଥା ହିନ୍ଦୁ ଅଛୁଆଁ ମାନଙ୍କର । ସେମାନଙ୍କର ଯାହା ଇଚ୍ଛା ବା ସେମାନେ ଯାହା ବୁଝିଛନ୍ତି, ସେକଥା ନେଇ ଆଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଯେଉଁ ଭାଇମାନେ ଭଗବାନ ବୁଦ୍ଧଙ୍କ ଶରଣକୁ ଆସିଗଲେ, ସେମାନେ କଦାପି ଏ ଝମେଲା ମଧ୍ୟରେ ପଶିବା ଉଚିତ୍ ନୁହେଁ । ଯେଉଁ ଅଛୁଆଁ ବା ସବର୍ଣ୍ଣ, ବୌଦ୍ଧ ଧର୍ମ ଗ୍ରହଣ କରିନେଲେ, ସେମାନେ ଯଦି ହିନ୍ଦୁ ମନ୍ଦିର ମଧ୍ୟକୁ ପ୍ରବେଶ କରିବାକୁ ଚାହାଁନ୍ତି, ବା ଚେଷ୍ଟା କରନ୍ତି, ତାହାହେଲେ ସେମାନେ ନିଜ ପବିତ୍ର ଧର୍ମର ସ୍ୱେଚ୍ଛାଚରଣ କରିବେ ଏବଂ ହିନ୍ଦୁ ମନ୍ଦିରର ମଧ୍ୟ ଏହା ଅପମାନ ହେବ । ସେମାନେ ମନେ ରଖିବା ଉଚିତ୍, ସେମାନେ ପ୍ରତିଦିନ ନିଜ ପୂଜା ସମୟରେ କୁହନ୍ତି "ନାସ୍ତି ମେ ଶରଣଂ ଅନ୍ୟଂ, ବୁଦ୍ଧ ମେ ସରଣଂ ବରଂ" । ଅର୍ଥାତ ମୋପାଇଁ ବୁଦ୍ଧଙ୍କ ବିନା ଅନ୍ୟ କେହି ସରଣ ରକ୍ଷକ ନାହିଁ । ତେଣୁ ହିନ୍ଦୁ ମନ୍ଦିରରେ ପ୍ରବେଶ କରିବାର ମୋହ କାହିଁକି ?

ମୁଁ ସେହି ଅଛୁତ ଭାଇମାନଙ୍କୁ ସଚେତନ କରିଦେବାକୁ ଚାହେଁ, ଯେଉଁମାନେ କାଶୀର ବିଶ୍ୱନାଥ ମନ୍ଦିର ମଧ୍ୟରେ ପ୍ରବେଶ କରିବାକୁ ସତ୍ୟାଗ୍ରହ କରୁଛନ୍ତି, କିମ୍ବା ଏହି ପ୍ରକାରେ ଅନ୍ୟ କୌଣସି ହିନ୍ଦୁ ମନ୍ଦିରରେ ପ୍ରବେଶ କରୁଛନ୍ତି, ସେମାନଙ୍କର ଏହା ଏକ ବଡ଼ ଭୁଲ । ସେମାନେ ମନେରଖିବା ଉଚିତ୍, ଏହି ପ୍ରକାରର ସତ୍ୟାଗ୍ରହ ହିନ୍ଦୁମାନଙ୍କର ଏକ ରାଜନୈତିକ ଚାଲ୍ । ଏହି ଚାଲବାଜିରେ ଭୁଲିଗଲେ ଅସ୍ପୃଶ୍ୟ ମାନଙ୍କର ତ କିଛି ହିତ ହେବନାହିଁ ବରଂ କ୍ଷତି ହେବ । ସେମାନଙ୍କ ପକ୍ଷେ ହିତକାରକ କଥା ହେଉଛି ବୌଦ୍ଧଧର୍ମ ଗ୍ରହଣକରି ସେହିସବୁ ଅନ୍ୟାୟ ଓ ବିଷମତାଠାରୁ ମୁକ୍ତି ଲାଭକରିବା । (୧୯୫୬ ମସିହାର

କଥା, ବାବା ସାହେବଙ୍କର ପତ୍ନୀ ରମାବାଇ, ଯେକି, ଥରେ ମହାରାଷ୍ଟ୍ରର ପ୍ରସିଦ୍ଧ ପଣ୍ଡରପୁରର ଭାଗବତ ସମ୍ପ୍ରଦାୟର ଧର୍ମ ମନ୍ଦିର ଦର୍ଶନ ପାଇଁ ଇଚ୍ଛା ପ୍ରକାଶ କରିଥିଲେ, ବାବା ସାହେବ ତାଙ୍କୁ ଯେଉଁ ଉପଦେଶ ଦେଇଥିଲେ ତାହା ପ୍ରତ୍ୟେକ ଦଳିତ ହିନ୍ଦୁଙ୍କ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ଯୋଗ୍ୟ । ବାବାସାହେବ କହିଥିଲେ : —

"ଯିନ ଭକ୍ତମାନଙ୍କୁ କେବଳ ଦର୍ଶନ ଦେବାରୁ ବଞ୍ଚିତ କରି ରହିଥିବା ଦେବତାଙ୍କୁ ଦର୍ଶନ କରିବାରେ କି ଲାଭ, ଯେ କି ନିଜର ମନ୍ଦିର ନିର୍ମାଣକାରୀ ହିନ୍ଦୁଙ୍କ ଇଚ୍ଛାର ଦାସ, ସେମାନଙ୍କର ମତକୁ ବିରୁଦ୍ଧରେ କିଛି କରିବାକୁ ତାହାଙ୍କର ଟିକେହେଲେ ଶକ୍ତିନାହିଁ । ବରଂ ଆମେ ଆମ୍ଭମାନଙ୍କର ନିସ୍ୱାର୍ଥ ସେବାରେ ନିଜର ଦୀନ ଦୁଃଖୀ ଭାଇମାନଙ୍କୁ ଉଦ୍ଧାର କରିପାରିଲେ ଅଗଣିତ ହୃଦୟ ମଧ୍ୟରୁ ଆଶୀର୍ବାଦ ମିଳିପାରିବ ।

## ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରରେ ଶ୍ରମ ଓ ଶ୍ରମିକ

( ୧୯୪୩ ମସିହାରେ ଦିଲ୍ଲୀରେ ଅଖିଳ ଭାରତୀୟ ଟ୍ରେଡ୍ ୟୁନିୟନ ଓ୍ୱାରକରମ୍ ପ୍ରଶିକ୍ଷଣ ଶିବିରରେ ଦେଇଥିବା ବାବା ସାହେବଙ୍କର ବ୍ୟାଖ୍ୟାନ । ଯେତେବେଳେ ବାବା ସାହେବ, ଭାଇସରାଏଙ୍କର ଏକଜିକ୍ୟୁଟିଭ କମିଟିର ସଦସ୍ୟ ଥିଲେ ଓ ଶ୍ରମ, ପୂର୍ତ୍ତ ଓ ଆଇନ ବିଭାଗର ଦାୟିତ୍ୱରେ ଥିଲେ । )

ବସ୍ତୁତଃ, ମଣିଷ ସମାଜକୁ ଶାସନାଧୀନ ରଖିବାପାଇଁ ଦୁନିଆରେ ଯେତେବେଳେ ରାଜ୍ୟ ବ୍ୟବସ୍ଥା ଠିକ୍ ହେଲା ଓ ସରକାର ଗଠନ କରାହେଲା, ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଏହି ସରକାର ମଧ୍ୟରେ ବଡ଼ କ୍ରାନ୍ତିକାରୀ ଓ ମହତ୍ୱପୂର୍ଣ୍ଣ ପରିବର୍ତ୍ତନ ହୋଇଯାଇଛି । ଗୋଟିଏ ଯୁଗ ଥିଲା, ଯେତେବେଳେ ଏହି ସରକାର ନିରଙ୍କୁଶ ରାଜାସାହିର ରୂପ ଗ୍ରହଣ କରିନେଇଥିଲା । ସେହି ସମୟରେ ରାଜାଙ୍କ ହିଁ ଥିଲା ସବୁକିଛି । ମଣିଷର ବ୍ୟକ୍ତିତ୍ୱ, ବା ଜୀବନର କୌଣସି ମୂଲ୍ୟ-ନଥିଲା । ମଣିଷ ପଶୁପରି ରାଜାଜ୍ଞା ପାଳନ କରୁଥିଲା । ରାଜା ସ୍ୱେଚ୍ଛାଚାରୀ ହେଲେ ତାଙ୍କ ଉପରେ କୌଣସି ଅଙ୍କୁଶ ନଥିଲା । କିନ୍ତୁ ଏକ ଦୀର୍ଘ ସମୟର ସଂଘର୍ଷ ଓ ରକ୍ତପାତ ପରେ ଏହି ରାଜାସାହି ଶାସନ ବ୍ୟବସ୍ଥାର ଶେଷ ହେଲା ଓ ତା ସ୍ଥାନରେ ପାର୍ଲ୍ୟାମେଣ୍ଟାରୀ ଲୋକତନ୍ତ୍ର ବାଦ ଆସିଲା । ସେତେବେଳେ ଏହା ଅନୁଭବ ହେଲା ଯେ ଶାସନ ନିର୍ମାଣର ଏହା ଉତ୍ତମ ବ୍ୟବସ୍ଥା । ଏହା ବିଶ୍ୱାସ ହୋଇଯାଇଥିଲା ଯେ ବର୍ତ୍ତମାନ, ଏପରି ଏକ ଯୁଗ ଆରମ୍ଭ ହେବ ଯେତେବେଳେ

ପ୍ରତ୍ୟେକ ବ୍ୟକ୍ତିଙ୍କୁ ଏହି ଅଧିକାର ମିଳିବ ଯାହାଦ୍ୱାରା ସେ ନିଜର ସ୍ୱତନ୍ତ୍ରତା, ସମ୍ପତ୍ତି ଓ ସୁଖଲାଭପାଇଁ ନିଜେ ଚେଷ୍ଟା କରିପାରିବ । ଏ ପ୍ରକାର ଉଚ୍ଚ ଆଶା ପାଇଁ ଯଥେଷ୍ଟ ଆଧାର ଅଛି । ପାର୍ଲିଆମେଣ୍ଟାରି ଲୋକତନ୍ତ୍ରରେ ଜନତାର ମତକୁ ପ୍ରକାଶ କରିବା ପାଇଁ ଏକ ବିଧାନ ସଭା ରହିବ ଓ ଗୋଟିଏ କାର୍ଯ୍ୟକାରୀ ସଂସ୍ଥା ହେବ । ଯାହାର କାମ ହେବ ଜନତାର ଆଦେଶ ମୁତାବକ ଆଇନ ତିଆରି କରିବା । ଏହା ତଳେ ଆଉ ଏକ ଶାସନ ବିଭାଗ ରହିବ, ଯାହାର ଅନିବାର୍ଯ୍ୟ କର୍ତ୍ତବ୍ୟ ହେବ କାନୁନ୍ ତିଆରି କରୁଥିବା ସଭାର ଆଇନକୁ କାର୍ଯ୍ୟକାରୀ କରୁଥିବା ଶାସନ ବିଭାଗକୁ ତାର ଅଧିକାରର ସୀମା ବାହାରକୁ ଯିବାକୁ ନଦେବା । ପାର୍ଲିଆମେଣ୍ଟାରି ଲୋକତନ୍ତ୍ର ଏକ ଏପରି ଲୋକପ୍ରିୟ ସରକାର ହେବ ଯେଉଁଥିରେ ଲୋକପ୍ରିୟତାର ଅନ୍ତତଃ ସବୁ ଗୁଣଥିବା ଉଚିତ୍ । କାରଣ ଏହା ଜନତାର, ଜନତା ଦ୍ୱାରା ଓ ଜନତାର ହିତପାଇଁ କାର୍ଯ୍ୟ କରୁଥିବା ସରକାର ହେବ । ଏହିପରି ଲୋକପ୍ରିୟ ସରକାର ଚିରସ୍ଥାୟୀ ହେବା ଦରକାର କିନ୍ତୁ ଏହା ଏକ ଆଶ୍ଚର୍ଯ୍ୟର କଥା ଯେ ଏହି ପାର୍ଲିଆମେଣ୍ଟାରି ଲୋକତନ୍ତ୍ର ବାଦକୁ, ବ୍ୟାପକ ସ୍ୱୀକୃତ ତଥା ଏହାର ଆରମ୍ଭରୁ ବର୍ତ୍ତମାନ ସୁଧା ଏକ ଶତାବ୍ଦି ମଧ୍ୟ କଟିଲା ନାହିଁ । ଏହା ବିରୁଦ୍ଧରେ ବିଦ୍ରୋହ ଉଠି ଛିଡ଼ା ହେଲାଣି, ଇଟାଲିରେ ବିଦ୍ରୋହ, ଜର୍ମାନରେ ବିଦ୍ରୋହ, ରୁଷରେ ବିଦ୍ରୋହ, ସ୍ପେନ୍‌ରେ ମଧ୍ୟ ବିଦ୍ରୋହ ଦେଖାଦେଇଛି । ଏପରି ବହୁତ କମ୍ ଦେଶ ଅଛି ଯେଉଁଠାରେ ଏହା ବିରୁଦ୍ଧରେ ଅସନ୍ତୋଷ ନାହିଁ । ପ୍ରଶ୍ନ ହୁଏ ପାର୍ଲିଆମେଣ୍ଟାରି ଲୋକତନ୍ତ୍ରବାଦ ପ୍ରତି ଏପରି ଅସନ୍ତୋଷ ଭାବ କାହିଁକି ଦେଖାଦେଇଛି । ଏହା ଏକ ଏପରି ପ୍ରଶ୍ନ ଯାହାର ବିଚାର କରିବାପାଇଁ ଯେଉଁ ତତ୍କାଳୀନ ଆବଶ୍ୟକତା ଥିଲା ତାହା ଏ ଦୁନିଆରେ ଅନ୍ୟ କୌଣସି ଦେଶରେ ନଥିଲା । ଭାରତରେ ଏହାର ଉପରେହିଁ ବିଚାର କରାଯାଇଛି । ଏ କଥାର ମଧ୍ୟ ଆବଶ୍ୟକତା ଅଛି ଯେ ଏପରି ଏକ ସାହସୀ ବ୍ୟକ୍ତି ବାହାରିବ, ଯେ କି ଭାରତୀୟମାନଙ୍କୁ ଚେତାଇ ଦେଇପାରିବ– "ସାବଧାନ ହୋଇଯାଅ" ପାର୍ଲିଆମେଣ୍ଟାରି ଲୋକତନ୍ତ୍ର ସବୁଠାରୁ ଉତ୍ତମ ପଦ୍ଧତି ନୁହେଁ ।

ପାର୍ଲିଆମେଣ୍ଟାରି ଲୋକତନ୍ତ୍ରବାଦ ସଫଳ ହେଲାନାହିଁ କାହିଁକି ? ଯେଉଁ ଦେଶର ଡ଼ିକ୍‌ଟେଟର ବା ଅଧିନାୟକମାନଙ୍କ ଶାସନ ଅଛି ସେଠାରେ ପାର୍ଲିଆ- ମେଣ୍ଟାରି ଲୋକତନ୍ତ୍ରବାଦ ଏହି କାରଣରୁହିଁ ଫେଲ ହୋଇଗଲା, କାରଣ, ଏହା ଏକ ଏପରି ମେସିନ୍, ଯାହାର ଗତି ଅତି ଢିଲା, ଏ ମେସିନରେ କୌଣସି କାର୍ଯ୍ୟ ଶୀଘ୍ର ହେବନାହିଁ, କାରଣ ଏହାର ଶାସନ ବିଭାଗର କାର୍ଯ୍ୟ ଆଇନ ତିଆରି କରିବା ଲୋକଙ୍କର ସ୍ୱୀକୃତି ଯୋଗୁଁ ଅଟକିଯାଏ, ଶାସନ ବିଭାଗ ଯେଉଁ ଆଇନ ତିଆରି

କରିବାକୁ ସ୍ୱାଧୀନ ତାହା ଲୁଣାଳୀ ଆଇନ ପ୍ରଣୟନକାରୀମାନେ ମନାକରି ଦେଇ ପାରନ୍ତି । ଆଇନ ପ୍ରଣୟନକାରୀଙ୍କ ଉପେରେ ଯଦି କୌଣସି ବାଧାସୃଷ୍ଟି ନହୁଏ, ହୁଏତ ତାହା ନ୍ୟାୟ ବିଚାର ଉପରେ ପ୍ରତିବନ୍ଧକ ସୃଷ୍ଟି ହୋଇପାରେ । ସେମାନଙ୍କର ଏହା କହିବାର କଥା, ଏପରି କାର୍ଯ୍ୟ ଅଇନ ବହିର୍ଭୂତ କାର୍ଯ୍ୟ । ଯାହା ହେଉନା କାହିଁକି ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରବାଦ, ଡିକଟେଟର ବା ଅଧିନାୟକଙ୍କ ଉପରେ ନଜର ଅକୃଷ୍ଟ ରହିଥାଏ । ଏହି ସବୁ ତୃଟି ଯୋଗୁଁ ଇଟାଲି, ସ୍ପେନ, ଜର୍ମାନୀ ପରି ଦେଶରେ ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରବାଦର ଅନାଦର ହେଲା ଓ ଅଧିନାୟକ ବାଦକୁ ଅତି ବ୍ୟାକୁଳତାର ସହିତ ସ୍ୱାଗତ କରାଗଲା । ଯଦି କେବଳ ଅଧିନାୟକଗଣଙ୍କ ଦ୍ୱାରା ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରର ବିରୋଧ କରାଯାଇଥାନ୍ତା, ତାହେଲେ କୌଣସି ବଡ଼କଥା ହୋଇନଥାନ୍ତା । ସେମାନଙ୍କର ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରବାଦର ବିରୁଦ୍ଧାଚରଣକୁ ସ୍ୱାଗତ କରାଯାଇଥାନ୍ତା । କାରଣ ଏଥିରୁ ପ୍ରମାଣିତ ହୋଇଥାନ୍ତା, ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ର ସେମାନଙ୍କୁ ନିଜର ଇଚ୍ଛା ଅନୁଯାୟୀ କାମ କରିବାକୁ ଦେଉନାହିଁ । କିନ୍ତୁ ଦୁର୍ଭାଗ୍ୟର କଥା, ଏହି ସବୁ ଦେଶରେ ଲୋକେ ଅଧିନାୟକ ଶାସନର ବିରୋଧୀ ଅଟନ୍ତି । ସେଠାରେ ମଧ୍ୟ ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ର ବିରୁଦ୍ଧରେ ଅଧିକ ଅସନ୍ତୋଷ ଦେଖାଦେଉଛି । ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ର ବାଦ, ନିଜର ସ୍ଥିତିରେ ସୁଦୃଢ଼ ନୁହେଁ । ସେଥିରେ ଧନାଢ୍ୟଗରୁ ବିକାଶ ହୁଏ । ଏହାର ଆତ୍ମା, ସମାନ ମତାବଲମ୍ବୀ ରୂପେ ସମାନ ରାଜନୈତିକ ଅଧିକାର ସହ ଜଡ଼ିତ ଥାଏ । ଏପରି ଦେଶ ବହୁତ କମ ଯେଉଁଠାରେ ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ର ସୁପ୍ରତିଷ୍ଠିତ ହୋଇଅଛି ଓ ଅଭିଜ୍ଞ ମତାଧିକାର ରହିଛି । ସମାନ ରାଜନୈତିକ ଅଧିକାର ଦ୍ୱାରା ଏଥିରେ ସାମାଜିକ ଆର୍ଥିକ କ୍ଷେତ୍ରରେ ସମାନ ସୁବିଧା ସୁଯୋଗ ପାଇବା କ୍ଷେତ୍ରରେ ପ୍ରଗତିଶୀଳ ହୋଇପାରିଛି । ଏହା ସ୍ଥିର ନିଶ୍ଚିତ ଯେ ସମାଜ ବିରୋଧୀ ଲୋକଙ୍କୁ ରାଜ୍ୟରେ ମନମୁଖି କାର୍ଯ୍ୟ କରିବାକୁ ଦିଆଯିବ ନାହିଁ । ଏହା ହେବା ପରେ ମଧ୍ୟ ଯେଉଁ ଦେଶରେ ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ର ବ୍ୟବସ୍ଥା ଧାର୍ଯ୍ୟ ହୋଇରହିଛି ସେ ଦେଶରେ ମଧ୍ୟ ଏହା ବିରୁଦ୍ଧରେ ଅଧିକ ଅସନ୍ତୋଷ ଦେଖାଦେଇଛି ।

ଯେଉଁ ଦେଶରେ ଅଧିନାୟକତ୍ୱ ଧାର୍ଯ୍ୟ ହୋଇଯାଇଛି, ସେ ଦେଶରେ ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରବାଦର ବିରୋଧର କଣ କାରଣ ଥାଇପାରେ ? ଏ ବିଷୟରେ ଅଧିକ ଆଲୋଚନା କରିବା ପାଇଁ ସମୟ ନାହିଁ । ସଙ୍କ୍ଷେପରେ କୁହାଯାଇପାରେ, ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ର ବିରୁଦ୍ଧରେ ଅସନ୍ତୋଷର ଯେଉଁ ପ୍ରଧାନ କାରଣ, ତାହା ହେଉଛି ଲୋକମାନଙ୍କ ମନରେ ଧାରଣା ବା ବିଶ୍ୱାସ ହୋଇଯାଇଛି, ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରବାଦରେ ଜନତା ପାଇଁ ସ୍ୱାଧୀନତା, ସମ୍ପତ୍ତି ଓ ସୁଖ

ଲୋଭର ନିର୍ଦ୍ଧିତତା ନାହିଁ । ଯଦି ଏକଥା ସତ୍ୟ ହୁଏ, ତାହାହେଲେ ଆମ୍ଭମାନଙ୍କ ପାଇଁ ଦରକାର, ଏହି ସମସ୍ୟା ଉପରେ ବିଚାର କରିବା । ଏହି କାରଣଟି ହୁଏତ ଭୁଲ୍ ଆଦର୍ଶବାଦ, ତ୍ରୁଟି ପୂର୍ଣ୍ଣ ସଂଗଠନ କିମ୍ବା ଉଭୟ ମଧ୍ୟରେ ଅଗ୍ରସର ହୋଇଥାଏ । ମୋର ଅନୁମାନ ଏହି କାରଣ ଉଭୟର ସ୍ୱରୂପ ଅଟେ ।

ଭାରତରେ ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରର ବିଫଳତା ପାଇଁ ଯେଉଁ ସମ୍ମାନ ଜନକ କାରଣ ସୃଷ୍ଟି ହୋଇଛି ମୁଁ ନିସନ୍ଦେହରେ କହିପାରିବି ସେଥିରୁ ଗୋଟିଏ ହେଉଛି ସ୍ୱାଧୀନତା ଘୋଷଣାର ଖିଆଲ । ଏହି ଖିଆଲକୁ ଠିକ୍ ବୋଲି ମାନି ନିଆଗଲା ଓ ସ୍ୱାଧୀନତା ନାମରେ ଏହାର ଛିଟ ମିଳିଗଲା । ପାର୍ଲିଅମେଣ୍ଟାରୀ ଲୋକତନ୍ତ୍ରରେ ଆର୍ଥିକ ବିଷମତା ଆଡ଼କୁ ଧ୍ୟାନ ଦିଆଗଲା ନାହିଁ ଓ ଏହି କଥାକୁ ମଧ୍ୟ ଖାତିର କରାଗଲା ନାହିଁ । ତାହା ଦେଖି ମଧ୍ୟ ସମ୍ବନ୍ଧିତ ପାର୍ଟୀମାନେ ଅପୋଷରେ ମାନିନେଲେ । ସେଥିରେ (ସ୍ୱାଧୀନତା ଓ ଲୋକତନ୍ତ୍ର) ଏହା (ଲୋକତନ୍ତ୍ର) ଦୁର୍ବଳ ହୋଇଥିବାରୁ ସେହି ଦୁହିଁଙ୍କ ଉପରେ ଦିଆଯାଇଥିବା ସ୍ୱୀକୃତିର କଣ ପ୍ରଭାବ ପଡ଼ିଲା ? ସେମାନେ ମଧ୍ୟ ଏହାକୁ ଖାତିର କଲେ ନାହିଁ । ଏ ପ୍ରକାରର ସ୍ୱାଧୀନତା ଦ୍ୱାରା ଶକ୍ତିଶାଳୀ ଲୋକମାନଙ୍କୁ ସୁଯୋଗ ଦିଆଗଲା । ସେମାନେ ଦୁର୍ବଳ ଲୋକଙ୍କୁ ଓଲୁ କରି ରଖିଲେ । ଏହାର ପରିଣାମ ଏହା ହେଲା, ପାର୍ଲିଅମେଣ୍ଟାରୀ ଲୋକତନ୍ତ୍ର ବାଦରେ ସ୍ୱାଧୀନତାର ପ୍ରଧାନ ପ୍ରବର୍ତ୍ତକ ହୋଇ, ଗରିବ ଦଳିତ ଓ ଧନହୀନ ନାଗରିକମାନେ ଅଧିକ କ୍ଷତିଗ୍ରସ୍ତ ହେଲେ ।

ପାର୍ଲିଅମେଣ୍ଟାରୀ ଲୋକତନ୍ତ୍ରବାଦକୁ ବରବାଦ କଲାଭଳି ଅନ୍ୟ ଏକ ଭୁଲ ଧାରଣା ହେଉଛି ପାର୍ଲିଅାମେଣ୍ଟାରୀ ଲୋକତନ୍ତ୍ରକୁ ବୁଝିବାବେଳେ ଏକଥା ଉଠିଲା ନାହିଁ ଯେ ସେଠାରେ ରାଜନୈତିକ ଲୋକତନ୍ତ୍ର ସଫଳ ହୋଇପାରିବ ନାହିଁ, ଯେଉଁଠାରେ ଆର୍ଥିକ ଓ ସାମାଜିକ ଲୋକତନ୍ତ୍ର ପ୍ରତିଷ୍ଠିତ ହୋଇ ନ ପାରିବ । ମନେହୁଏ କେତେକ ଲୋକ ମୋ କଥାରେ ଏକମତ ହେବେନାହିଁ । ମୁଁ ସେମାନଙ୍କୁ ଆଉ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହେଁ ତାହା ହେଉଛି, ଇଟାଲି, ଜର୍ମାନ୍ ଓ ରୁଷରେ ଏତେ ଶୀଘ୍ର ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରର ସଫଳତା ଟଳି ପଡ଼ିଲା କାହିଁକି ? ଅଥଚ ଇଂଲଣ୍ଡ ଓ ଆମେରିକାରେ ଏପରି ପ୍ରଚେଷ୍ଟା ଉଠି ପାରିଲା । ଏହି ପ୍ରଶ୍ନ ପାଇଁ ମୋର କେବଳ ଗୋଟିଏ ଉତ୍ତର ତାହା ହେଉଛି ଇଂଲଣ୍ଡ ଓ ଆମେରିକା ଆଦି ଦେଶମାନଙ୍କରେ ଇଟାଲି ଓ ଜର୍ମାନ ଦେଶ ଅପେକ୍ଷା ଆର୍ଥିକ ଓ ସାମାଜିକ ଲୋକତନ୍ତ୍ର ଅଧିକ ପରିମାଣରେ ପ୍ରତିଷ୍ଠିତ ଥିଲା । ବସ୍ତୁତଃ ରାଜନୈତିକ ଲୋକତନ୍ତ୍ର, ସାମାଜିକ ଓ ଆର୍ଥିକ ଲୋକତନ୍ତ୍ରର ଶିରା-ପ୍ରଶିରା ଦ୍ୱାରା ପ୍ରଭାବିତ ହୋଇଥାଏ । ଏହି ଶିରା-ପ୍ରଶିରା ଗୁଡ଼ିକ ଯେତେ ଅଧିକ ମଜଭୁତ ହେବ, ସେହିର

ତେଉଙ୍କ ମଜଭୁତ୍ ଥିବାର ପ୍ରମାଣିତ ହେବ । ଲୋକତନ୍ତ୍ରର ଅନ୍ୟ ନାମ ହେଉଛି ସମତା, ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ରରେ ଭାରତରେ ସମତା ଆଡ଼କୁ ଧ୍ୟାନ ଦିଆଗଲା ନାହିଁ । ତାହା କେବଳ ସ୍ୱତନ୍ତ୍ରତା ଉପରେ ହିଁ ବିମୋହିତ ହୋଇ ରହିଗଲା । ଏହା ନୁହେଁ ଯେ ପାର୍ଲିଆମେଣ୍ଟାରୀ ଲୋକତନ୍ତ୍ର ସମତାର ମହତ୍ତ୍ୱକୁ କେହି ବୁଝି ପାରି ନାହାନ୍ତି । କେବଳ ସ୍ୱତନ୍ତ୍ରତା ଓ ସମତାରେ କୌଣସି ପ୍ରକାର ସନ୍ତୁଷ୍ଟ ଜନକ ସିଦ୍ଧାନ୍ତ ସ୍ଥାପନ କରିବାରେ ଚେଷ୍ଟା କରାଗଲା ନାହିଁ । ଏହାର ପରିଣାମ ଏହା ହେଲା ଯେ ସମତାର ଲୋକତନ୍ତ୍ର କଞ୍ଚା କାନ୍ଥୁଅରେ ଗଢ଼ା ହୋଇଥିବାରୁ ତାହା ଧୋଇ ହୋଇଗଲା ଓ କେବଳ ଲୋକତନ୍ତ୍ର ଗୁଞ୍ଜ ମାତ୍ର ରହିଗଲା ।

## ସ୍ୱତନ୍ତ୍ର ଭାରତରେ ଆମ୍ଭେ ଶାସକ ଜାତି ହେବୁଁ

(୧୯୪୪ ମସିହା ଜାନୁୟାରୀ ୨୭ ତାରିଖରେ କାନପୁର ଠାରେ ଅଖିଳ ଭାରତୀୟ ଶିଡ୍ୟୁଲଡ଼ କାଷ୍ଟ ଫେଡେରେସନ କନଫରେନସରେ ଦେଇଥିବା ବାବା ସାହେବ ଡକ୍ଟର ଆମ୍ବେଦକରଙ୍କ ଓଜସ୍ୱୀନୀ ବ୍ୟାଖ୍ୟାନ)

ଭାଇମାନେ ! ଆମ୍ଭମାନଙ୍କର ଏହି ବିଶ୍ୱାସ ରଖିବା ଦରକାର ଯାହା ଦ୍ୱାରା କି ନିକଟ ଭବିଷ୍ୟତର ସ୍ୱାଧୀନ ଭାରତରେ ଆମ୍ଭେମାନେ ଶାସକ ଜାତି ହୋଇ ପାରିବା । ବର୍ତ୍ତମାନ ଆମ୍ଭେମାନେ ଏକଥା ବରଦାସ୍ତ କରିବୁ ନାହିଁ ଯେ ଆମ୍ଭେ ଏହି ଅବସ୍ଥାରେ ପଡ଼ିରହିଥିବା, ଯାହା ଫଳରେ ଆମ ସହିତ କେବଳ ମାଲିକ ପରି ନୁହେଁ ଗୋଲାମ ମାନଙ୍କ ଯେଉଁଭଳି ବ୍ୟବହାର କରାଯାଏ, କରାଯାଉଥିବ । ଯଦି, ଯେବେ ଭାରତରେ ସ୍ୱାଧୀନ ସରକାର ସ୍ଥାପନ କରାହେବ, ତାହି ହେଲେ ଦେଶର ରାଜନୀତି ଶକ୍ତିର ତିନିଗୋଟି ଭାଗିଦାର ରହିବେ । ସେମାନେ ହେଲେ ହିନ୍ଦୁ, ମୁସଲମାନ ଓ ପରିଗଣିତ ଜାତିର ଲୋକେ । ବର୍ତ୍ତମାନ ସେଦିନ ଚାଲିଯାଇଛି, ଯେତେବେଳେକି ଗୋଟିଏ ଜାତି ଅନ୍ୟଏକ ଜାତିକୁ ଦମନ କରି ନିଜ ଅଧୀନରେ ରଖୁଥିଲେ । ମୁଁ ଏହା ପରିଷ୍କାର ଓ ସ୍ପଷ୍ଟଭାବରେ କହିଦେବାକୁ ଚାହୁଁଛି ଯେ ପରିଗଣିତ ଜାତିମାନେ ଏବେ ନିଜର ଅଧିକାର ପାଇଁ ସଂଘର୍ଷ କରିବାକୁ ସ୍ଥିର କରି ନେଇଛନ୍ତି । ସେମାନେ ଦେଶର ଶାସନରେ ନିଜ ଅଧିକାରର ଉଚିତ୍ ଭାଗ ନେଇକରି ରହିବେ । ଯେ ପର୍ଯ୍ୟନ୍ତ ରାଜନୈତିକ ଶକ୍ତି ସେମାନଙ୍କର ହାତକୁ ନ ଆସିଛି ସେ ପର୍ଯ୍ୟନ୍ତ ସେମାନେ ଏହା ଆଶା କରିବା ଉଚିତ୍ ନୁହେଁ ଯେ ସେମାନେ ନିଜର ଦାରିଦ୍ର୍ୟ ପ୍ରପିଡ଼ିତ ଭାଇମାନଙ୍କର ଦୁର୍ଦ୍ଦଶାର କୌଣସି ପ୍ରତିକାର କରି-ପାରିବେ । ମୁଁ ସେହି ଦିନର ପଥକୁ ଚାହିଁ ବସିଛି, ଯେତେବେଳେ ଆମେ ପ୍ରତ୍ୟେକ

ଶ୍ରମଜୀବୀ ଓ ମଜୁରିଆମାନଙ୍କୁ ଏହି ଆଶ୍ୱାସନା ଦେଇପାରେଁ, ତୁମକୁ ରହିବା ପାଇଁ ଖଣ୍ଡିଏ ଘର ଚଳିବା ପାଇଁ ଅତି କମରେ ମାସକୁ ୬୦ ଟଙ୍କା ଓ ବୃଦ୍ଧମାନଙ୍କ ସହାୟତା ପାଇଁ ପେନସନର ବ୍ୟବସ୍ଥା କରାଯାଇ ପାରିବ ।

ଯେଉଁମାନେ ମୋତେ କଂଗ୍ରେସରେ ମିଶିବା ପାଇଁ ଅନୁରୋଧ କରି ଆସୁଛନ୍ତି, ସେମାନଙ୍କ ପାଇଁ ମୋର ସଂକ୍ଷିପ୍ତ ଉତ୍ତର ହେଉଛି ଯେ ମୁଁ ଭାରତର ପରିଗଣିତ ଜାତିର ସ୍ୱତନ୍ତ୍ରତା ପାଇଁ ସଂଘର୍ଷ କରିବାକୁ କଂଗ୍ରେସ ଠାରୁ କିଛି ଅଧିକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ବୋଲି ବିଚାର କରୁଛି । କାରଣ ସେମାନେ ଅତୀତର ଦୁଇ ହଜାର ବର୍ଷରୁ ଅଧିକ ହେବ ନିପ୍ପେଷିତ, ନିର୍ଯାତିତ ଓ ନିପୀଡ଼ିତ ହୋଇ ଆସୁଛନ୍ତି ।

ଏହା ମୋତେ ଅଧିକ ଭଲ ଲାଗୁଛି, ଦେଶର ସ୍ୱରାଜ୍ୟ ଲାଭ ଅପେକ୍ଷା ମୁଁ ନିଜ ଜାତିର ଉଦ୍ଧାର ପାଇଁ କାର୍ଯ୍ୟ କରିବି । ଯଦି ମୋତେ କୌଣସି ଦାୟିତ୍ୱରେ ଥିବା କଂଗ୍ରେସ ନେତା, ମୋର ବିଶ୍ୱାସ ଆଣିପାରିବ ଯେ ଯେଉଁ ପରିଗଣିତ ଜାତିର ମୁଁ ଜଣେ ନିଜେ ସଦସ୍ୟ ହୋଇଥିବାର ଗୌରବ ଅନୁଭବ କରୁଛି, କଂଗ୍ରେସରେ ଯୋଗଦେବା ଦ୍ୱାରା ସେହି ଜାତିର ହିତ ସାଧନ ପାଇଁ ତଥା ସେମାନଙ୍କୁ ଆହୁରି ଆଗେଇ ନେବାପାଇଁ ଦାୟିତ୍ୱ ନେଇ ପାରିବ ତାହାହେଲେ ମୁଁ ସେମାନଙ୍କ ଏହି ପ୍ରସ୍ତାବ ଉପରେ ବିଚାର କରିବି । ମୁଁ ଏପରି ଲୋକକୁ ନେତା ମାନିବାକୁ ପ୍ରସ୍ତୁତ ନୁହେଁ, ଯେ ଜାତିଭେଦ ବର୍ଣ୍ଣଭେଦ ବା ଧର୍ମଭେଦ ଉପରେ ବିଶ୍ୱାସ କରେ । ଭାଇମାନେ ! ମୁଁ ଚାହେଁ ଯେ ଆପଣ ବିଗତ ହଜାର ହଜାର ବର୍ଷଧରି ଯେଉଁ କଷ୍ଟ ସହି ଆସୁଛନ୍ତି, ଆପଣ ତାର ନିରାକରଣ ଉପରେ ବିଚାର କରନ୍ତୁ । ଆପଣ ମାନଙ୍କର ଏସବୁ ଦୁଃଖ କଷ୍ଟର ପ୍ରଧାନ କାରଣ ହିନ୍ଦୁ ଧର୍ମ । ସାରା ଦୁନିଆରେ ଯେତେ ଧର୍ମ ଅଛି ସେଥି ମଧ୍ୟରୁ ହିନ୍ଦୁ ଧର୍ମ ହେଉଛି ଏପରି ଏକ ଧର୍ମ ଯାହା ଜାତିଭେଦ ତଥା ଛୁଆଁ ଅଛୁଆଁକୁ ସ୍ୱୀକାର କରେ । ଏହା ସେମାନଙ୍କ ଦ୍ୱାରା ସୃଷ୍ଟ ଏକ ବାହାନା ବା ପ୍ରାଚୀର, ଯାହାର ଆଡ଼ୁଆଳରେ ରହି ସୁବର୍ଣ୍ଣ ହିନ୍ଦୁମାନେ ବର୍ଣ୍ଣ ବହିଷ୍କୃତ ପରିଗଣିତ ଜାତିଙ୍କ ଉପରେ ଅତ୍ୟାଚାର କରି ଆସୁଛନ୍ତି । ମୋତେ ଏଗୁଡ଼ିକ ଅବଶୋଷରେ ସହିତ କହିବାକୁ ପଡୁଛି । ଆଜି ମଧ୍ୟ ସେହି ଦଶା ରହିଛି । ଆଜି ମଧ୍ୟ ପରିଗଣିତ ଜାତିର ଲୋକେ ଗାଁରେ ସମ୍ମାନର ସହିତ ରହିପାରୁନାହାନ୍ତି । ଆମ୍ଭେମାନେ ଏହି ଅତ୍ୟାଗ୍ରହୀ ହିନ୍ଦୁ ଧର୍ମକୁ ଜଳାଞ୍ଜଳି ଦେବା ଉଚିତ୍ । ହଜାର ହଜାର ବର୍ଷରୁ ହୋଇ ଆସୁଥିବା ଏହି ଅତ୍ୟାଚାରକୁ ଆଉ ଅଧିକ ଦିନ ସହି ନେବା ଉଚିତ୍ ନୁହେଁ । ମୋତେ ଯେଉଁ କଥାରେ ଆଘାତ ଲାଗିଛି ତାହା ହେଉଛି ଆଜି ମଧ୍ୟ ମୋ ଜାତିର ଭାଇମାନେ ନିଜକୁ ଶ୍ରେଷ୍ଠ ବୋଲି ବିଚାର କରୁଛନ୍ତି । କେବଳ ଏହି କାରଣରୁ ହିଁ ସବର୍ଣ୍ଣ ହିନ୍ଦୁମାନେ ସେମାନଙ୍କୁ

ଷ୍ଟେଟ ବସାଉଛନ୍ତି । ସେମାନଙ୍କ ଉପରେ ହୁକୁମ୍ ଜାରି କରୁଛନ୍ତି । ଫଳରେ ସେମାନେ ନିଷ୍ପେଷିତ ହୋଇ ରହି ଆସୁଛନ୍ତି । ଭାଇମାନେ ' ଆପଣମାନଙ୍କୁ ଏବେ ନିଜର ଶକ୍ତି ଉପରେ ଭରସା ରଖିବାକୁ ପଡ଼ିବ ଓ ଏହି ମିଳିତ ଲିପ୍ସା ଧାରଣାକୁ ସମୂଳେ ଦୂର କରିବାକୁ ପଡ଼ିବ । ଭାବିବା ଉଚିତ୍ ନୁହେଁ ଯେ ଆପଣ କୌଣସି ଗୁଣରୁ ଅନ୍ୟ ଜାତିମାନଙ୍କ ଠାରୁ ନୀଚ ବା ନିମ୍ନ ଅଟନ୍ତି ।

ମୁଁ ପୁଣି ଜୋର ଦେଇ କହୁଛି ଯେ ଏକଥାରୁ ତତ୍କାଳୀନ ଆବଶ୍ୟକତା ହେଉଛି, ଆପଣଙ୍କର ରାଜନୀତିକ ସଂସ୍ଥା, "ସିଡ୍ୟୁଲଡ୍ କାଷ୍ଟ ଫେଡ଼୍ରେସନ୍"ର ପଛରେ ଏକ ଶକ୍ତିଶାଳୀ ସଂଗଠନ ରହିବା ଉଚିତ୍ । ବ୍ରିଟିସ ସରକାର ସବୁବେଳେ ମୁସଲମାନ୍ ମାନଙ୍କ ପକ୍ଷରେ ବିଚାର କରୁଛନ୍ତି । ଆପଣମାନେ ବିଚାର କରନ୍ତୁ, ଯଦି ଅନ୍ୟମାନେ ଛୁଆଁ ଛୁଇଁ ଭେଦଭାବ ଦୂର କରି ମିଶାଇବା ପାଇଁ ଦାବୀ କରୁଛନ୍ତି, ଏହା ଆପଣମାନଙ୍କର ମଧ୍ୟ ଦାୟିତ୍ୱ ହେବା ଉଚିତ୍, ଆପଣ ନିଜ ମଧ୍ୟରେ ମଧ୍ୟ ଜାତିଭେଦ ମିଶାଇ ଦେବା ଦରକାର । ଆପଣ ଏହା ମଧ୍ୟ ଦେଖିବା ଉଚିତ୍ ଆପଣଙ୍କର ଏହି ମୁକ୍ତି ଆନ୍ଦୋଳନରେ ଆପଣମାନଙ୍କର ମହିଳାମାନେ ମଧ୍ୟ ପଛରେ ପଡ଼ି ନଯାନ୍ତି । ମୁଁ ଆମର ନବଯୁବକ ଓ ବିଦ୍ୟାର୍ଥୀମାନଙ୍କୁ ଅନୁରୋଧ କରୁଛି ସେମାନେ ନିଜ ମଧ୍ୟରେ ନିଜ ଜାତିର ସେବା କରିବାର ଭାବନା ସୃଷ୍ଟି କରନ୍ତୁ । ସେମାନଙ୍କୁ ମନେରଖିବା ଉଚିତ୍, ସେମାନେ ଯେକୌଣସି ପରିସ୍ଥିତିରେ ଥାଆନ୍ତୁନା କାହିଁକି ଭବିଷ୍ୟତରେ ଜାତିର କଲ୍ୟାଣର ଦାୟିତ୍ୱ କେବଳ ସେହି-ମାନଙ୍କୁ ହିଁ ସମ୍ଭାଳିବାକୁ ପଡ଼ିବ । କାରଣ ସ୍ୱତନ୍ତ୍ର ଭାରତରେ ସେମାନେ ଶାସକ ଜାତି ହୋଇ ରହିବେ ।

—୦—

# ରାଜନୀତି ପ୍ରତି ଉଦାସୀନତା ଓ ପୃଥକ ନୀତି ବର୍ଜନୀୟ

(ସମ୍ବିଧାନ ନିର୍ମାଣ ପରେ ୧୯୫୧ ଜୁନ ୧୨ ତାରିଖରେ ବମ୍ବେଠାରେ ସିଡ୍ୟୁଲଡ୍ କାଷ୍ଟ ଫେଡ୍ରେସନର ଏକ ସଭାରେ ବାବା ସାହେବଙ୍କର ଏକ ଓଜସ୍ୱିନୀ ବ୍ୟାଖ୍ୟାନ)

ଭାଇମାନେ ! ଏହା ଅତ୍ୟନ୍ତ ଆବଶ୍ୟକ ଯେ ଅନୁସୂଚିତ ଜାତିମାନଙ୍କୁ ରାଜନୈତିକ କ୍ଷେତ୍ରରେ ନିଜର ସାତକୁ ଅଲଗା ରଖିବାର ଭାବନାକୁ ତ୍ୟାଗ କରିବା ଉଚିତ୍ । ଯେଉଁ ସ୍ୱାଧୀନତାକୁ ଆମ୍ଭେମାନେ ଅଳ୍ପଦିନ ହେଲା ପାଇଛୁଁ ତାକୁ ସୁଦୃଢ଼ କରିବାକୁ ଅନ୍ୟ ଜାତିମାନଙ୍କ ସହ ସହଯୋଗ କରିବା ଉଚିତ୍ । କିନ୍ତୁ ଏହି ପ୍ରକାର ସହଯୋଗ କରିବା ସଙ୍ଗେ ସଙ୍ଗେ ନିଜର ସଂସ୍ଥା "ଅନୁସୂଚିତ ଜାତିସଂଘର" ପୃଥକ ଅସ୍ତିତ୍ୱକୁ କାୟମ ରଖିବା ଉଚିତ୍ । ବର୍ତ୍ତମାନ ଆମ ଲୋକମାନଙ୍କର, କଂଗ୍ରେସ ସହିତ ଆମ୍ଭମାନଙ୍କର ସମ୍ବନ୍ଧ, ବିରୋଧାତ୍ମକ ହୋଇ ଆସିଛି । ରାଜନୀତିକ କ୍ଷେତ୍ରରେ ଆମ୍ଭେ ଜଣେ ଅନ୍ୟର ଶତ୍ରୁ ହୋଇ ରହିଛୁଁ । ଆମ୍ଭମାନଙ୍କର ବିଚାର ତଥା ଆମ୍ଭମାନଙ୍କର ଦୃଷ୍ଟିବିନ୍ଦୁ କିଛି ସଙ୍କୀର୍ଣ୍ଣ ଓ ସଙ୍କୁଚିତ ହୋଇଯାଇଛି । ଆମ୍ଭେମାନେ କେବଳ ନିଜର ଜାତିଗତ ସ୍ୱାର୍ଥର ଚିନ୍ତା କରି ଆସିଅଛୁଁ । ବର୍ତ୍ତମାନ ଆମ୍ଭେମାନେ ସ୍ୱତନ୍ତ୍ରତା ଲାଭ କରିପାରିଛୁ । ତେଣୁ ଆମ୍ଭମାନଙ୍କ ଦୃଷ୍ଟିଭଙ୍ଗିରେ ଆମୂଳ ପରିବର୍ତ୍ତନ ଆଣିବା ଉଚିତ୍ । ବର୍ତ୍ତମାନ ଆମ୍ଭେ ଅନ୍ୟ ସହିତ ସହଯୋଗ କରିବା ଉଚିତ୍ । ନିଜେ ଜାତୀୟ ହିତକୁ ଦୃଷ୍ଟିରେ ରଖି ନିଜର ନବଲବ୍ଧ ସ୍ୱାଧୀନତାର ଭିତ୍ତିଭୂମିକୁ ସୁଦୃଢ଼ କରିବା ଉଚିତ୍ ।

ମୁଁ ଏ କଥାକୁ ଠିକ୍ ଭାବେ ବୁଝି ପାରୁନାହିଁ ଯେ ସିଡ୍ୟୁଲଡ୍ କାଷ୍ଟ ଫେଡ୍ରେସନର କାହିଁ ଦୁଃଖ ଗତିରେ ଭୁଷୁଡ଼ି ପଡ଼ୁଛି । ଏକଥା ଠିକ୍ ଯେ ଆମ୍ଭେମାନେ ଶକ୍ତିଶାଳୀ ହୋଇ ମଧ୍ୟ ଆମ୍ଭମାନଙ୍କର ଏକତା ବିକ୍ଷିପ୍ତ । ୧୯୫୨ରେ ନିର୍ବାଚନ ଲଢ଼େଇରେ ଫେଡ୍ରେସନର, ଖରାପ ଭାବେ ପରାଜୟ ହୋଇଥିଲା । ମୋର ଏହି ବିଶ୍ୱାସ ଥିଲା ଯେ ଆମ୍ଭମାନଙ୍କର କେତେକ ସାଥୀ ନିଜର ଜାତୀୟ ସ୍ୱାର୍ଥର ସୁରକ୍ଷା ପାଇଁ ବିଧାନ ନିର୍ମାଣ ପରିଷଦକୁ ଯିବାର ଆବଶ୍ୟକତାକୁ ଅନୁଭବ କରିବେ । କିନ୍ତୁ ବର୍ତ୍ତମାନ ସୁଦ୍ଧା ଆମ୍ଭମାନଙ୍କ ପାଇଁ, ସବୁ ଦ୍ୱାର ଝରକା ବନ୍ଦ ଅଛି । ମୋର, ମୋ ନିଜ ପାଇଁ ମଧ୍ୟ ଭରସା ନଥିଲା । ମୁଁ ବଙ୍ଗଳାରେ ଯାଇ ନିର୍ବାଚନରେ ଲଢ଼ିଲି । ଗୋଟିଏ ଯାଗାରେ ଜିତିଲି । ସେ ସମୟରେ ମୋ ମନରେ ଏକଥା

ଆସିଥିଲି ଯେ ମୁଁ ସମ୍ପୂର୍ଣ୍ଣ ଦେଶ ପାଇଁ କିଛି ବିଶେଷ କାର୍ଯ୍ୟ କରିପାରିବି । କିନ୍ତୁ ଭିତରେ ପଡ଼ିଥିଲି ପରେ ଦେଶର ସମ୍ବିଧାନ ପ୍ରଣୟନ ଦାୟିତ୍ୱ ମୋର କାନ୍ଧରେ ଲଦି ଦିଆଗଲା । ମୋର ମନେ ହେଲା, ଏହା ମୋ ଆଗରେ, ମୋ ନିଜପାଇଁ ତଥା ନିଜର ଜାତି ପାଇଁ ଏକ ସୁବର୍ଣ୍ଣ ସୁଯୋଗ ଆସିଲା । ମୁଁ ତାକୁ ସ୍ୱୀକାର କରିନେଲି । ଏହି ସମ୍ବିଧାନ ପ୍ରଣୟନ କରି ମୁଁ ସେହି ହିନ୍ଦୁମାନଙ୍କ ଠାରେ, ଯେଉଁମାନେ ଗତ ୨୦ ବର୍ଷ ଧରି ମୋତେ ଓ ମୋ ପାର୍ଟିକୁ ଅରାଷ୍ଟ୍ରୀୟ କହି ଗାଳି ଦେଉଥିଲେ, ଏହି ବିଶ୍ୱାସ ଅଣିପାରିଲି ଯେ ସେମାନଙ୍କର ସେ ସମସ୍ତ ଭାବନା ସମ୍ପୂର୍ଣ୍ଣ ଭୁଲ । ମୋର ପାର୍ଟି ଅନ୍ୟାନ୍ୟ ରାଷ୍ଟ୍ରୀୟ ପାର୍ଟିମାନଙ୍କ ପରି ତତୋଧିକ ରାଷ୍ଟ୍ରୀୟ ଓ ଦେଶଭକ୍ତ ପାର୍ଟି ଅଟେ ।

ବର୍ତ୍ତମାନ ଯୁଗ ବଦଳି ଯାଇଛି । ହିନ୍ଦୁମାନଙ୍କର ପରାଧୀନତାର ସେହି ଯୁଗ ବର୍ତ୍ତମାନ ସମାପ୍ତ ହୋଇଗଲା । ସେତେବେଳେ ଆମ୍ଭେମାନେ ନିଜର ଭବିଷ୍ୟତ ବିଷୟରେ କିଛି ବିଶ୍ୱାସ କରିପାରୁନଥିଲେ । ବର୍ତ୍ତମାନ ଆମ୍ଭମାନଙ୍କର ନିଶ୍ଚିତ ଲକ୍ଷ ଏହା ହେବା ଉଚିତ୍, ଯେଉଁ ନୂତନ ସ୍ୱାଧୀନତା ଆମ୍ଭେମାନେ ଲାଭ କଲୁ, ତାକୁ ଆମ୍ଭେମାନେ ଅଧିକରୁ ଅଧିକ ଭାବେ ସୁଦୃଢ଼ କରିବା । ଫେଡ଼୍‌ରେସନ ନିଜର ଅଲଗା ଅଲଗା ରହିବାର ମତକୁ ସମ୍ପୂର୍ଣ୍ଣ ରୂପେ ତ୍ୟାଗ କରିବା ଉଚିତ୍ । ଆମ୍ଭମାନଙ୍କ ସମାଜ ଯଦିଓ ଶ୍ରେଷ୍ଠ, କିନ୍ତୁ ଯଦି ଆମ ବର୍ତ୍ତମାନ ଅବସ୍ଥାକୁ, ଆଜି ଯାହା ଅଛି, ସେପରି ରଖାଯାଏ ତାହାହେଲେ ଆସନ୍ତା ନିର୍ବାଚନରେ ଆମ୍ଭମାନଙ୍କୁ କୌଣସି ରାଜନୀତିକ ସ୍ଥିତିର ଦୃଢ଼ତା ପାଇଁ ଅଧ୍ୟୟନ କରିବାକୁ ପଡ଼ିବ ।

—o—

# ମାଡ୍ରାସର ଜଷ୍ଟିସ ତଥା ଅବ୍ରାହ୍ମଣ ପାର୍ଟୀ

(ମାଡ୍ରାସର ପ୍ରସିଦ୍ଧ ପତ୍ରିକା "ସଣ୍ଡେ ଅବଜରଭର"ର ଏଡ଼ିଟର ଶ୍ରୀ ବି. ବାଲା ସୁବ୍ରମନ୍ୟମଙ୍କ ଦ୍ୱାରା ବାବା ସାହେବଙ୍କର ସମ୍ମାନ ପାଇଁ ୨୩ ସେପ୍ଟେମ୍ବର ୧୯୪୮ରେ ସେଠାରେ କନ୍ନୋମାର ହୋଟେଲରେ ଏକ ମଧ୍ୟାହ୍ନ ଭୋଜନ ଦିଆଯାଇଥିଲା । ଏହି ସମୟରେ ଜଷ୍ଟିସ ପାର୍ଟୀ ସମ୍ବନ୍ଧ ଆଲୋଚନା କରିବାକୁ ଯାଇ ବାବା ସାହେବ ନିଜର ଭାଷଣରେ କହିଥିଲେ) ।

ବନ୍ଧୁଗଣ ! ମୁଁ ଯାହା ଅନୁଧ୍ୟାନ କରିଛି, ସେଥିରୁ ମୁଁ କହିପାରେ, ମାନ୍ଦ୍ରାଜର ଅବ୍ରାହ୍ମଣ ପାର୍ଟୀର ସଗଠନ ଭାରତ ଇତିହାସରେ ଏକ ବିଶିଷ୍ଟ ଘଟଣା । ଏହି କଥାକୁ ଖୁବ୍ କମ ଲୋକ ବୁଝନ୍ତି । ଯଦିଓ ଏହି ପାର୍ଟୀର ଜନ୍ମ ସାମ୍ପ୍ରଦାୟିକତାର ଭିତ୍ତି ଭୂମି ଉପରେ ଗଠିତ ହୋଇଛି ଓ ସେପରି ଏହାର ନାମକରଣ ଉପରେ ପ୍ରତିଫଳିତ ହୋଇଛି, ବସ୍ତୁତ ଏହି ପାର୍ଟୀର ମୌଳିକ ଆଧାର ଓ ବାସ୍ତବ ଧ୍ୟେୟ ସାମ୍ପ୍ରଦାୟିକ ନୁହେଁ । ଏହା କୌଣସି ମହତ୍ୱପୂର୍ଣ୍ଣ କଥା ନୁହେଁ ଯେ, ଅବ୍ରାହ୍ମଣ ପାର୍ଟୀର ସଞ୍ଚାଳନ କିଏ କଲା ? ଭୁଲ କଥା ଯେ ଏହାର ସଞ୍ଚାଳନ କୌଣସି "ମଧ୍ୟ ବର୍ଗ" ଦ୍ୱାରା କରାଯାଇଛି, ଯାହା ଫଳରେ ଗୋଟିଏ ଶିରରେ ବ୍ରାହ୍ମଣ ଓ ଅନ୍ୟ ଶିରରେ ଅବ୍ରାହ୍ମଣ ଅଛୁଆଁମାନେ ସଞ୍ଚାଳିତ ହେବେ । ତଥାପି ଯଦି ଏହି ପାର୍ଟୀ ଲୋକତନ୍ତ୍ର ଉପରେ ଆଧାରିତ ନହୁଏ ତାହାହେଲେ ଏହାର କୌଣସି ମୂଲ୍ୟ ରହିବ ନାହିଁ । ଏହି କାରଣରୁ ପ୍ରତ୍ୟେକ ଲୋକତନ୍ତ୍ର ବାଦୀଙ୍କୁ ଏହି ପାର୍ଟୀର ଉନ୍ନତି ଓ ବିକାଶ ଦିଗରେ ଆଗ୍ରହାନ୍ୱିତ ହେବାର ଦେଖାଯାଉଛି । ଏହି ଦେଶର ଇତିହାସରେ ଯେଉଁଠାରେ ବ୍ରାହ୍ମଣବାଦର ଜୟ ଜୟକାର କରାଯାଉଛି, ସେଠାରେ ଅବ୍ରାହ୍ମଣ ପାର୍ଟୀର ସଗଠନ ଏକ ବିଶେଷ ଘଟଣା । ଏହାର ପରିସ୍ଥିତି ମଧ୍ୟ ସେହିପ୍ରକାର ଦୁଃଖଦାୟକ ଘଟଣା । ୧୯୩୭ ନିର୍ବାଚନରେ ପାର୍ଟୀ କାହିଁକି ସମ୍ପୂର୍ଣ୍ଣ ଧରାଶାୟୀ ହୋଇଗଲା ? ଏହା ଏକ ପ୍ରଶ୍ନ । ପାର୍ଟୀର ନେତାମାନଙ୍କୁ ନିଜ ତରଫରୁ ପଚାରିବା ଉଚିତ୍ । ନିର୍ବାଚନର ପୂର୍ବରୁ ଅନ୍ତତଃ ୧୪ ବର୍ଷ ପର୍ଯ୍ୟନ୍ତ ମାଡ୍ରାସରେ ଅବ୍ରାହ୍ମଣ ପାର୍ଟୀ ହିଁ ଶାସନାରୂଢ଼ ରହିଲ । ଏତେ ଦୀର୍ଘଦିନ ଧରି ଶାସନାଧୀନ ରହିବା ସତ୍ତ୍ୱେ ନିଜର କୌଣସି ଭୁଲ ପାଇଁ ପାର୍ଟୀ ନିର୍ବାଚନ ସମୟରେ ତାସ୍‌ର ପୃଷ୍ଠା ଓଲଟାଇଲା ପରି ଓଲଟି ଗଲା । କଣ କଥା ହେଲା ଯେ ଅବ୍ରାହ୍ମଣ ପାର୍ଟୀ, ଅଧିକାଂଶ ଅବ୍ରାହ୍ମଣ ମାନଙ୍କର ଅପ୍ରିୟ ହୋଇଗଲା ? ମୋ ମତରେ ଏହି ପତନ ପାଇଁ ଦୁଇଟି କାରଣ ଦାୟୀ । ପ୍ରଥମ କାରଣ ହେଉଛି ଏହି

ପାର୍ଟୀର ଲୋକେ ଏହି କଥାକୁ ପରିଷ୍କାର ଭାବେ ବୁଝିଲେ ନାହିଁ ଯେ ବ୍ରାହ୍ମଣ ଗୋଷ୍ଠୀଙ୍କ ସହିତ ସେମାନଙ୍କର କଣ ତଫାତ୍ ଅଛି ? ଯଦି ସେମାନେ ବ୍ରାହ୍ମଣଙ୍କ ସହି ଖୋଲି ଖୋଲି ଆଲୋଚନା କରିଥାନ୍ତେ, ତାହାହେଲେ ମଧ୍ୟ ସେମାନଙ୍କ ମଧ୍ୟରୁ କେହି ହେଲେ କେବେ ଏକଥା କହିଥାନ୍ତା ଯେ ସେମାନଙ୍କର ମତଭେଦ ନିର୍ଦ୍ଦିଷ୍ଟ ଅଟେ । ସେମାନଙ୍କ ମଧ୍ୟରେ ସ୍ୱୟଂ କେତେ ଅଧିକ ବ୍ରାହ୍ମଣବାଦ୍ ପୂରି ରହିଥିଲା । ସେମାନେ "ନାମାବଳୀ" ପରିଧାନ କରୁଥିଲେ ଓ ନିଜେ ନିଜକୁ ଅଲଗା ଶ୍ରେଣୀର ବ୍ରାହ୍ମଣ ଭାବୁଥିଲେ । ବ୍ରାହ୍ମଣ୍ୟବାଦ୍‌କୁ ଉଲାଙ୍ଗିଲା ଦେବା ପରିବର୍ତ୍ତେ ସେମାନେ ନିଜେ ବ୍ରାହ୍ମଣବାଦ୍ ନୀତିଧାରା ମଧ୍ୟରେ ବୁଡ଼ି ରହିଲେ ଏବଂ ବୁଝୁଥିଲେ ଯେ ଏହି ଆଦର୍ଶକୁ ନେଇ ସେମାନେ ନିଜର ଜୀବନ ଚରିତାର୍ଥ କରିବେ । ବ୍ରାହ୍ମଣ ମାନଙ୍କ ପ୍ରତି ଏମାନେ ଏପରି ଅନୁରକ୍ତ ଥିଲେ ଯେ ସେମାନେ ନିଜକୁ ନିମ୍ନ ଶ୍ରେଣୀର ବ୍ରାହ୍ମଣ ବୁଝୁଥିଲେ ।

ଏହା ଏକ ପାର୍ଟୀ, କୌଣସି ପ୍ରକାର ଥା-ମା କରି ତିଷ୍ଠି ପାରିଥିଲା, ଯାହାର ପରିଣତି ଏହା ହେବ ଜାଣି ନଥିଲେ । ଯେଉଁ ପାର୍ଟୀକୁ ସେମାନେ ସମର୍ଥନ କରୁଛନ୍ତି ତଥା ଯେଉଁ ପାର୍ଟୀକୁ ବିରୋଧ କରିବା ପାଇଁ ସେମାନଙ୍କୁ କୁହାଯାଉଛି ସେ ଦୁଇଟି ମଧ୍ୟରେ କଣ କଣ ନିର୍ଦ୍ଦିଷ୍ଟ ମତଭେଦ ଅଛି ତାକୁ ସ୍ପଷ୍ଟ କରି ଦେବାର ଅକ୍ଷମତା ହିଁ, ମୋ ମତରେ ପାର୍ଟୀର ପତନର କାରଣ ଅଟେ । ପାର୍ଟୀର ପତନ ହେବାର ଦ୍ୱିତୀୟ କାରଣ, ଏମାନଙ୍କର ଅତ୍ୟନ୍ତ ସଙ୍କୁଚିତ ରାଜନୈତିକ କାର୍ଯ୍ୟକ୍ରମ ଅଟେ । ଏହି ପାର୍ଟୀକୁ ଏହାର ବିରୋଧୀମାନେ ଚାକିରି ଅନୁସନ୍ଧାନୀ ପାର୍ଟୀ କହିଲେ । ମାନ୍ଦ୍ରାଜର ହିନ୍ଦୁ ପତ୍ରିକାର ବହୁ ପ୍ରକାଶନୀରେ ଏହି ପଦ ବ୍ୟବହାର କରାଯାଇଛି । ମୁଁ ସେମାନଙ୍କର ଆଲୋଚନାକୁ ଅଧିକ ଗୁରୁତ୍ୱ ଦେଉନାହିଁ । କାରଣ ଯଦି ଆମ୍ଭେମାନେ ଚାକିରି ଅନୁସନ୍ଧାନକାରୀ ଅଟୁଁ, ତାହାହେଲେ ଅନ୍ୟମାନେ ମଧ୍ୟ କମ୍ ଚାକିରି ଅନୁସନ୍ଧାନକାରୀ ନୁହନ୍ତି । ବ୍ରାହ୍ମଣ ପାର୍ଟୀର ରାଜନୈତିକ କାର୍ଯ୍ୟକ୍ରମ ମଧ୍ୟରେ ଏହା କିଛି କମ ମାତ୍ରାରେ ଅବଶ୍ୟ ନଥିଲା । ସେମାନେ ମଧ୍ୟ ନିଜ ପାର୍ଟୀର କିଛି ଯୁବକଙ୍କ ପାଇଁ ଚାକିରି ଅନୁସନ୍ଧାନ କରିବା, ନିଜର ଉଦ୍ଦେଶ୍ୟ ବୋଲି ଧରି-ନେଇଥିଲେ । ଏହା ନିଜର ସ୍ଥିତି ଦୃଷ୍ଟିରୁ ଠିକ । ମାତ୍ର ଯେଉଁ ଅବ୍ରାହ୍ମଣ ଡକ୍ଟରଙ୍କୁ ସରକାର ଚାକିରୀ ଯୋଗାଇବା ପାଇଁ, ପାର୍ଟୀ ୨୦ ବର୍ଷ ଧରି ସଂଗ୍ରାମ କରି ଆସୁଛି, ସେହି ଅବ୍ରାହ୍ମଣ ଯୁବକମାନେ କଣ ଚାକିରୀ ପାଇଲା ପରେ ପାର୍ଟୀକୁ ମନେ ପକାଉଛନ୍ତି ? ଯେଉଁ ୨୦ ବର୍ଷ ଶାସନାଧୀନରେ ରହିଲେ, ସେ ସମସ୍ତ ସମୟ ମଧ୍ୟରେ ଗାଁରେ ରହୁଥିବା ୯୦ ଭାଗ ଅବ୍ରାହ୍ମଣଙ୍କୁ ଭୁଲେଇ ଆସିଛନ୍ତି । ସେମାନେ

ଆର୍ଥିକ ସଙ୍କଟରେ ଚଢ଼ା ସୁଧଖୋର ମହାଜନମାନଙ୍କ ଜାଲରେ ବନ୍ଧା ପଡ଼ୁଅଛନ୍ତି ।

ମୁଁ ଏହି ଅତିବାହିତ ୨୦ ବର୍ଷ ମଧ୍ୟରେ, କାନୁନଗୁଡ଼ିକ ବିଷୟରେ ଅଧ୍ୟୟନ କରିଛି । ଜମି ସୁଧାରିବା ସମ୍ବନ୍ଧୀୟ କେବଳ ଗୋଟିଏ ଆଇନକୁ ପାସ୍ କରିବା ପାଇଁ ବିଶେଷତଃ ଏହି ପାର୍ଟୀ ଶ୍ରମିକ ଓ କୃଷକଙ୍କ ହିତ ପାଇଁ କିଛି ମଧ୍ୟ କରି ପାରିଲି ନାହିଁ । ତାର କାରଣ ହେଲା କଂଗ୍ରେସବାଲା ଛପିରହି ସାର କାଟି ନେଇଗଲେ ।

ଏହିସବୁ ଘଟଣା ଗୁଡ଼ିକ ଯେଉଁପରି ଭାବରେ ଘଟିଗଲା, ତାହା ଦେଖି ମୋର ବହୁତ ଦୁଃଖ ହେଲା । ଗୋଟିଏ କଥା, ଯାହାକୁ ମୁଁ ଆପଣମାନଙ୍କ ମନରେ ମୁଦ୍ରିଇ ଦେବାକୁ ଚାହୁଁଛି, ତାହା ହେଉଛି ଆପଣମାନଙ୍କର ପାର୍ଟୀହିଁ ଆପଣଙ୍କେ ପାର୍ଟୀକୁ ବଞ୍ଚାଇପାରିବା ପାଇଁ ଠିକ୍ ନେତା ବାଛିବା ଦରକାର । ପାର୍ଟୀର ମଜଭୁତ ସଂଗଠନ ଦରକାର । ପାର୍ଟୀପାଇଁ ରାଜନୀତିକ ପ୍ଲାଟଫରମ ଦରକାର । କିନ୍ତୁ ଆମ୍ଭେମାନେ ନିଜର ନେତାମାନଙ୍କ ସହ ଅଧିକ ଆଲୋଚନା ନକରି ଆମ୍ଭେ କଂଗ୍ରେସ ଆଡ଼କୁ ଚାହିଁଥାଉଁ । କେହିହେଲେ, ଅନ୍ୟ ଦେଶରେ, ଗାନ୍ଧିଙ୍କ ପରି ବ୍ୟକ୍ତିଙ୍କୁ ଭଲ ନିଜର ନେତା ସ୍ୱୀକାର କରିବ ? ଶ୍ରୀ ଗାନ୍ଧୀଙ୍କ ପାଖରେ କୌଣସି ଦୃଷ୍ଟିଭଙ୍ଗୀ ଥିଲା, ନା ସେପରି କିଛି ଜ୍ଞାନ ଥିଲା, ନା ଠିକଭାବରେ ନିର୍ଣ୍ଣୟ କରିବାର ଯୋଗ୍ୟତା ଥିଲା । ଗାନ୍ଧିଜୀ ଜୀବନସାରା ନିଜର ସାର୍ବଜନୀନ ଜୀବନରେ ଅସମର୍ଥ ହୋଇ ଆସିଛନ୍ତି । କୌଣସି ମହତ୍ତ୍ୱପୂର୍ଣ୍ଣ ଅବସର ଆସିନାହିଁ, ଯେତେବେଳେ କି ଭାରତକୁ ସଫଳତା ମିଳିଛି ଓ ଗାନ୍ଧିଜୀ ଏହି ସମୟରେ କୌଣସି ଭଲ କାମ କରିଛନ୍ତି । ଯେତେବେଳେ ଶ୍ରୀ ଜିନ୍ନା ପାକିସ୍ଥାନ କଥା ଆଲୋଚନା କରୁଥିଲେ, ଦୁଇତିନି ବର୍ଷ ଗାନ୍ଧିଜୀ କେବଳ ପାପ ବୋଲି କହି ନୀରବ ରହିଲେ, ଏହି ଆଲୋଚନା ଦିଗରେ ଅଧିକ ଧ୍ୟାନ ଦିଆଗଲା ନାହିଁ । ଶେଷରେ ଜିନ୍ନା ଯେତେ-ବେଳେ ଅଗ୍ନି ସ୍ୱରୂପ ହୋଇ ଠିଆ ହେଲେ ତ ଗାନ୍ଧିଜୀ ଡ଼ରିଗଲେ । ପୁଣି ସେ ଏକା ଥରକେ ଓଲଟି ଗଲେ ଓ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରିବାକୁ ଲାଗିଲେ, କିନ୍ତୁ ଏହି ଭ୍ରାନ୍ତିର ସ୍ୱରୂପ ହୋଇ ସେ ନେତା ହୋଇ ରହିଲେ । କାରଣ କଂଗ୍ରେସରେ କୌଣସି କାଳେ ନିଜର ନେତାଙ୍କୁ ପରୀକ୍ଷା କରି ନଥାନ୍ତି ।

ବର୍ତ୍ତମାନ ମୁଁ ଶ୍ରୀଯୁକ୍ତ ଜିନ୍ନା ବିଷୟ କହୁଅଛି । ସେ ଏକ ସ୍ୱେଚ୍ଛାଚାରୀ ନିରଙ୍କୁଶ ନେତା ଥିଲେ । ଆପଣମାନଙ୍କୁ ଏହା ଜାଣି ଆଶ୍ଚର୍ଯ୍ୟ ଲାଗିବ, ସାରା ମୁସଲିମ ଲିଗ୍ କେବଳ ଜିନ୍ନାଙ୍କ ହାତର ଖେଳନା ଥିଲା । କିନ୍ତୁ ମୁସଲମାନମାନେ

ତାଙ୍କ ନିଜର ବିଶ୍ୱାସମାନ୍ୟ ନେତା ବାଛି କରି ଠିକ୍ କରିଥିଲେ । କଂଗ୍ରେସ ଜାଣି ଥିଲା, ଯଦି ଆମେ ଗାନ୍ଧିଙ୍କ କିଛି ନା କିଛି ଟିକାଟିପଣି କରିବୁ ତାହା ହେଲେ କଂଗ୍ରେସ ସଂସ୍ଥାର ଆପେ ଆପେ ଭାଙ୍ଗିଯିବାର ଭୟ ଅଛି । ଏହି କାରଣରୁ ଗାନ୍ଧିଜୀଙ୍କର ବହୁତ କଥା ଯାହାକି ଲୋକତନ୍ତ୍ରର ବିରୁଦ୍ଧରେ, ସେ ନବୁକୁ ମାନି ନେବାକୁ ପଡ଼ୁଥିଲା । ଏହି କାରଣରୁ ମୁଁ ଅବ୍ରାହ୍ମଣମାନଙ୍କୁ କହୁଛି ଏକତା ସବୁଠାରୁ ମୂଲ୍ୟବାନ ବିଷୟ । ସମସ୍ତ ଥାଉଁ ଥାଉଁ ଏହି ଶିକ୍ଷାକୁ ହୃଦୟରେ ସ୍ଥାନ ଦେବା ଉଚିତ୍ ।

—o—

## ସମ୍ବିଧାନ ନିର୍ମାଣ ଓ ସାମ୍ପ୍ରଦାୟିକ ସମସ୍ୟା

(କମ୍ୟୁନାଲ୍ ଆୱାର୍ଡ୍ ବିରୁଦ୍ଧରେ ଗାନ୍ଧିଜୀଙ୍କ ଆମରଣ ଅନଶନ, ହିନ୍ଦୁ ନେତାମାନଙ୍କ ଉପରେ ଖୁବ୍ ଚାପ ପକାଇଲା । ମହାତ୍ମାଜୀଙ୍କର ଜୀବନ ରକ୍ଷାକର ଜୀବନ ରକ୍ଷା କର, ବୋଲି ହା–ହା କାର କ୍ରନ୍ଦନରେ ବାଧ୍ୟ ହୋଇ ଅଛୁଆଁମାନଙ୍କ ଉଚିତ୍ ଅଧିକାରଗୁଡ଼ିକ ସାବ୍ୟସ୍ତ କରିବାର ବିରୋଧୀମାନଙ୍କ ସମସ୍ତ ଯୁକ୍ତିକୁ କଡ଼ାକଡ଼ି ଭାବେ ଖଣ୍ଡନ କରି ପୁନା ପ୍ୟାକ୍ଟ କରି ନେଇ ଥିଲେ । କିନ୍ତୁ ମୁସଲମାନମାନଙ୍କୁ କୌଣସି ମତେ ବୁଝାଇ ହେଲା ନାହିଁ । ସମଗ୍ର ହିନ୍ଦୁ ଗୋଷ୍ଠୀ କୁଣ୍ଠିତ ଭାବେ ନୀରବ ରହିଲେ । କଥାରେ ଅଛି ହିନ୍ଦୁ ବୁଦ୍ଧି କେବଳ ଦୁର୍ବଳ ଧାରୁରେ ଚଳଇ । ସବଳମାନଙ୍କ ପାଖରେ ଯେଁ ଯେଁ କର- ଆନ୍ତି । ଏହି ସମୟରେ ବାବା ସାହେବ ଦେଶର ଅଖଣ୍ଡତାର ସୁରକ୍ଷା ଓ ସାମ୍ପ୍ରଦାୟିକ ସମସ୍ୟାର ସମାଧାନ ପାଇଁ ଗୋଟିଏ ସୂତ୍ର ବାହାର କରିଥିଲେ । କିନ୍ତୁ ତାଙ୍କର ସେହି ନ୍ୟାୟ ପୂର୍ଣ୍ଣ ସମାଧାନକୁ କେହି ମାନିଲେ ନାହିଁ । ତାକୁ ବୁଝିବାକୁ କେହି ପ୍ରସ୍ତୁତ ହେଲେ ନାହିଁ । ଅଗଷ୍ଟ ୧୫ ତାରିଖ ୧୯୪୭ରେ ପୂର୍ଣ୍ଣ ପ୍ରଭୁତ୍ୱସମ୍ପନ୍ନ ସ୍ୱତନ୍ତ୍ରତାର ଘୋଷଣା ହେଲେ ମଧ୍ୟ ଅଧିକାରର ପରିବର୍ତ୍ତନ ନାମରେ ହିନ୍ଦୁ ମୁସଲମାନମାନେ ଯେଉଁ ଭୟଙ୍କର ଓ ରୋମାଞ୍ଚକର ସଂଘର୍ଷ, ଲୁଟତରାଜ

ହତ୍ୟା, ଗୃହଦାହ ଏବଂ ଅପହରଣ କାଣ୍ଡ ସୃଷ୍ଟି କଲେ, ତାର ଷ୍ପନ୍ଦନ ଅଦ୍ୟାବଧି ବିଦ୍ୟମାନ । ଏ ସମୟରେ ମଧ୍ୟ ହିନ୍ଦୁଙ୍କ ମଗଜରେ ଏହା ମଧ୍ୟ ଆସିଲା ନାହିଁ ଯେ ପଶ୍ଚିମ ପାକିସ୍ଥାନରୁ ତଡ଼ି ଦିଆଯାଇଥିବା ସରଣାର୍ଥୀମାନଙ୍କୁ କାଶ୍ମିରଠାରେ ସଂସ୍ଥାପିତ କରିଯାଇ ପାରିଥାନ୍ତା । ଆମ କାଶ୍ମିରର ସୀମା ଆଜ ଦୃଢ ହୋଇଥାନ୍ତା ଏବଂ ଶତ୍ରୁମାନଙ୍କର ହେଷ୍ଟ ପେଷ୍ଟ ଚଳନଥାନ୍ତା । ଝଗତ୍ୟା ବାବାସାହେବ ଯେଉଁ ସମ୍ବିଧାନର ସୂଚ ଧରିଇ ଦେଇଥିଲେ, ଏହାର ସାରାଂସ ସେ ବମ୍ବେଠାରେ, ମେଁ ମାସ, ୬ ତାରିଖରେ ୧୯୪୫ରେ ସିଡୁଲଡ କାଷ୍ଟ ଫେଡରେସନ୍‌ର ଏକ ସଭାରେ ବ୍ୟାଖାନ କରିଥିଲେ )

ଭାଇମାନେ, ମୋର ଏହାହିଁ କହିବାର କଥା ଯେ ଭାରତର ଲୋକମାନେ ଯଦି ସର୍ବୋତ ଭାବରେ ସ୍ୱତନ୍ତ୍ର ସ୍ୱରାଜ୍ୟ ଚାହାନ୍ତି, ତା ହେଲେ ସେମାନଙ୍କ ପାଇଁ ଦରକାର ହେଉଛି, ନିଜର ସମ୍ବିଧାନ ନିଜେ ତିଆରି କରନ୍ତା । ଏହି ଜମାଦାର ମାଠରେ କେହି ଭାଗ ବସାଇ ପାରିବେନାହିଁ । ପ୍ରଥମେ ଏହା ହୋଇପାରିଥାନ୍ତା ଯେ ବ୍ରିଟିଶ ସରକାର କୌଣସି ସମ୍ବିଧାନ ତିଆରିକରି ଭାରତ ଉପରେ ଲଦି ଦିଆଯାଇ ଥାନ୍ତା କିନ୍ତୁ ବର୍ତ୍ତମାନ ଆଉ ସେ ସମୟ ନାହିଁ । ଯେଉଁ ପ୍ରକାରର ସମ୍ବିଧାନକୁ ଭାରତୀୟ ଲୋକେ ଗ୍ରହଣ କରିବେ, ତାହାର ରୂପରେଖ ଆମ୍ଭମାନଙ୍କ ମନରେ ସ୍ପଷ୍ଟ ହେବା ଉଚିତ୍ । ଯେଉଁ ବିଧାନ, ଆମ୍ଭମାନଙ୍କ ଉପରେ ଲଦି ଦିଆଯିବ ସେଥିରେ ଆମ୍ଭମାନଙ୍କର କାମ ଚଳିବ କି ନାହିଁ ଅଧ୍ୟୟନ କରାଯିବ । ବ୍ରିଟିଶ ଲୋକମାନଙ୍କ ପାଇଁକ ଏପରି କୌଣସି ସମ୍ବିଧାନ ତିଆରି କରିବା ସମ୍ପୂର୍ଣ୍ଣ ବେକାର । କାରଣ ତାକୁ ଲାଗୁ କରିବା ପାଇଁ ସେମାନେ ଭାରତରେ ରହିବେ ନାହିଁ । ଭାରତରେ ମଧ୍ୟ ଯଦି କୌଣସି ଶକ୍ତିଶାଳୀ ଗୋଷ୍ଠୀ ବା ଶ୍ରେଣୀ ଗୋଟିଏ ସମ୍ବିଧାନ ତିଆରି କରି ଅନ୍ୟ ଗୋଷ୍ଠୀ ଉପରେ ଜବର ଦସ୍ତ ଲଦି ଦେବାକୁ ପ୍ରୟାସ କରନ୍ତି, ତାହା ହେଲେ ଏହାର ଏହି ଦଶା ହେବ ।

ଗୋଟିଏ ସୁବିଧା କଥା ହେଲା, ୧୯୩୫ର Govt of India Actରେ ଭାରତୀୟ ସମ୍ବିଧାନ, ଏପରି ବିସ୍ତୃତ ଭାବେ ଅଛି ଯେ ଏହି କାର୍ଯ୍ୟକୁ ପୁଣି ଥରେ କରିବାକୁ ହେଲେ ବିଧାନ ନିର୍ମାଣ ସମିତିର ସଙ୍ଗଠନଗୁଡ଼ିକୁ ବାଦ ଦିଆହୋଇ ପାରିବ । କିନ୍ତୁ ପୂର୍ଣ୍ଣ-ପ୍ରଭୁ-ସତ୍ତା ସମ୍ପନ୍ନ ସ୍ୱତନ୍ତ୍ର ଭାରତର ସମ୍ବିଧାନ ସେତେବେଳେ ଯାଇ ନିର୍ମାଣ କରାଯାଇ ପାରିବ ଯେତେବେଳେ ଏଥିପାଇଁ ସବୁ ଶ୍ରେଣୀ ଓ ସବୁ ସମ୍ପ୍ରଦାୟର ପୂର୍ଣ୍ଣ ସହଯୋଗ ମିଳିବ ।

ଭାରତର ସାମ୍ପ୍ରଦାୟିକ ସମସ୍ୟା ଏକ ବିଷମ ସମସ୍ୟା । ଏହାର ସମାଧାନ ଗୁରୁତ୍ୱ ହେବା ଉଚିତ ଏବଂ ପ୍ରଭାବଶାଳୀ ଢଙ୍ଗରେ, ଏହା ହେବା ଉଚିତ୍ । ଏହି ବହୁମତ ଓ ଅଳ୍ପମତ ସାମ୍ପ୍ରଦାୟିକ ସଂଘର୍ଷର ବହୁମତ ଠାରୁ ଅଳ୍ପମତ ସାମ୍ପ୍ରଦାୟମାନଙ୍କୁ କିଛି ଅଧିକ ପ୍ରତିନିଧିତ୍ୱ ଦିଆଯାଇପାରିବ । କିନ୍ତୁ ଏହା ଯେକୌଣସି ଅବସ୍ଥାରେ ନିରପେକ୍ଷ ରହିବ । ବହୁମତ ପାଖରେ ଅନୁରୋଧ କରି ପାରିବ ନାହିଁ । ଯେଉଁ ପ୍ରାନ୍ତରେ ହିନ୍ଦୁମାନଙ୍କର ବହୁମତ ଅଛି ସେଠାରେ ମଧ୍ୟ ଏହି ସିଦ୍ଧାନ୍ତକୁ ସମ୍ମାନ ମିଳିବା ଉଚିତ୍ ଏବଂ ଯେଉଁ ପ୍ରାନ୍ତରେ ମୁସଲ୍‌ମାନମାନଙ୍କ ବହୁମତ, ସେଠାରେ ମଧ୍ୟ ଏହି ସିଦ୍ଧାନ୍ତକୁ ସମ୍ମାନ ମିଳିବା ଉଚିତ୍ । ମୋର ଏହା କହିବାର ତାତ୍ପର୍ଯ୍ୟ ହେଉଛି କେହି କେଉଁଠାରେ ବହୁମତ ସମ୍ପ୍ରଦାୟକୁ ଶତକଡ଼ା ୫୦ ଭାଗରୁ ଅଧିକ ପ୍ରତିନିଧିତ୍ୱ ନଦେବା ଉଚିତ୍ ।

କଂଗ୍ରେସୀ ହିନ୍ଦୁ, ଭାରତର ଏହି ସାମ୍ପ୍ରଦାୟିକ ସମସ୍ୟାକୁ ସମାଧାନ କରିପାରିବେ ନାହିଁ । ଏହାକୁ ଏକ ନୂଆ ଢଙ୍ଗରେ ସମାଧାନ କରିବା ଉଚିତ୍ । ଏପର୍ଯ୍ୟନ୍ତ ଏ ସମସ୍ୟାକୁ ସମାଧାନ କରିବାକୁ ଯେଉଁ ଚେଷ୍ଟା କରାଗଲା ତାହା "ଯାହାର ଲଠି ତାହାର ମଇଁଷି" ପରି ହେଲା । ବର୍ତ୍ତମାନ ସୁଧା ମୁଁ ଯେଉଁ ଅସୀମ ସନ୍ତୁଷ୍ଟିକରଣ ନୀତିର ଅନୁସରଣ କରି ଆସିଲି, ଏହାଠାରୁ ବଳି ଅନ୍ୟ କିଛି ସୁବିଧା କଥା ହୋଇପାରିବ ନାହିଁ । ଗୋଟିଏ ବର୍ଗରୁ ଦାବୀ କରିବାରେ କୌଣସି ସୀମା ନାହିଁ । ଏହା ହେଉଛି, ଏହି ସିଦ୍ଧାନ୍ତକୁ କେହି ସ୍ୱୀକାର କଲେ ନାହିଁ । ଯାହା ଫଳରେ ଯେଉଁ ପାର୍ଟୀଗୁଡ଼ିକ ସାମ୍ପ୍ରଦାୟିକ ସମସ୍ୟା ସହ ସମ୍ପୃକ୍ତ, ସେଗୁଡ଼ିକ ମାନିନେବାକୁ ପଡ଼ିଲା ।

ଏହି ବିଷୟରେ ମୋର ବକ୍ତବ୍ୟ ଦୁଇଟି କଥା ଉପରେ ନିର୍ଭର କରୁଛି । ପ୍ରଥମ କଥା ହେଲା ସାମ୍ପ୍ରଦାୟିକ ସମସ୍ୟା ସମାଧାନ ପାଇଁ ଆମ୍ଭେମାନେ ଏପରି ସିଦ୍ଧାନ୍ତକୁ ଲକ୍ଷ୍ୟ କରିବା ଏକାନ୍ତ ଆବଶ୍ୟକ ଯାହା ଉପରେ ନିର୍ଭର କରି ଶେଷ ସିଦ୍ଧାନ୍ତ ବାହାର କରାଯାଇପାରିବ । ଦ୍ୱିତୀୟ କଥା, ଏହା ହେଉଛି, ଯେଉଁ ସିଦ୍ଧାନ୍ତକୁ ଆମ୍ଭେମାନେ ଧାର୍ଯ୍ୟ କଲେ, ତାହା ବିନା ଭୟ ଓ ବିନା ପକ୍ଷପାତରେ ସମସ୍ତଙ୍କ ଉପରେ ଲାଗୁ କରାଯାଉ । ସାମ୍ପ୍ରଦାୟିକ ସମସ୍ୟା ତିନୋଟି ଉପଲବ୍ଧି ଉପରେ ନିର୍ଭର କରେ । ତାହା ହେଉଛି ବିଧାନ ସଭାରେ ସଦସ୍ୟଙ୍କ ସଂଖ୍ୟା, ମନ୍ତ୍ରୀମଣ୍ଡଳରେ ଅଧିକାର ଓ ସରକାରୀ ଚାକିରୀ ଲାଭ । ମୁଁ ଏହି ସିଦ୍ଧାନ୍ତକୁ ସମାଧାନ କରିବାକୁ ଚାହୁଁଛି, ଯାହାକି ଏହି ତିନୋଟି ପ୍ରତି ଲାଗୁ ହେବ । ଯେଉଁ ପର୍ଯ୍ୟନ୍ତ ସରକାରୀ ଚାକିରୀର ପ୍ରଶ୍ନ ଅଛି, ସେଠାରେ ଏହାହିଁ କରିବା କଥା । ଯେଉଁ ପ୍ରଶାସନମାନ

ସୃଷ୍ଟି ତାର ଅନୁପାତକୁ ଆଇନରୂପ ଦିଆଯାଉ । ମନ୍ତ୍ରୀମଣ୍ଡଳରେ ହିନ୍ଦୁ, ମୁସଲମାନ ଓ ଅଛୁତ ମାନଙ୍କର ଏହି ଅନୁପାତ ରହିବା ଉଚିତ୍, ଯାହା ବିଧାନ ସଭାରେ ରହୁଛି । ଯେଉଁ ପର୍ଯ୍ୟନ୍ତ ଅନ୍ୟ ଅଲ୍ପମତାବଲମ୍ବୀଙ୍କ ସମ୍ବନ୍ଧ, ସେମାନଙ୍କ ପାଇଁ ମଧ୍ୟ ଗୋଟିଏ କମ୍ବା ଦୁଇଟି ସ୍ଥାନ ସୁରକ୍ଷିତ ହେବା ଉଚିତ୍ । ଏହା ଏକ ଗ୍ରହଣୀୟ ପଦ୍ଧତିର ରୂପଦେବା ଉଚିତ୍ । ପାର୍ଲିଆମେଣ୍ଟାରୀ ସେକ୍ରେଟାରୀମାନଙ୍କ ମୁଖ୍ୟ ହେବା ପରେ ଏହି ଅଳ୍ପମତ ଥିବା ଲୋକଙ୍କୁ ମଧ୍ୟ ନଜର ପ୍ରତିନିଧିତ୍ୱ ପାଇଁ ଉଚିତ୍ ସୁଯୋଗ ଦେବା ଦରକାର । ମନ୍ତ୍ରୀମଣ୍ଡଳରେ ଆମେ ଏହି ସିଦ୍ଧାନ୍ତ ଅନୁଯାୟୀ କାର୍ଯ୍ୟ କରିପାରିବୁ । ପ୍ରଥମ କଥା ହେଉଛି ନିର୍ବାଚନରେ ଯେଉଁ ପକ୍ଷ ବହୁମତ ଲାଭକରେ ତାହା କଣ ସବୁ ଲୋକଙ୍କର ବିଶ୍ୱାସର ପାତ୍ର ହୋଇପାରିବ ? ଭାରତୀୟ ପରିସ୍ଥିତିରେ ଏକଥା ଠିକ୍ ନୁହେଁ । ଭାରତର ବହୁମତ, ସାମ୍ପ୍ରଦାୟିକ ବହୁମତ ବ୍ୟତୀତ ରାଜନୀତିକ ବହୁମତ ନୁହେଁ । ଏ ପ୍ରକାର ପରିସ୍ଥିତି ଯୋଗୁଁ ଯେଉଁକଥା ଇଂଲଣ୍ଡର ପରିସ୍ଥିତିରେ ଠିକ୍ ବୋଲି ଗ୍ରହଣୀୟ, ସେ କଥା ଭାରତରେ ଠିକ୍ ବୋଲି ଗ୍ରହଣୀୟ ହୋଇ ନପାରେ । ଦ୍ୱିତୀୟ କଥା ହେଉଛି ମନ୍ତ୍ରୀମଣ୍ଡଳ ପାଇଁ ବିଧାନସଭାରେ ଯେଉଁପକ୍ଷର ବହୁମତ ଅଛି, ସେହି ପକ୍ଷରେ କମିଟି ଗଠନ କରିବାର କଥାକୁ ମଧ୍ୟ ବନ୍ଦକରିବାକୁ ହେବ । କମିଟୀ ଏହିପରି ଗଠନ ହେବ, ତାହା କେବଳ ପାର୍ଲିଆମେଣ୍ଟାରୀ ହେବା ଉଚିତ୍ । ଯାହାର ଉଦ୍ଦେଶ୍ୟ ଏହିଯେ ବିଧାନ ସଭାର କାଳ ସମାପ୍ତ ହେଲା ପର୍ଯ୍ୟନ୍ତ ଏହାକୁ ସ୍ଥିର ରଖିବା ଉଚିତ୍ । ଦ୍ୱିତୀୟ ଅର୍ଥରେ ଏହା ପାର୍ଲିଆମେଣ୍ଟାରୀ ହେବା ଉଚିତ୍ । ଯାହାକି ଶାସନ ବିଭାଗର ସଦସ୍ୟ ମଧ୍ୟ ବିଧାନ ସଭାର ସଦସ୍ୟ ଭାବେ ବିଚାରାଯାଇ ପାରିବେ । ଯାହା ଫଳରେ ଏମାନେ ଲୋକ ସଭାରେ ବସିବାପାଇଁ, କହିବାପାଇଁ, ମତପ୍ରକାଶ ଓ ପ୍ରଶ୍ନର ଉତ୍ତର ଦେବାର ଅଧିକାର ପ୍ରାପ୍ତ ହୋଇପାରିବେ ।

—o—

## ପ୍ରଧାନମନ୍ତ୍ରୀ ନିର୍ବାଚନ

କେବଳ ପ୍ରଧାନମନ୍ତ୍ରୀ ଶାସନ ବିଭାଗର ମୁଖ୍ୟ ଅଟନ୍ତି । ଏହି କାରଣରୁ ତାଙ୍କୁ ସମସ୍ତ ଲୋକସଭାର ବିଶ୍ୱାସ ଭାଜନ ହେବା ଉଚିତ୍ । ମନ୍ତ୍ରୀମଣ୍ଡଳରେ ଯେଉଁ ଲୋକ କୌଣସି ବହୁମତର ପ୍ରତିନିଧିତ୍ୱ କରେ, ତାହାକୁ ବିଧାନସଭାରେ, ସେ ଯେଉଁ ଗୋଷ୍ଠୀର ସଦସ୍ୟ ହେବ, ସେ ତାର ବିଶ୍ୱାସ ଭାଜନ ହେବା ଉଚିତ୍ । ମନ୍ତ୍ରୀମଣ୍ଡଳରେ କୌଣସି ସଦସ୍ୟଙ୍କୁ ସେତିକବେଳେ ତା ନିଜ ପଦବୀରେ ଅପଦସ୍ତ କରାହେବ, ଯେତେବେଳେ ଲୋକସଭାରେ ତା ବିରୁଦ୍ଧରେ ଭ୍ରଷ୍ଟାଚାର ବା ଦେଶ-

ଦ୍ରୋହର ଅଭିଯୋଗ ଅଣାଯାଇ ପାରିବ । ଏହି ସିଦ୍ଧାନ୍ତର ଅନୁସରଣ କରି ମୋ'ର ପ୍ରସ୍ତାବ ହେଉଛି, ପ୍ରଧାନମନ୍ତ୍ରୀ ତଥା ବହୁମତ ଲାଭକରିଥିବା ଦଳର ମନ୍ତ୍ରୀ ମଣ୍ଡଳର ସଦସ୍ୟଗଣ ନିର୍ବାଚନରେ "ଭୋଟ" ଦ୍ୱାରା ନିର୍ବାଚିତ ହେବା ଉଚିତ୍ । ଏହି ପ୍ରକାର ମନ୍ତ୍ରୀମଣ୍ଡଳରେ ଯେଉଁ ଭିନ୍ନ ଭିନ୍ନ ଅଳ୍ପ ମତାବଲମ୍ବୀ ସଦସ୍ୟ ରହିବେ ସେମାନଙ୍କୁ ପଦ ହସ୍ତାନ୍ତରିତ କରାଯାଉଥିବ, ତାହା ଭୋଟ ଦ୍ୱାରା ହେବା ଉଚିତ୍ ।

ଯେଉଁପର୍ଯ୍ୟନ୍ତ ବିଧାନସଭାରେ ପ୍ରତିନିଧିତ୍ୱର ପ୍ରଶ୍ନ ଅଛି, ସେ ପର୍ଯ୍ୟନ୍ତ କେନ୍ଦ୍ରୀୟ ସଭାର ଶତକ ସଂଖ୍ୟାର ଅନୁକରଣ କରାଯାଇ ପାରିବ । ହିନ୍ଦୁ, ଯେ କି ଜନସଂଖ୍ୟାର ୪୫.୬୮ ଶତକ, ସେମାନେ ୪୦ ପ୍ରତିଶତକର ଅଧିକାରୀ ଅଟନ୍ତି । ମୁସଲମାନ, ଯେ କି ୨୮.୫ ପ୍ରତିଶତକ ସେମାନେ ୩୨ ଶତକର ଅଧିକାରୀ ଅଟନ୍ତି । ଅଛୁତ୍ ଜାତିର ଲୋକେ, ଯେଉଁମାନେ ୧୪.୨ ପ୍ରତିଶତକ ଅଟନ୍ତି, ସେମାନେ ୨୦ ପ୍ରତିଶତକର ଅଧିକାରୀ ଅଟନ୍ତି । ଭାରତୀୟ ଇସାଇ, ଯେ କି ୧.୧୬ ପ୍ରତିଶତକ ଅଟନ୍ତି, ୬ ପ୍ରତିଶତକର ଓ ଶିଖ ଯେ କି ୧.୪୯ ପ୍ରତିଶତକର ଅଧିକାରୀ ସେମାନେ ୪ ପ୍ରତିଶତକର ଅଧିକାରୀ ଅଟନ୍ତି । ଆଙ୍ଗ୍ଲୋ ଇଣ୍ଡିଆନ ୦.୫ ପ୍ରତିଶତକ (ଜନଗଣନାର ସଂଖ୍ୟାରେ ଆଦିବାସୀମାନଙ୍କ ସଂଖ୍ୟା କମାଇ ଦିଆଯାଇଛି) ଏହି ହିସାବରେ ବମ୍ବେଠାରେ ଯେତେବେଳେ ହିନ୍ଦୁ ଜନସଂଖ୍ୟା ୭୬.୪୨ ଭାଗ ଅଟେ, ବିଧାନସଭାରେ ୪୦ ପ୍ରତିଶତକର ଅଧିକାରୀ ହେବେ । ମୁସଲମାନ ଯେ ୯.୯୮ ଅଟନ୍ତି ସେମାନେ ୨୮ ପ୍ରତିଶତକର ଅଧିକାରୀ ହେବେ । ଅଛୁତ ଶ୍ରେଣୀ ଯେ କି ୯.୬୧ ପ୍ରତିଶତକ, ଏମାନଙ୍କୁ ମଧ୍ୟ ୨୮ ପ୍ରତିଶତକ, ଭାରତୀୟ ଇସାଇ, ୧.୭୫ ପ୍ରତିଶତକ ଅଟନ୍ତି । ସେମାନଙ୍କୁ ୯ ପ୍ରତିଶତକ, ଆଙ୍ଗଲୋ ଇଣ୍ଡିଆନ ଯେ କି ୦.୦୭% ଅଟନ୍ତି ସେମାନଙ୍କୁ ମଧ୍ୟ ୧% ପାର୍ସି ଯେ କି ୦.୪୪ ସେମାନେ ୧% ଅଧିକାରୀ ଅଟନ୍ତି ।

ପଞ୍ଜାବରେ ଯେଉଁଠାରେ ମୁସଲମାନ ଜନସଂଖ୍ୟା ୫୬.୦୬% ବିଧାନ-ସଭାରେ ୪୦% ସ୍ଥାନରେ ଅଧିକାରୀ, ୨୨.୧୬ ଭାଗ ହିନ୍ଦୁମାନଙ୍କର ୨୮% ପ୍ରତିନିଧିତ୍ୱ ମିଳିବ । ଶିଖମାନଙ୍କୁ ଯେଉଁଠି ୧୩.୨୨% ଅଛନ୍ତି ସେମାନଙ୍କୁ ୨୧% ଅଛୁତ ଶ୍ରେଣୀ ଯେଉଁଠି ୪.୩୨% ଅଟନ୍ତି ସେମାନଙ୍କୁ ୯% ପ୍ରତିନିଧିତ୍ୱ ମିଳିବା ଉଚିତ୍ । ଭାରତୀୟ ଇସାଇ ଯେ କି ୧.୭୧% ସେମାନଙ୍କୁ ଶତକଡା ୨ ପ୍ରତିନିଧିତ୍ୱ ମିଳିବ ।

—୦—

# ଶାସନ ସଂସ୍ଥାରେ ପ୍ରତିନିଧିତ୍ୱ ପାଇଁ ସିଦ୍ଧାନ୍ତ

## ଏହି ଭାଗବାଣ୍ଟ ନିମ୍ନଲିଖିତ ଅନୁଯାୟୀ କରାଗଲା

୧- ସିଦ୍ଧାନ୍ତ ଦୃଷ୍ଟିରୁ ମତାଧିକ ଶାସନର ସମର୍ଥନ କରାଯାଇ ପାରିବ ନାହିଁ। କାର୍ଯ୍ୟକାରିତାରେ ମଧ୍ୟ ଏହା ଅନ୍ୟାୟପୂର୍ଣ୍ଣ ହେବ। ଯେଉଁ ସଂପ୍ରଦାୟର ମତାଧିକ ହେବ, ତାକୁ ଅନ୍ୟ ସଂପ୍ରଦାୟ ଅପେକ୍ଷା ଅଧିକ ପ୍ରତିନିଧିତ୍ୱ ଦିଆଯାଇପାରିବ, କିନ୍ତୁ ନିରପେକ୍ଷ ମତାଧିକ ଏହା ହୋଇ ପାରିବ ନାହିଁ।

୨- ଯେଉଁ ସଂପ୍ରଦାୟର ମତାଧିକ ହେବ, ତାକୁ ମଧ୍ୟ ଯେଉଁ ପରିମାଣରେ ଅଧିକ ପ୍ରତିନିଧିତ୍ୱ ଦିଆଯିବ, ଏହା ଏତେ ଅଧିକ ହେବା ଉଚିତ୍ ନୁହେଁ, ଯାହା ଫଳରେ ସେମାନେ ସବୁଠାରୁ ଶ୍ରେଷ୍ଠ ଯେଉଁ ସଂପ୍ରଦାୟ ଅଛନ୍ତି, ସେମାନଙ୍କର ଅଧିକାରକୁ ନେଇ ଶାସକ ସଂପ୍ରଦାୟ ବଳଶାଳୀ ହୋଇ ପାରିବ।

୩- ଲୋକସଭା ବା ବିଧାନସଭାରେ ସ୍ଥାନର ଭାଗବାଣ୍ଟ ଏପରି ଭାବରେ ହେବା ଉଚିତ୍ ଯାହାଦ୍ୱାରା ମତାଧିକ ସଂପ୍ରଦାୟ ଆପେ ଆପେ ମିଳିତ ହୋଇ ସର୍ବାଧିକ ମତାଧିକ ହୋଇପାରିବ ନାହିଁ। ଯାହାଦ୍ୱାରା ଅଳ୍ପମତ ସଂପ୍ରଦାୟ ପ୍ରତି ବିପଦର କାରଣ ହୋଇ ଛିଡ଼ାହୋଇ ପାରିବାକୁ ସମର୍ଥ ହୋଇ-ପାରିବ ନାହିଁ।

୪- ଭାଗବାଣ୍ଟ ଏପରି ହେବା ଉଚିତ ଯେ, ସମସ୍ତ ଅଳ୍ପମତ ଗୋଷ୍ଠୀ ମିଳି ଯିବେତ ସେମାନେ ବହୁମତ ସମ୍ପ୍ରଦାୟ ଉପରେ କୌଣସି ନିର୍ଭର ନକରି ନିଜର ସରକାର ଗଢିପାରିବେ।

୫- ବହୁମତ ବାଲାଙ୍କ ପ୍ରତିନିଧିତ୍ୱରୁ ଯେତିକ ଅଂଶ କମାଇ ଦିଆଯିବ ତାହା ଅଳ୍ପମତଧାରୀମାନଙ୍କ ମଧ୍ୟରେ ସେମାନଙ୍କ ସାମାଜିକ ଆର୍ଥିକ ତଥା ଶିକ୍ଷାର ସ୍ଥିତି ଅନୁଯାୟୀ ଏଭଳି ଅନୁପାତିକ ଭାବେ ବଣ୍ଟାଯିବ, ଯେ ମତାଧିକ ସମ୍ପ୍ରଦାୟ ଲୋକେ ଯେତେ ଅଧିକ ହେଉନଥିବା କାହିଁକି, ସାମାଜିକ ଆର୍ଥିକ ଓ ଶିକ୍ଷା କ୍ଷେତ୍ରରେ ଯେତେ ଖାତି ସମ୍ପନ୍ନ ହେଉନଥିବା କାହିଁକି

ସେମାନଙ୍କୁ କମସ୍ଥାନ ମିଳିବ ଓ ଅଳ୍ପମତ ସମ୍ପ୍ରଦାୟର ଲୋକେ ଯେତେ ଶ୍ରେଷ୍ଠ ହୋଇନଥିଲେ କାହିଁକି ସାମାଜିକ ଆର୍ଥିକ ତଥା ଶିକ୍ଷା କ୍ଷେତ୍ରରେ ଯେତେ ଖରାପ ହେଲେ ମଧ୍ୟ ତାଙ୍କୁ ଅଧିକ ସ୍ଥାନ ମିଳିବ ।

ଯେଉଁ ପ୍ରତିନିଧିତ୍ୱପାଇଁ ମୁଁ ପ୍ରସ୍ତାବ କରିଥିଲି ସେହି ଅନୁଯାୟୀ କୌଣସି ଦଳରୁ ଅତ୍ୟଧିକ ଅଧିପତ୍ୟ ବ୍ୟବହାର କରିପାରିବେ ନାହିଁ । ସଂଖ୍ୟା ବଳରୁ ମଧ୍ୟ କୌଣସି କୌଣସି ସମ୍ପ୍ରଦାୟ ଅନ୍ୟ କୌଣସି ସମ୍ପ୍ରଦାୟକୁ ଦବେଇ ଦେଇ ରଖିବାକୁ ଦିଆଯାଇ ପାରିବନାହିଁ । କେନ୍ଦ୍ର ତଥା ପ୍ରାନ୍ତୀୟ ରାଜ୍ୟମାନଙ୍କରେ ହିନ୍ଦୁ ବହୁଳ ଯୋଗୁଁ ମୁସଲମାନ ମାନଙ୍କ ଆପତ୍ତି ଓ ମୁସଲମାନ୍ ବା ଶିଖ୍ ବହୁଳତା ଯୋଗୁଁ ହିନ୍ଦୁମାନଙ୍କ ଅପତ୍ତି ଅଭିଯୋଗର ତୃଟିପୂର୍ଣ୍ଣ ବିଚାର ରଖା ଯାଇନାହିଁ ।

ମୋର ଭାରତକୁ ଗୋଟିଏ ରାଷ୍ଟ୍ରକରି ରଖିବାପାଇଁ ଏହି ପ୍ରସ୍ତାବ । ଏ ସିଦ୍ଧାନ୍ତ, ଏହି ଭରସା ନେଇ କରାଯାଇଛି, ମୁସଲ୍‌ମାନ୍ ମାନେ ପାକିସ୍ଥାନ ଅପେକ୍ଷା ମଧ୍ୟ ଏଠାରେ ଅଧିକ ସମ୍ମାନିତ ହୋଇପାରିବେ । କାରଣ ଏ ପ୍ରସ୍ତାବ ଅନୁଯାୟୀ ସେମାନେ ପାକିସ୍ଥାନ ଅପେକ୍ଷା ଅଧିକ ସୁରକ୍ଷିତତା ଲାଭ କରିପାରିବେ ।

ମୁଁ ପାକିସ୍ଥାନ ବିରୋଧୀନୁହେଁ । ମୁଁ ମାନୁଛି ଯେ, ପାକିସ୍ଥାନର ଦାବୀ ଆତ୍ମ-ନିର୍ଣ୍ଣୟର ସିଦ୍ଧାନ୍ତ ଉପରେ ଆଧାରିତ । ବର୍ତ୍ତମାନ ଏତେଦିନ ପରେ ଏହି ସିଦ୍ଧାନ୍ତକୁ କୌଣସି ଆପତ୍ତି ଜନକ ନୁହେଁବୋଲି ହୃଦୟଙ୍ଗମ କରାଯାଉଛି । ମୁଁ ମୁସଲମାନ୍ ମାନଙ୍କୁ ଏହି ସିଦ୍ଧାନ୍ତର ଫଳ ପ୍ରଦାନ କରିବାକୁ ପ୍ରସ୍ତୁତଅଛି । କିନ୍ତୁ ମୋର ସର୍ତ୍ତ ହେଉଛି, ମୁସଲମାନ୍‌ମାନେ ସେମାନଙ୍କ କ୍ଷେତ୍ରରେ, ଯେଉଁମାନେ ନୈଷ୍ଠିକ ମୁସଲମାନ ଅଟନ୍ତି ସେମାନେ ମଧ୍ୟ ଏହି ସିଦ୍ଧାନ୍ତର ଲାଭ, ପାଇ-ପାରିବେ । କିନ୍ତୁ ତାହା ସହିତ ମୋର ବିଶ୍ୱାସ, ଏକଥାରେ ମୋର ମଧ୍ୟ ଅଧିକାର ଅଛି ଯେ, ମୁଁ ମୁସଲମାନ୍ ମାନଙ୍କ ଆଗରେ ସେମାନଙ୍କ ସୁରକ୍ଷଣ ଦୃଷ୍ଟିରୁ ଏକ ଉତ୍କୃଷ୍ଟ ଯୋଜନା ଉପସ୍ଥାପନ କରିପାରୁଛି । ମୋର କହିବାର କଥା ହେଉଛି ମୋର ଯୋଜନା ପାକିସ୍ଥାନର ଯୋଜନା ଅପେକ୍ଷା ଭଲ । ନିଜ ଯୋଜନା ସପକ୍ଷରେ ଯାହା କହିବାର କଥା ମୁଁ ଆପଣଙ୍କ ସମ୍ମୁଖରେ ସ୍ପଷ୍ଟ କହିଦେଲି । ତାହା ହେଉଛି :—

୧- ମୋର ଯୋଜନା କାର୍ଯ୍ୟକାରୀ ହେଲପରେ ସାମ୍ପ୍ରଦାୟିକ ବହୁବାଦର ତୃଟି, ଯାହାକି ପାକିସ୍ଥାନ କଳ୍ପନାର ମୂଳାଧର ତାହା ଦୂରହୋଇଯିବ ।

୨- ମୋର ଯୋଜନା କାର୍ଯ୍ୟକାରୀ ହେଲେ, ଏହି ସମସ୍ତ ମୁସଲମାନ ମାନଙ୍କୁ ଯେଉଁ ଅଧିକ ପ୍ରତିନିଧିତ୍ୱ ମିଳିଯିବ, ସେଥିପାଇଁ କୌଣସି ପ୍ରକାରେ ଭେଦଭାବ ବଢିବନାହିଁ ।

୩- ଯେଉଁମାନେ ଏହାର ବିରୋଧୀ, ଯେଉଁମାନେ ପାକିସ୍ଥାନ ସହିତ ସମ୍ମିଳିତ ହୋଇପାରନ୍ତି, ସେହି ଅଞ୍ଚଳରେ ମୁସଲମାନ୍ ମାନଙ୍କ ସ୍ଥିତି ଅଧିକ ସବଳ ହୋଇଯିବ । କାରଣ ସେମାନଙ୍କୁ ଅଧିକ ପ୍ରତିନିଧିତ୍ୱ ମିଳିଯିବ । ପାକିସ୍ଥାନ ଗଠନ ହେବା ଅବସ୍ଥାରେ ଏହି ପ୍ରତିନିଧିତ୍ୱ ତାଙ୍କୁ ମିଳିପାରିବ ନାହିଁ । ସେମାନଙ୍କର ଅବସ୍ଥା, ବର୍ତ୍ତମାନ ଅବସ୍ଥା ଅପେକ୍ଷା ଅଧିକ ଅସହାୟ ଜନକ ବୋଧହେବ ।

ମୋତେ ହିନ୍ଦୁମାନଙ୍କୁ ମଧ୍ୟ କହିଦେବା ଉଚିତ୍, ସାମ୍ପ୍ରଦାୟିକ ସମସ୍ୟାକୁ ସୁଧାରିବା ପାଇଁ ଯେଉଁଟା ସବୁଠାରୁ କଠିନ କାର୍ଯ୍ୟ, ଏହାହିଁ ତାହାର ସୂତ୍ର ଯେ ସେମାନେ ବୁଝନ୍ତି, ମତାଧିକ ଯୋସନ ଗୋଟିଏ ବଡ ପବିତ୍ର କଥା । ଏହାଦ୍ୱାରା କୌଣସି କଥା ଗୋପନ ରଖାଯାଇ ପାରିବନାହିଁ । ମୁଁ ସେମାନଙ୍କ ଧ୍ୟାନ ଅନ୍ୟ ଏକ ସିଦ୍ଧାନ୍ତ ଆଡକୁ ଆକର୍ଷଣ କରିବାକୁ ଚାହୁଁଛି । ଏହା ହେଉଛି ସର୍ବ ସମ୍ମତ ହେବାର ସିଦ୍ଧାନ୍ତ । ଯେତେବେଳେ କୌଣସି ଏକ ଜଷ୍ଟି, ନ୍ୟାୟାଳୟ ସମ୍ମୁଖରେ ଯେ କୌଣସି ମୋକଦମା ଉପସ୍ଥାପନ କରନ୍ତି, ସେତେବେଳେ ଏହାର ସମାଧାନ, ଅଧିକ୍ରନ ନ୍ୟାୟାଳୟର ବିଚାରପତିଙ୍କ ପାଇଁ ନ୍ୟାୟ, ବାଧାପ୍ରାପ୍ତ ହୁଏ । ଏହିପରି ସର୍ବସମ୍ମତ ଜନ୍ମିତ ମଧ୍ୟ, ଲିଗ୍ ଅଫ୍ ନେସନ୍‌ରେ ଏହି ସିଦ୍ଧାନ୍ତ ଅନୁଯାୟୀ ସମାନ ଭାବେ ବାଧାପ୍ରାପ୍ତ ହୋଇଥିଲା ।

ଏହା ମଧ୍ୟ ସ୍ପଷ୍ଟ ଯେ ହିନ୍ଦୁମାନେ ବିଧାନସଭା ଓ ମନ୍ତ୍ରୀମଣ୍ଡଳରେ ଏହି ସିଦ୍ଧାନ୍ତକୁ ସ୍ୱୀକାର କରନ୍ତିଅନ୍ତି । ତାହାହେଲେ ଏହି ସିଦ୍ଧାନ୍ତର ଗୁରୁତ୍ୱ ବୁଝାଯାଇ ପାରିବ, ଯାହା ସର୍ବସମ୍ମତ କ୍ରମେ ହେବ । ଅନ୍ୟଥା ଭାରତରେ କୌଣସି ସାଂପ୍ରଦାୟିକ ସାମ୍ୟ ସୃଷ୍ଟି ହୋଇ ପାରିବ ନାହିଁ ।

ଏହା ଠିକ୍ ଯେ ହିନ୍ଦୁମାନେ ଶ୍ରୀ ଜିହ୍ନାଙ୍କୁ ଏହା ଭଲରି ପାରନ୍ତି ୧୯୩୦ରେ ଯେତେବେଳେ ସେମାନେ ୧୪ଟି ଦାବୀ ଉପସ୍ଥାପନ କରିଥିଲେ । ସେତେବେଳେ ବହୁମତରେ ଶାସନ ପାଇଁ, ସେ କାହିଁକି ଏତେ ପରିମାଣରେ ଜୋର ଦେଇଥିଲେ । ଏହି ଦାବୀମାନଙ୍କ ମଧ୍ୟରେ ଗୋଟିଏ ଦାବୀଥିଲା, ଯେତେବେଳେ କୌଣସି ଗୋଟିଏ ଅଲ୍ପମତକୁ ତା'ର ଜନସଂଖ୍ୟା ଅନୁପାତଠାରୁ ଅଧିକ ପ୍ରତିନିଧିତ୍ୱ ଦିଆଯିବ, ତାହାହେଲେ ତାହା ଏତେ ଅଧିକ ହେବା ଅନୁଚିତ, ତାହା ବହୁମତ-

ମାନଙ୍କର ଅଛି । ଫଳରେ ଯାହା ଅଳ୍ପମତ ହୋଇଥିବ, ହିନ୍ଦୁମାନେ ଗୃହୀତ ତ ଶ୍ରୀ ଜିନ୍ନାଙ୍କୁ ଏହା ମଧ୍ୟ ପଚାରି ପାରନ୍ତି । ଏହି ମୁସଲିମ୍ ଶେଷରେ ମୁସଲିମ୍ ଶତାଧିକର ନିବେଧ କିପରି କରିପାରିବେ ? କିନ୍ତୁ ତାହା ସହିତ ହିନ୍ଦୁମାନଙ୍କୁ ଏହା ମଧ୍ୟ ବୁଝାଇଦେବା ଉଚିତ । ଏହା ସ୍ଥିର ନିଶ୍ଚିତ ଯେ, ଶ୍ରୀ ଜିନ୍ନାଙ୍କ ଦାବୀ ଗୁଡ଼ିକ ସୁବିଧାର ବୈଧ୍ୟ ଅଟେ । ଏଥିରୁ ଏହା ସ୍ଥିରହୋଇ ପାରିବ ନାହିଁ ଯେ, ଶତାଧିକର ଶାସନ ହିଁ ଶ୍ରେଷ୍ଠତମ ବନ୍ଧନ ଅଟେ । ଯଦି ରାଜନୀତିରେ ହିନ୍ଦୁ ବହୁମତର ଶାସନ ସିଦ୍ଧାନ୍ତକୁ ପରିତ୍ୟାଗ କରିବାକୁ ଚାହାନ୍ତି ତାହାହେଲେ ଏହାଦ୍ୱାରା ଜୀବନର ଅନ୍ୟ କ୍ଷେତ୍ରରେ ଏହାର 'ବହୁମତ' ଉପରେ କୌଣସି ପ୍ରଭାବ ପଡ଼ିବନାହିଁ । ସାମାଜିକ ଜୀବନରେ ଗୋଟିଏ ଶ୍ରେଣୀ ଏହାର ବହୁମତ ବନ୍ଧନ, ପ୍ରଭାବ ତାହାରେ ରହିଯିବ । ଘଟଣା ଓ କାରବାର ଦ୍ୱାରା ସେମାନଙ୍କର ଏକାଧିକାର ଆଜିକାଲି ପରି ରହିବ । ମୋର ପ୍ରସ୍ତାବ ଏହା ହେଉଛି, ହିନ୍ଦୁମାନେ ବହୁମତ ଶାସନର ସିଦ୍ଧାନ୍ତକୁ ଜଳାଞ୍ଜଳି ଦେଇ ଦିଅନ୍ତୁ । ମୋର ନିବେଦନ ଏତିକି ମାତ୍ର, ସେମାନେ ସାପେକ୍ଷ ବହୁ ମତରେ ସନ୍ତୁଷ୍ଟ ହୋଇଯାନ୍ତୁ । ଏହା କଣ ଏପରି ଏକ ଗୁରୁତ୍ୱର କଥା ଯେ, ସେମାନେ ଏହାକୁ ସମ୍ମାନ ଦେଇପାରିବେ ନାହିଁ । ଏହା ବ୍ୟତୀତ ଯାହାକିଛି ତ୍ୟାଗ କରନ୍ତୁନା କାହିଁକି ହିନ୍ଦୁମାନେ ତାହାର ଦୁନିଆର ବର୍ଣ୍ଣ ସ ଭାଜନ ହୋଇପାରିବେ ନାହିଁ । ଯେଉଁମାନେ ଅଳ୍ପ ମତରେ ଅନାସକ୍ତ ଅଟନ୍ତି, ସେମାନେ ମଧ୍ୟ ସ୍ୱରକ୍ଷାସ୍ଥ ସ୍ୱତନ୍ତ୍ରତା ମାର୍ଗର ଅଧିକାରୀ ଅଟନ୍ତି ।

ବର୍ତ୍ତମାନ ମିଥ୍ୟା ପ୍ରଚୁର କାର୍ଯ୍ୟଦ୍ୱାରା କାମ ଚାଲିପାରିବ ନାହିଁ । ଅଳ୍ପମତ ସମ୍ପ୍ରଦାୟର ଲୋକେ ଏପରି କୌଣସି ବାଧା ଉପସ୍ଥାପିତ କରି ନାହାନ୍ତି, ଯାହାକି ସେମାନେ ଏହି ସ୍ୱତନ୍ତ୍ରତାକୁ ଏବଂ ଏହାଦ୍ୱାରା ସେମାନଙ୍କପାଇଁ ଯେଉଁ ବିପଦ ସୃଷ୍ଟିହେବ ତାହାକୁ ସ୍ୱୀକାର କରିନେବାପାଇଁ ପ୍ରସ୍ତୁତ ହେବେ । ଏହି ସର୍ତ୍ତରେ ଯେତେବେଳେ ସେମାନଙ୍କୁ ସନ୍ତୋଷ ଜନକ ସଂରକ୍ଷଣ ମିଳିଯିବାଟା ଉଚିତବୋଲି ସ୍ଥିର ହେବା ଅଳ୍ପ ମତର ପ୍ରଶ୍ନକୁ ଏହି ପ୍ରକାର ଜାବୁଡ଼ି ଧରିବାର କୌଣସି ଆବଶ୍ୟକତା ରହିବ ନାହିଁ । କିମ୍ବା ହିନ୍ଦୁମାନେ ନିଜ ମନରେ ଠିଲେହେଲେ କୃତଜ୍ଞତା ଅନୁଭବ କରିବା ଉଚିତ୍ ନୁହେଁ । ଆୟର୍ଲଣ୍ଡରେ ଜାତୀୟ ବାଦୀ ନେତା ରେଡ଼ମଣ୍ଡଙ୍କୁ ଏଲଷ୍ଟରର ନେତା, କାରସନଠାରେ କହିଲେ "ସଂଯୁକ୍ତ ଆୟର୍ଲାଣ୍ଡର ପ୍ରସ୍ତାବକୁ ମାନିନିଅ । ପରେ ଯାହାକିଛି ସଂରକ୍ଷଣର ମାର୍ଗ, ତୁମ୍ଭେ ଦେଇ ଦିଆଯିବ ।" କୁହାଯାଏ ଏହାର ଉତ୍ତର ଥିଲା "ତୁମର ସଂରକ୍ଷଣ, ଖତ୍ରାରେ ଯାଉ, ଆମ୍ଭେମାନେ ତୁମ୍ଭମାନଙ୍କ ଦ୍ୱାରା ଶୋଷିତ ଓ ଶାସିତ ହେବାକୁ ଚାହୁଁନାହୁଁ । ଭାରତର ଅଳ୍ପମତ ଥିବା ଲୋକଙ୍କ ଦ୍ୱାରା ଏହା କୁହାଯାଇ ନାହିଁ ।"

ସେମାନେ କେବଳ ପରକ୍ଷରେ ହିଁ ସନ୍ତୁଷ୍ଟ ହୋଇଯିବାକୁ ପ୍ରସ୍ତୁତ । ମୁଁ ହିନ୍ଦୁମାନଙ୍କ ପକ୍ଷରୁ ଏହାକଣ ସାମୋହିକ ଭାବେ ଭଲକଥା ନୁହେଁ । ମୋର ବିଶ୍ୱାସ ଏହା ନିଶ୍ଚିତ ।



## ସମ୍ବିଧାନ ଓ ବର୍ଣ୍ଣ ବ୍ୟବସ୍ଥା

(ସମ୍ବିଧାନ ପ୍ରସ୍ତୁତର ହିଉଚଉ ବେଳେ, ଅଛୁଆଁମାନଙ୍କର ଦାବୀ ପାଇଁ, ଭାରତୀୟ ସମ୍ବିଧାନରେ ସୁବିଧା ଦେବା ବିଷୟରେ ସମ୍ବିଧାନ ନିର୍ମାଣ ସଭା ଆଗରେ ଦିଆଯାଇଥିବା ବାବାସାହେବଙ୍କ ବ୍ୟାଖ୍ୟାନ ।)

ବର୍ତ୍ତମାନ ଏହା ଦାବି କରାଯାଏ "ଅଛୁଆଁ" ମାନଙ୍କର ପ୍ରଧାନ ଦାବୀ ଗୁଡ଼ିକୁ ଭାରତୀୟ ସମ୍ବିଧାନରେ କାହିଁକି ସ୍ଥାନ ଦିଆଯିବ । ସଂସାର ମଧ୍ୟରେ ଏପରି କୌଣସି ଦେଶ ନାହିଁ ଯେଉଁଠାରେ ଶାସନ ପ୍ରଣାଳୀ ପ୍ରସ୍ତୁତକାରୀଗଣ, ଏପରି ସଂଶୋର ସ୍ୱରୂପ, ସମ୍ବିଧାନରେ ରଖିବା ପାଇଁ ବାଧ୍ୟ ହେବେ ।

ଏହା ଏକ ମହତ୍ୱପୂର୍ଣ୍ଣ ପ୍ରଶ୍ନ । ମୁଁ ଏହା ସ୍ୱୀକାର କରୁଛି ଯେଉଁଲୋକ ଏହି ପ୍ରଶ୍ନ ଉଠାଉଛନ୍ତି ସେମାନଙ୍କୁ ଜବାବ ଦେବା ଏକାନ୍ତ ପ୍ରୟୋଜନୀୟ । ଏହି ମହାଶୟଙ୍କୁ ମୁଁ କହିବାକୁ ଚାହେଁ, ଏହା ଏକ ବୈଧାନିକ ମହତ୍ତ୍ୱପୂର୍ଣ୍ଣ ବିଷୟ । ଭାରତୀୟ ସମାଜର ଏହା ହେଉଛି ବିଶେଷତ୍ୱ, ଯାହା ଏହି ପ୍ରକାରର ପ୍ରଶ୍ନକୁ ବୈଧାନିକ ମହତ୍ତ୍ୱ ପ୍ରଦାନ କରିଥାଏ । ଏଥିପାଇଁ ଦାୟୀ ହିନ୍ଦୁମାନଙ୍କର ବର୍ଣ୍ଣ ବ୍ୟବସ୍ଥା ଓ ଜାତି ପ୍ରଥା । ଏହାର ଉପରେ ବିସ୍ତୃତ ଭାବେ ବିଚାର କରିବାର ଆବଶ୍ୟକତା ଅଛି । ଏଥିରୁ କିଛି ହିନ୍ଦୁମାନଙ୍କର ସାମାଜିକ ଓ ରାଜନୈତିକ ପରିସ୍ଥିତି ବୁଝିହୁଏ ନାହିଁ । ବର୍ଣ୍ଣ ବ୍ୟବସ୍ଥାର ଦୂଷିତ ପରିଣାମକୁ ବ୍ୟକ୍ତ କରିବା ପାଇଁ ବହୁତ କିଛି କହିବାକୁ ଅଛି । ବର୍ଣ୍ଣ ବ୍ୟବସ୍ଥାକୁ ରକ୍ଷା କରିବା ପାଇଁ ଯେଉଁ ଧାର୍ମିକ ଓ ସାମାଜିକ ପ୍ରଥାସବୁ ପ୍ରଚଳିତ ହୋଇଅଛି, ତା'ର ପ୍ରଭାବ ସମାଜର ଆର୍ଥିକ ପରିସ୍ଥିତି ଉପରେ ପଡ଼ୁଅଛି । ଯାହାଦ୍ୱାରା ଜନତାର ସାମାଜିକ ବିଷମତା ଚରମ ସୀମାରେ ପହଞ୍ଚିଛି ।

ବାସ୍ତବରେ କୌଣସି ଦେଶର ସମ୍ବିଧାନ ନିର୍ମାଣ କରିବା ସମୟରେ ସେହି ଦେଶର ସାମାଜିକ ଢାଞ୍ଚାକୁ ଆଖି ଆଗରେ ରଖି ସେହି ଅନୁଯାୟୀ ସମ୍ବିଧାନର ବ୍ୟବସ୍ଥା କରିବା ଏକାନ୍ତ ଆବଶ୍ୟକ । କାରଣ ସାମାଜିକ ଶକ୍ତି କେବଳ ସାମାଜିକ କ୍ଷେତ୍ରରେ ସୀମିତ ରହେ ନାହିଁ । ତାହା ଜନ ଜୀବନର ସମ୍ପୂର୍ଣ୍ଣରେ ରହି ରାଜନୈତିକ କ୍ଷେତ୍ରରେ ମଧ୍ୟ ନିଜର ଅଧିକାର ଠୁଳ କରିବାକୁ ସକ୍ଷମ ହୋଇଥାଏ । ଭାରତର ଏହି ସାମାଜିକ ସ୍ଥିତି ଓ ସାମାଜିକ ଦୃଷ୍ଟିକୋଣ, ଅଛୁଆଁମାନଙ୍କ ପାଇଁ ଅଟେ । ମୋର ଦୃଢ଼ ବିଶ୍ୱାସ ଏହା ଏକ ଶିବାଦସ୍ପଦ ତଥ୍ୟ । ଏହି ସମସ୍ୟାକୁ ହିନ୍ଦୁମାନେ ଖୁବ୍ ଭଲ ଭାବରେ ବୁଝିଛନ୍ତି ଓ ଏହାର ଶକ୍ତି ସମ୍ବନ୍ଧ ମଧ୍ୟ ପରିଚିତ ଅଛନ୍ତି ।

କେତେକ ଇଂରାଜୀ-ଶିକ୍ଷିତ ସବର୍ଣ୍ଣ ହିନ୍ଦୁ ଏହି କଥାକୁ ଅସ୍ୱୀକାର କରନ୍ତି ଯେ, ହିନ୍ଦୁ ସମାଜର ଢାଞ୍ଚା, ୟୁରୋପୀୟ ସମାଜର ଢାଞ୍ଚାଠାରୁ ପୃଥକ । ସେମାନେ ଏହି ତର୍କର ସମ୍ମୁଖୀନ ହୋଇ କହନ୍ତି, ହିନ୍ଦୁମାନଙ୍କର ବର୍ଣ୍ଣ ବ୍ୟବସ୍ଥା ଓ ପାଶ୍ଚାତ୍ୟ ସମାଜର ପ୍ରଚଳିତ ଶ୍ରେଣୀ ଗଠନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । କିନ୍ତୁ ଏହି ଧାରଣା ସମ୍ପୂର୍ଣ୍ଣ ଭୁଲ । ଏହାଦ୍ୱାରା ନିର୍ଧାରିତ ହୁଏ ଯେ ଯେଉଁ ଲୋକମାନଙ୍କର ଏହି ବିଚାର, ସେମାନେ ବର୍ଣ୍ଣ ବ୍ୟବସ୍ଥା ଓ ସାମାଜିକ ଶ୍ରେଣୀ ଗଠନ ବିଷୟରେ କିଛି ଜାଣନ୍ତି ନାହିଁ । ବର୍ଣ୍ଣ ବ୍ୟବସ୍ଥା ଓ ଜାତିପ୍ରଥା ଏଭଳି ଏକ ପ୍ରଥା ଯାହାଦ୍ୱାରା ପୃଥକ ରହିବାର ଭାବନା ସମ୍ବର୍ଦ୍ଧନ ପାଇଁ ନିର୍ଧାରିତ ହୋଇଥାଏ । ଏହି କାରଣରୁ ସ୍ୱଭାବତଃ ଗୋଟିଏ ଜାତି ଅନ୍ୟ ଜାତିଠାରୁ ପୃଥକ ହୋଇ ରୁହେ । ଶ୍ରେଣୀ ବ୍ୟବସ୍ଥାରେ ମଧ୍ୟ ପୃଥକତାର ଭାବନା ଥାଏ, କିନ୍ତୁ ଏହା ଦ୍ୱାରା ସ୍ୱଭାବତଃ ପୃଥକୀକରଣ ହୁଏ ନାହିଁ । ଏକଥା ଆଂଶିକ ଠିକ୍ ଯେ ଶ୍ରେଣୀ ଗଠନ ଦ୍ୱାରା ଦଳଧାର୍ମି ହୁଏ, କିନ୍ତୁ ଏହାର ସ୍ୱରୂପ ଜାତିଗତ ଦଳଧାର୍ମି ସଙ୍ଗେ ସମାନ ନୁହେଁ । ଶ୍ରେଣୀ ପ୍ରଥାଦ୍ୱାରା ସୃଷ୍ଟ ବିଭାଜନ, ନିର୍ଦ୍ଦିଷ୍ଟ ସମାଜଗତ ଅଟେ । ଯଦି ଏହି ବିଶ୍ଳେଷଣ ଠିକ୍, ତାହାହେଲେ ଏଥିରେ ଅସ୍ୱୀକାର କରାଯାଇ ପାରିବ ନାହିଁ,ହିନ୍ଦୁ ସମାଜର ସାମାଜିକ ଢାଞ୍ଚା ଭିନ୍ନ ଅଟେ । ଏହି କାରଣରୁ ଏହାର ରାଜନୀତିକ ଢାଞ୍ଚା ମଧ୍ୟ ସର୍ବଦା ଭିନ୍ନ ହେବା ଉଚିତ୍ ।

ଅଛୁଆଁମାନେ କଣ ଦାବୀ କରନ୍ତି ? ଏହା ସୁସ୍ପଷ୍ଟ ଯେ ସେମାନଙ୍କର ଏହି ହୀନ ଦୟନୀୟ ଦଶା ହିନ୍ଦୁ ସାମାଜିକ ବ୍ୟବସ୍ଥା କାରଣରୁ ହିଁ ହୋଇଛି । ଏଣୁ ବର୍ତ୍ତମାନ ଯେଉଁ ବ୍ୟବସ୍ଥା କରାଯିବ, ତାହାଦ୍ୱାରା ଏପରି ବ୍ୟବସ୍ଥା ହେବା ଉଚିତ୍, ଯାହାଦ୍ୱାରା ଏହି ଦଳିତ, ଶୋଷିତ ଓ ପ୍ରବଞ୍ଚିତ ଜାତି ମାନବତା ଓ ସମସାମାଜିକ ଅବସ୍ଥାକୁ ଆସିପାରିବେ । ସେମାନଙ୍କୁ ପୂର୍ଣ୍ଣ ନାଗରିକ ଅଧିକାର ଦିଆଯାଇ ପାରିବ

ସେମାନଙ୍କ ପ୍ରତି କରି ଯାଉଥିବା ସାମାଜିକ ଶୋଷଣ ଓ ଅଧପତନର ବ୍ୟବସ୍ଥାକୁ ସମ୍ପୂର୍ଣ୍ଣରୂପେ ବନ୍ଦ କରିଦିବା ଉଚିତ୍ । ଏହି ବିଷୟରେ ପ୍ରକାଶ କରିନେବା ଉଚିତ୍ ହେବ, ହିନ୍ଦୁ ସମାଜର ବର୍ଣ୍ଣ ବ୍ୟବସ୍ଥାର ଆଧାର ଏବେ ଅଛି, ଯେଉଁଥିପାଇଁ ଏସବୁ କଥାର ଆବଶ୍ୟକତା ହେଉଛି । ତାହାର ସମାଧାନପାଇଁ ରାଜନୈତିକ ଢାଞ୍ଚାରେ ପୁନଃବ୍ୟବସ୍ଥା ବିନା ସାମାଜିକ ଢାଞ୍ଚାର ବିରୋଧାଚରଣ କରିବା ଅସମ୍ଭବ ।

ଜାତିପ୍ରଥା ବା ଚାତୁର୍ବର୍ଣ୍ଣ୍ୟ, ଏକ ଏପରି ସାମାଜିକ ବ୍ୟବସ୍ଥା, ଯାହା ଲୋକମାନଙ୍କୁ ନିର୍ଜୀବ, ପଙ୍ଗୁ ଓ ମୂକରେ ପରିଣତ କରି ସେମାନଙ୍କୁ ପ୍ରଗତିଶୀଳ ଉଦ୍ୟମ କାର୍ଯ୍ୟପାଇଁ ଅକ୍ଷମର୍ଥ କରି ଦେଇଥାଏ । ଏଥିରେ ଢିଲେଦେଲେ ଉନ୍ନତି ନାହିଁ । ଚାତୁର୍ବର୍ଣ୍ଣ ଓ ଜାତିଭେଦର ସମର୍ଥକ, କେତେକ ଶିକ୍ଷିତ ବ୍ୟକ୍ତି କୁହନ୍ତି, ଚାତୁର୍ବର୍ଣ୍ଣ କେବଳ ଶ୍ରମ ବିଭାଗର ଅନ୍ୟନାମ । କିନ୍ତୁ ଏକଥା ଭ୍ରମାତ୍ମକ । ଯଦି କେବଳ ଏହା ଶ୍ରମ-ବିଭାଗ ହୁଏ, ତାହାହେଲେ ଶ୍ରମିକକୁ ସ୍ୱେଚ୍ଛାରେ ନିଜର ପେଶା ବାଛି ନେବାର ଅଧିକାର ଥାନ୍ତା । ଅର୍ଥାତ ଯେଉଁ ବ୍ୟବସାୟକୁ ବାଛି-ନିଅନ୍ତା ସେହି ଅନୁରୂପ ସାମାଜିକ ସମ୍ମାନ ପାଇ ପାରୁଥାନ୍ତା । କିନ୍ତୁ ଏହା ନୁହେଁ । ଏଠାରେ ମଧ୍ୟ ସର୍ବଶାସ୍ତ୍ର ବିଶାରଦ ଦାର୍ଶନିକ ହେଲେମଧ୍ୟ ବଣିଆଁ କେବଳ ଅଣିଆହିଁ ହୋଇ ରହିବ । ଜନ ପ୍ରଧାନ ବ୍ରାହ୍ମଣ ହୋଇପାରିବ ନାହିଁ । ଏଣୁ ସାଧାରଣତଃ ଚାତୁର୍ବର୍ଣ୍ଣକୁ ଶ୍ରମ ବିଭାଗ ନୁହେଁ ଶ୍ରମିକ ମାନଙ୍କର ବିଭାଗ କୁହାଯାଇପାରେ । ଏହି ବିଭାଗ ଯେପରି ଜନ୍ମଗତ ସୃଷ୍ଟିମନ୍ତ, ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଦେହ ଉପରେ ଏକ ଛାପ ଆକାରରେ ନୁହେଁ ଦେହର ଉପାଦାନ ହୋଇଯାଏ ।

ଏହା ଶେଷରେ ଧର୍ମରେ ପରିଣତ ହୋଇଯାଏ । ଏଥିରେ ବ୍ୟକ୍ତିଗତ ଭାବନା ବ୍ୟକ୍ତିଗତ ବିକାଶ ଓ ବ୍ୟକ୍ତିଗତ ପସନ୍ଦର କୌଣସି ମୂଲ୍ୟ ନାହିଁ କିମ୍ବା ସ୍ଥାନ ନାହିଁ । ଏହି କାରଣରୁ ଯେଉଁ ବ୍ୟବସାୟ ବା କାର୍ଯ୍ୟ ହିନ୍ଦୁମାନଙ୍କ ଦ୍ୱାରା ହୀନ, ନୀଚ ଓ କଳଙ୍କିତ ବିବେଚିତ ହୁଏ ତାହା କରୁଥିବା ଲୋକମାନେ ମଧ୍ୟ ନୀଚ ଜାତିର ନାମ ପାଇଥାନ୍ତି । ଏହି ଜାତିରେ ଜନ୍ମହେବା ବ୍ୟକ୍ତି ତା'ର କୌଳିକ ବ୍ୟବସାୟକୁ ଛାଡ଼ିଦେଇ ଉଚ୍ଚପର୍ଯ୍ୟାୟଭୁକ୍ତ ବ୍ୟବସାୟ କରିପାରେ, କିନ୍ତୁ ସେ ସେହି ନିର୍ଦ୍ଦିଷ୍ଟ ଜାତିର ଜନ୍ମ ହୋଇ ଥିବାରୁ ସେ ହିନ୍ଦୁ ସମାଜରେ ଘୃଣିତ ଓ ତିରସ୍କୃତ ହେବ । ତା'ର ଉତ୍ତମ ଗୁଣ ଓ ଯୋଗ୍ୟତା ଅନୁରୂପ ଯେଉଁ ସାମାଜିକ ସମ୍ମାନ ତା'ର ପ୍ରାପ୍ୟ ସେ ସେଥିରୁ ବଞ୍ଚିତ ହୋଇ ରହିବ । ଏହି କାରଣରୁ ମୁଁ ସେହି ଲୋକଙ୍କ କଥାକୁ ଠିକ୍ ବୁଝୁନାହିଁ । ଯେଉଁମାନେ ଏହି କଥାକୁ ମାନନ୍ତି, ଓ ଏହି କାରଣରୁ ଅବୁଝାଅଦ୍‌ର ଦଲିଲ ଦିଅନ୍ତି ସେମାନଙ୍କ

ଦୃଷ୍ଟିକୋଣରୁ ହିନ୍ଦୁ ସମାଜରୁ ଜାତିପ୍ରଥା ଉଠାଇ ଦିଆଯାଇ ପାରିବ ନାହିଁ । ମୁଁ ଏହି ଧାରଣାକୁ ଅସ୍ୱୀକାର କରୁଛି, କାରଣ 'ଜାତି' ହିନ୍ଦୁଙ୍କ 'ଧର୍ମ' । ଏହାର ସମର୍ଥନରେ ହିନ୍ଦୁ ଶାସ୍ତ୍ର, ପୁରାଣ, ରାମାୟଣ ମହାଭାରତ ଆଦି ମହାକାବ୍ୟ ଓ କାବ୍ୟ ମାନଙ୍କର ରଚନା ହୋଇଛି । ଏହି ପୁସ୍ତକ ଗୁଡ଼ିକୁ ଛାଡ଼ି ଦେଲେ ହିନ୍ଦୁ 'ହିନ୍ଦୁ' ହୋଇ ରହିବ ନାହିଁ ।

ମୋର କହିବାର କଥା ହେଉଛି, ଯେଉଁ ଲୋକେ ଏହି ପ୍ରକାର କଥା ବାର୍ତ୍ତା କରନ୍ତି, କେବଳ ସେମାନେ ଭାବନ୍ତି ଯେ ଜାତିପ୍ରଥା କୌଣସି କ୍ଲବ, ମ୍ୟୁନିସପାଲିଟି ବା ଜାତୀୟ କାଉନସିଲ ପରି କୌଣସି ସଂସ୍ଥା ଅଟେ । ଏହା ସମ୍ପୂର୍ଣ୍ଣ ଭାବେ ଭୁଲ ଅଟେ । ହିନ୍ଦୁମାନଙ୍କର ଜାତି ସେମାନଙ୍କର ଧର୍ମ ଓ ଧର୍ମ ମଧ୍ୟରେ ଏକ ସଂସ୍ଥା ବିନା ଅନ୍ୟ କିଛି ନୁହେଁ । ତାହାକୁ ସଂସ୍ଥାଭୁକ୍ତ କହାଯାଇ ପାରେ; କିନ୍ତୁ ତାହା ଏପରି ହୋଇ ପାରିବ ନାହିଁ । ଯେପରିକି, ଏହି ସଂସ୍ଥା ଯାହା ଉପରେ ନିର୍ଭର ଶୀଳ ତାକୁ ସେଥିରୁ ବାଦ କରି ଦେଇ ହେବନାହିଁ । ଧର୍ମ ଗୋଟିଏ ଏପରି ଶକ୍ତି ଯାହା ମଧ୍ୟ ଦେଇ ପ୍ରତ୍ୟେକ ବ୍ୟକ୍ତିର ଜୀବନ ଧାରା ଓ ତାର ଚରିତ୍ର ଗଠନ ହୁଏ । ତାର ଈର୍ଷା ପ୍ରତିଈର୍ଷା, ଇଚ୍ଛା ଓ ଅନିଚ୍ଛା ସମ୍ବନ୍ଧରେ ସ୍ଥିର କରେ । ଏହି ଈର୍ଷା ପ୍ରତିଈର୍ଷା, ଇଚ୍ଛା ଓ ଅନିଚ୍ଛା ଗୁଡ଼ିକ କୌଣସି ସଂସ୍ଥା ନୁହେଁ ଯାହାକୁ ନଷ୍ଟ କରିଦିଆଯାଇ ପାରିବ, କିମ୍ବା ସେହି ସାମାଜିକ ଶକ୍ତିକୁ ରାଜନୀତି-ଠାରୁ ପୃଥକ କରି ଦେବାର ଆବଶ୍ୟକତା ଅଛି ବୋଲି ନିର୍ଦ୍ଧାରିତ କରାଯାଇ ପାରିବ । ତାହା ହେଲେ ରାଜନୀତିକ ଢାଞ୍ଚା ଗଠନ କରିବାର ଆବଶ୍ୟକତା ରହିଛି ବୋଲି ଗ୍ରହଣ କରିବାକୁ ହେବ ।

ଏପର୍ଯ୍ୟନ୍ତ ମୁଁ ଦେଖାଇବାକୁ ଚେଷ୍ଟା କରିଛି ଯେ ହିନ୍ଦୁ ସମାଜର ଢାଞ୍ଚା ଏପରି ବିଚିତ୍ର ସାମାଜିକ ଢାଞ୍ଚା, ଯାହାକି, ଏହିପରି କାରଣରୁ ଦାବୀ କରେ ଯେ ସେମାନଙ୍କ ପାଇଁ ରାଜନୀତିକ ଢାଞ୍ଚାକୁ ମଧ୍ୟ ଅନୁରୂପ, ଏକ ବିଚିତ୍ର ରାଜନୀତିକ ଢାଞ୍ଚାରେ ପରିଣତ କରାଯାଉ ।

ବର୍ତ୍ତମାନ ମୁଁ ଏହି ପ୍ରଶ୍ନ ଉପରକୁ ଆସୁଛି ଯେ ଭାରତୀୟ ସମ୍ବିଧାନରେ ସାମ୍ପ୍ରଦାୟିକ ଓ ଜାତିଗତ ଯୋଜନା କରିଯିବାର କୌଣସି ଆବଶ୍ୟକତା ନାହିଁ । ସାଧାରଣ ରାଜନୀତି କ୍ଷେତ୍ରରେ ଅଛୁଆଁ ମାନଙ୍କ ପାଇଁ, ପୃଥକ ଅଧିକାର ପାଇଁ, ଦାବୀର ଯଥାର୍ଥତା ଏକ ସାଧାରଣ କଥା । ଏହି କଥାକୁ ସ୍ୱୀକାର କରି ନଆଯିବ ନାହିଁ ଯେ ଏହା ସେମାନଙ୍କର ପାରସ୍ପରିକ ମତଭେଦ ନୁହେଁ, ଏହା ହେଉଛି ଆଧାରଭୂତ ସିଦ୍ଧାନ୍ତର ଘଟଣା । ଅସ୍ପୃଶ୍ୟତାହିଁ ଏହି କଥାର ଯଥେଷ୍ଟ ସୂଚନା ଦିଏ ଯେ ହିନ୍ଦୁ ଓ ଅଛୁଆଁ ମାନଙ୍କ ମଧ୍ୟରେ କେତେ ପରିମାଣରେ

ବିଦ୍ୱେଷ ଭାବ ଅଛି । ସେମାନେ ଅଛୁଆଁ ହୋଇ ଥିବାରୁ ଏହି କଥାକୁ ସେମାନେ ହିନ୍ଦୁମାନଙ୍କ ଉପରେ ବିଶ୍ୱାସ କରନ୍ତି । ସ୍ୱାଧୀନ ହୋଇଯିବା ପରେ ହିନ୍ଦୁମାନେ ସେମାନଙ୍କ ପ୍ରତି ନ୍ୟାୟ ପ୍ରଦର୍ଶନ କରିବେ, ଏହାହିଁ ହେଉଛି ସେହିଭଳି ବିଶ୍ୱାସ କରିବାର କଥା, ଯେଉଭଳି ମୂଷା ବିଲେଇକୁ, କପୋତ-ଛୁଆଙ୍କୁ ଗାଈ ବା ହରିଣ-ସିଂହକୁ ବିଶ୍ୱାସ କରିଥାଏ । ଯେକୌଣସି ନ୍ୟାୟପ୍ରେମୀ କହିପାରିବ, ଅଛୁଆଁ ମାନଙ୍କର ଏ ମନୋଭାବ ଯଥାର୍ଥ ଓ ସେମାନେ ହିନ୍ଦୁମାନଙ୍କୁ ବିଶ୍ୱାସ କରି ନିର୍ଭରଶୀଳ ହେବା ଉଚିତ୍ ନୁହେଁ । ହିନ୍ଦୁମାନେ ଅଛୁଆଁମାନଙ୍କ ପ୍ରତି ଏପରି ବିରୋଧାଚରଣ କରନ୍ତି ଯାହା କି ଭାରତୀୟଙ୍କ ପ୍ରତି ୟୁରୋପୀୟ କରିଥାନ୍ତି । ସବୁଠାରୁ ଖରାପ କଥା ଏହାହିଁ ହେଉଛି, ୟୁରୋପୀୟମାନେ ପରଦେଶୀ ମାତ୍ର ହିନ୍ଦୁ ସ୍ୱୟଂ ନିଜଦେଶର ଏକ ଶ୍ରେଣୀର ଲୋକଙ୍କ ପ୍ରତି ତ, ବିପକ୍ଷୀୟ ଅଟନ୍ତି, ତା ଛଡ଼ା ଅଛୁଆଁମାନଙ୍କ ପ୍ରତି କଠୋର ବିଦ୍ୱେଷଶୀଳ ଅଟନ୍ତି ।

ଏଥିରେ କୌଣସି ଯୁକ୍ତି ନାହିଁ ଯେ, ହିନ୍ଦୁମାନେ, ଅଳ୍ପକିଛି ନୁହେଁ ହଜାର ହଜାର ବର୍ଷଧରି ନିଜଠାରୁ ଅଲଗା ରଖି ଆସିଛନ୍ତି । କେବଳ ଭିନ୍ନ ଜାତି ନୁହେଁ ନିଜର ସାମାଜିକ ନିୟମ ମଧ୍ୟରେ ଥିବା ହିନ୍ଦୁ, ଅଛୁଆଁଙ୍କୁ ସବୁଠାରୁ ନିମ୍ନଶ୍ରେଣୀର ଭାବନ୍ତି । ଏହିଭଳି ଲୋକଙ୍କ ପ୍ରତି ପୂର୍ଣ୍ଣ ସତର୍କ ରହି ଆଜି ଅଛୁଆଁମାନେ ଯଦି ନିଜର ସମସ୍ୟା ସମାଧାନ ନକରନ୍ତି ତାହା ହେଲେ କାହାକୁ ଦୋଷୀ କୁହାଯିବ ? କୌଶଳର ସହିତ ଅଛୁଆଁମାନଙ୍କୁ କିଭଳି କୁହାଯାଇ ପାରିବ ଯେ, ନିଜର ମଙ୍ଗଳ ସେହିମାନଙ୍କ ହାତରେ ସମର୍ପି ଦେଉଛି, ଯେଉଁମାନେ ସବୁବେଳେ ଏମାନଙ୍କର ବିରୋଧୀ ଅଟନ୍ତି । ଏଭଳି ଲୋକଙ୍କୁ ରକ୍ଷା କରିବାର ଏକମାତ୍ର ଉପାୟ, ଅଛୁଆଁ ହିନ୍ଦୁମାନେ କିନ୍ତୁମତଙ୍କ ଅତ୍ୟାଗ୍ରହ ବିରୁଦ୍ଧରେ ସମ୍ବିଧାନ ଦ୍ୱାରା ନିଜ ରକ୍ଷାର ଦାବୀକୁ ସାବ୍ୟସ୍ତ କରିନେବା । ଅଛୁଆଁମାନଙ୍କର ଏହି ଦାବୀ ଯେକୌଣସି ଅବସ୍ଥାରୁ ହେଉନା କାହିଁକି କ'ଣ ଅସ୍ୱୀକାର କରାଯାଇ ପାରିବ ?

ଏଣୁ ଏହା ଅତ୍ୟନ୍ତ ଆବଶ୍ୟକ ଯେ, ଭାରତୀୟ ସମ୍ବିଧାନରେ ସମାଜର ସବୁଠାରୁ ତଳେ ପଡ଼ିଥିବା ଶ୍ରେଣୀ, ଯେଉଁମାନେ ଦଳିତ, ଶୋଷିତ ଓ ପ୍ରବଞ୍ଚିତ ଅଟନ୍ତି, ସେମାନଙ୍କର ଦାବୀକୁ ଉଚିତ୍ ସ୍ଥାନ ଦିଆଯିବା ଉଚିତ୍ ।

—o—

# ଏକ ରାଷ୍ଟ୍ରୀୟତା ଓ ଶକ୍ତିଶାଳୀ କେନ୍ଦ୍ରୀୟ ସରକାର

(ନୂଆଦିଲ୍ଲୀରେ ସମ୍ବିଧାନ ନିର୍ମାଣ ସଭାରେ ତା ୧୩ ଡିସେମ୍ବର ୧୯୪୬ର ବୈଠକରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ପ୍ରସ୍ତାବ ପରେ ବାବା ସାହେବଙ୍କର ବିସ୍ତୃତ ଧାରାର ଏକ ମହତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟାନ ।)

ଅଧ୍ୟକ୍ଷ ମହାଶୟ, ମୁଁ ବୁଝୁଛି ଯେ, ପଣ୍ଡିତ ନେହେରୁଙ୍କ ପ୍ରସ୍ତାବ ପୂର୍ବରୁ ଭାଗ ବଣ୍ଟନ ଉପରେ ଖୁବ୍ ଗୁରୁତ୍ୱ ଦିଆଯାଇଛି । ଅନ୍ୟ ପକ୍ଷରେ ଯେଉଁ ଭାଗ ବ୍ୟବସ୍ଥା, ଭାବି-ସମ୍ବିଧାନର ଉଦ୍ଦେଶ୍ୟ ସହିତ ଯୋଡ଼ି ଦିଆଗଲା, ତାର ଗୁରୁତ୍ୱ କ୍ରମେ ହ୍ରାସ ହୋଇ ଯାଉଥିବାର ଅନୁଭବ କରାଯାଉଥିଲା । ମୁଁ ମଧ୍ୟ ବୁଝୁଛି, ଏଥିରେ ପାଣ୍ଡିତ୍ୟର ମାତ୍ରା ବହୁତ । ମାତ୍ର, ଅଧିକାରର ଚର୍ଚ୍ଚା କମ । ସ୍ୱତନ୍ତ୍ର ଭାବରେ ଏହି ଶ୍ରେଣୀର ଅଧିକାର ବିଷୟରେ କିଛି କୁହାଯାଇନାହିଁ । ଯାହା ଆଜି କୂଳରେ ପହଞ୍ଚିବା ଅବସ୍ଥାରେ ଅଛି, ଏବଂ ଯାହାଦ୍ୱାରା ସେହି ନିର୍ଦ୍ଦିଷ୍ଟ ଗୋଷ୍ଠୀଙ୍କୁ ସେମାନଙ୍କର ହୀନ ମନ୍ୟତାରୁ ଉଦ୍ଧାର କରିବା ହେଉଛି ସବୁଠାରୁ ଜରୁରୀ ଆବଶ୍ୟକତା । ମୁଁ ଚାହେଁ, ଆମ୍ଭମାନଙ୍କ ସମ୍ବିଧାନ, ସ୍ପଷ୍ଟ ଭାବରେ ଘୋଷଣା କରୁ, ଯାହା ବଳରେ ସରକାରଙ୍କର "ଉଦ୍ଦୋଗ ଧନ୍ଦା" ବା "ଭୂମି", ଜାତୀୟ କରଣ ହୋଇଯାଉ ।

ପ୍ରସ୍ତାବ ଆରମ୍ଭରୁ ଭାଗଦୃଷ୍ଟିରୁ ସମସ୍ତ ଭାବନା, ଗଣ-ରାଜ୍ୟଙ୍କ ଉପରେ କେନ୍ଦ୍ରୀଭୂତ ହୋଇଅଛି । ଯେଉଁ ଭାବନା ଏହି କାରଣରୁ ସୃଷ୍ଟି ହୋଇଛି ତାହା ଡକ୍ଟର ଜୟକରଙ୍କ କହିବା ଅନୁଯାୟୀ କେବଳ ଖାମଖିଆଲ୍ ଭାବେ, ଲୋକଙ୍କ ଦ୍ୱାରା ଏହି ଭାବନାକୁ ଅଧିକ ଦୂର ଅଗ୍ରସର କରିବା ଉଚିତ୍ ନୁହେଁ ।

ମୋର ଭାବନା, ଏହି ଦେଶର ସାମାଜିକ, ରାଜନୀତିକ ଓ ଆର୍ଥିକ ଢାଞ୍ଚାର ଭବିଷ୍ୟତ ବିକାଶର ବିଷୟବସ୍ତୁ, ଏଥିରେ କୌଣସି ସନ୍ଦେହ ନାହିଁ । ମୁଁ ଜାଣେ, ଆଜି ଆମ୍ଭେମାନେ ରାଜନୈତିକ, ସାମାଜିକ ଓ ଆର୍ଥିକ ନିକଟ ଉପରେ ଅଲଗା ଅଲଗା ବସିଥିଛୁଁ । ଆମ୍ଭମାନଙ୍କ ମଧ୍ୟରେ ଆପୋଷ ସମାଧାନର ସୂତ୍ର ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଅଛି । ମୁଁ ନିଜେ କଳହ କଳିବାଲା ଦଳର ଜଣେ ନେତା । ଯାହା କିଛି ହେଉ, ପରେ ମଧ୍ୟ, ମୋର ଦୃଢ଼ ବିଶ୍ୱାସ, ସମସ୍ତ ଆସିବ, ପରିସ୍ଥିତି ବଦଳିବ । ଏପରି କୌଣସି କଥା ଘଟିବ ନାହିଁ, ଯାହା ଏହି ଦେଶକୁ ଗୋଟିଏ ସୁଦୃଢ଼ ରାଷ୍ଟ୍ରଗଠନ କରିବାରେ ବାଧା ସୃଷ୍ଟି କରିବ । ଆମ୍ଭମାନଙ୍କର ଜାତି, ଧର୍ମ

ଓ ସ୍ୱାର୍ଥଗତ ବିଭେଦ ଯେତେ ଥିଲେ ମଧ୍ୟ, ମୋତେ ଏହା କହିବାକୁ ତିଳେହେଲେ କୁଣ୍ଠାବୋଧ ହେଉନାହିଁ, ଯେକୌଣସି ରୂପରେ ହେଉନା କାହିଁକି ଆମ୍ଭେ ଗୋଟିଏ ରାଷ୍ଟ୍ରଗଠନ କରି ରହିବା । ମୋତେ ଏହା ମଧ୍ୟ କହିବାକୁ ଦ୍ୱିଧା ନାହିଁ ଯେ, ଭାରତର ଭାଗବାଣ୍ଟ କରିବାରେ ମୁସ୍‌ଲିମ ଲିଗର ଦାବିର ପରିମାଣ ପାଇ ଏପରି ଏକଦିନ ଆସିବ, ଯେତେବେଳେ ଖୋଦ୍ ମୁସଲମାନମାନେ ଭାବିବେ ଓ ବିଚାର କରିବେ, ଅଖଣ୍ଡ ଭାରତ ହିଁ ସମସ୍ତଙ୍କପାଇଁ କଲ୍ୟାଣକର ଅଟେ ।

ଯେଉଁପର୍ଯ୍ୟନ୍ତ ଶେଷ ସିଦ୍ଧାନ୍ତ ନେଇ ଆଲୋଚନା ଚାଲିଛି, ସେ ସମସ୍ତ ମଧ୍ୟରେ ମୁଁ କାହାରି ମନରେ କୌଣସି ପ୍ରକାର ସନ୍ଦେହ ରଖିବାକୁ ଚାହେଁ ନାହିଁ । ଆମ୍ଭମାନଙ୍କର କଷ୍ଟସାଧ୍ୟ ଶେଷ ଲକ୍ଷ୍ୟକୁ ନେଇ, ମୁଁ ସ୍ଥିର ହୋଇ ରହେ ନାହିଁ । ଆମ୍ଭମାନଙ୍କ ଆଗରେ ଏକ ଶ୍ରେଷ୍ଠ କର୍ତ୍ତବ୍ୟ ହେଉଛି, ଏହି ଯେଉଁ ଖିଚୁଡ଼ି ସମାଜ, ତାକୁ ଯେକୌଣସି ପ୍ରକାରେ ହେଉ, ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ଉପରେ ଏକମତ କରାଇ ସମସ୍ତଙ୍କୁ ମିଳିତ ଭାବେ ଗୋଟିଏ ରାସ୍ତାକୁ ଆଣିବାକୁ ପଡ଼ିବ । ଯାହା ଆମ୍ଭମାନଙ୍କୁ ଏକତା ଦିଗକୁ ନେଇଯାଇ ପାରିବ ।

ଏହି କାରଣରୁ ମୁଁ ଏହା ଭାବିବାକୁ ଠିକ୍ ବିଚାରୁଛି । ପ୍ରାରମ୍ଭିକ କାର୍ଯ୍ୟାନୁଷ୍ଠାନ ନିକଟରେ, ଏହି ଦେଶର ପ୍ରତ୍ୟେକ ବିଭାଗ ଓ ପ୍ରତ୍ୟେକ ଶ୍ରେଣୀକୁ ସହଯୋଗ କରିବାର ପ୍ରେରଣା ଦେବାରୁ, ଏହା ବଡ଼ ଦୂରଦର୍ଶିତା ଓ ନ୍ୟାୟପରାୟଣତାର କଥା ହେବ, ଯଦି କୌଣସି ଲୋକ, ଯେଉଁମାନେ କି, ଏକସଙ୍ଗରେ ଚାଲିବାକୁ ଅକ୍ଷମ ଏବଂ ସେମାନଙ୍କ ମନରେ ନାନା ପ୍ରକାର ଗ୍ଳାନି ସନ୍ଦେହ ଜମାଟ ବାନ୍ଧିଛି, ସେମାନଙ୍କୁ ସମକକ୍ଷ କରିବାକୁ କିଛି ଅତିରିକ୍ତ ସୁବିଧା ଦେଇ ଦିଆଯିବା ଉଚିତ୍ । ମୋର ଅନୁରୋଧ କରିବାର ଉଦ୍ଦେଶ୍ୟ ହେଲା, ସେମାନେ ଯେଉଁ ସନ୍ଦେହ ଦୋଳାରେ ଦୋଳାୟିତ, ଆମ୍ଭେମାନେ ସେହି ଦୋଳନ ରସିକୁ ଏପରି କୋହଳ କରିଦେବା, ଯାହା ଫଳରେ ସେମାନେ ନିଜେ ଉଦ୍‌ବୁଦ୍ଧ ହୋଇ ସାଧାରଣ ଦୋଳନ ଚକ୍ରକୁ ସ୍ୱତଃ ଆସିଯିବେ । ଏଣୁ ସେମାନଙ୍କର ବିରୋଧୀ ସନ୍ଦେହାକ୍ରାନ୍ତ ମନୋଭାବକୁ ଦୂର କରିବାକୁ ଆମ୍ଭେମାନେ ସେମାନଙ୍କୁ କିଛି ବିଶେଷ ସୁବିଧା ଦେବା ଉଚିତ୍ । ଆମ୍ଭେ ସେମାନଙ୍କୁ ଆମମାନଙ୍କ ସହିତ ସମକକ୍ଷ କରି ସାଥିରେ ନେଇଯିବା, ଯାହାଦ୍ୱାରା ସେମାନେ ସ୍ୱେଚ୍ଛାପୂର୍ବକ, ଅନୁସନ୍ଧିତ ଏହି ରାସ୍ତା ଉପରେ ପାଦ ସହିତ ପାଦ ମିଳାଇ ଚାଲିବାକୁ ଅଗ୍ରସର ହୋଇ ପାରିବେ । ଏହାହିଁ, ଆମ୍ଭମାନଙ୍କୁ ନିଃସନ୍ଦେହରେ ଏକତା ଆଡ଼କୁ ନେଇଯାଇ ପାରିବ । ଏହି ଦୃଷ୍ଟିରୁ ମୁଁ ଶ୍ରୀ ଜୟକରଙ୍କର ସଂଶୋଧନକୁ ସମର୍ଥନ କରୁଅଛି । ଏହି ମୁହୂର୍ତ୍ତକୁ ଏହି କଥା ଦ୍ୱାରା ଏଡ଼ାଇ ଦେଇଯିବା ଉଚିତ୍ ନୁହେଁ ଯେ, ସେଠାରେ ଯାହା ସ୍ଥିର କରା-

ହେବାକୁ ଯାଉଛି, ତାହା ଆଇନଗତ ଅଧିକାର ରୂପେ ସାବ୍ୟସ୍ତ ହେବ ନାହିଁ । ଏହା ଏପରି ଏକ ପ୍ରଶ୍ନ, ଯାହା ଆଇନ ବନ୍ଧନରେ ବନ୍ଧାଯାଇ ପାରିବ ନାହିଁ । ଏହିସବୁ କଥାକୁ ଗୋଟିଏ ପାଖରେ ରଖି ଏପରି କିଛି କରାଯାଇ ପାରେ, ଯେଉଁ ଲୋକ ଏକାଠି ରହିବାକୁ ପ୍ରସ୍ତୁତ ନୁହନ୍ତି, ସେମାନେ ମଧ୍ୟ ଏକାଠି ରହିବାକୁ ଧାଇଁ ଆସିବେ । ସେମାନଙ୍କୁ ଆମେ ନିଃସନ୍ଦେହରେ ଦେଖାଇ ଦେବୁ ଯେ, ସେମାନେ ସମତାଳରେ ଚାଲି ପାରନ୍ତି ।

ଏହି ପ୍ରସ୍ତାବର କେବଳ ଏହାହିଁ ପରିଣାମ ହେବ ଯେ, ମୁସଲମାନମାନେ, ପାଖେ ପୂରାଇ ଦେବେ ନାହିଁ । ନିଜ କଥାର ସମର୍ଥନରେ ମୁଁ ଆପଣମାନଙ୍କର ଧ୍ୟାନ, ଏହି ପ୍ରସ୍ତାବର ନ୍ୟାସ୍ତଧାରା ପ୍ରତି ଆକର୍ଷିତ କରୁଛି । ଯେଉଁଥିରେ ଭାରତର ଭବିଷ୍ୟତ-ସମ୍ବିଧାନର ରୂପ ଉପରେ ଛାପ ପକାଇ ପାରିବ । ମୁଁ ଏହି କଥାକୁ ମାନେ ଯେ, ଯେତେବେଳେ ଏହି ପ୍ରସ୍ତାବ ଗୃହୀତ ହୋଇଯିବ, ସେତେବେଳେ ଏହି ବିଧାନ ନିର୍ମାଣ ସଭା ପାଇଁ, ସମ୍ବିଧାନ ନିର୍ମାଣ ଦୃଷ୍ଟିରୁ ଏକପ୍ରକାର ଆଦେଶ ବୋଲି ଧରି ନିଆଯିବ । ଯେଉଁ ଅନୁଚ୍ଛେଦର ଏହି ବିଷୟବସ୍ତୁ, ସେଥିରେ ସ୍ୱଶାସିତ ପ୍ରାନ୍ତୀୟ ଶାସନ, ଭାରତୀୟ ରାଜ୍ୟ ଓ କେନ୍ଦ୍ରୀୟ ସରକାର ପ୍ରତି ମଧ୍ୟ ଲାଗୁ ହେବ । ଏଥିରେ ମଧ୍ୟ-କାଳୀନ ଶ୍ରେଣୀ ବିଭାଗର ଚର୍ଚ୍ଚା କରାଯାଇ ନାହିଁ । ଷ୍ଟେଟପେପର ଓ କଂଗ୍ରେସ କାର୍ଯ୍ୟକାରୀ ସମିତି ଦ୍ୱାରା ସ୍ୱୀକୃତ ଫର୍ମୁଲା ପ୍ରସ୍ତାବକୁ ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗେ ଯେ, ଏଥିରେ ବର୍ଗୀକରଣ କରିବାର ବିଚାର ସମ୍ବନ୍ଧରେ ଉଲ୍ଲେଖ ମଧ୍ୟ ନାହିଁ । ଯେଉଁ ପର୍ଯ୍ୟନ୍ତ ମୋର ବ୍ୟକ୍ତିଗତ ପ୍ରଶ୍ନ ରହିଛି, ମୁଁ ସେଥିରେ କୌଣସି-ମତେ ରାଜି ହୋଇ ପାରିବି ନାହିଁ । ୧୯୩୫ରେ ଯେଉଁଭଳି ଶକ୍ତିଶାଳୀ କେନ୍ଦ୍ରୀୟ ଶାସନ ସ୍ଥାପନ କରାଯାଇଛି ମୁଁ ତା'ଠାରୁ ମଧ୍ୟ ଶକ୍ତିଶାଳୀ କେନ୍ଦ୍ରୀୟ ସରକାରର ପକ୍ଷପାତୀ । କିନ୍ତୁ ମୋର ଏହି ଇଚ୍ଛାକୁ ନେଇ ଦେଶର ବର୍ତ୍ତମାନ ପରିସ୍ଥିତିରେ ତାଳ ମିଳାଇ ଧାର୍ଯ୍ୟ କରାଯାଇ ପାରିବ ନାହିଁ । ଆମ୍ଭେମାନେ ବହୁ ଦୂର ପର୍ଯ୍ୟନ୍ତ ଆଗେଇ ଯାଇଛୁ ଏବଂ ମୁଁ ଜାଣେନାହିଁ, କେଉଁ କାରଣରୁ କଂଗ୍ରେସ ଦଳ ପ୍ରଶାସନ ଦ୍ୱାରା ନିର୍ମିତ ଏହି ଶକ୍ତିଶାଳୀ କେନ୍ଦ୍ରୀୟ ସରକାରର ଗୁରୁତ୍ୱକୁ, ଯାହାକି ମୋର ପ୍ରଶଂସା ତଥା ଆଦରର ବସ୍ତୁ, ତାକୁ ଦୋହଲାଇ ପକାଇବାକୁ ରାଜି ହୋଇଗଲେ ।

ବର୍ତ୍ତମାନ ପରିସ୍ଥିତିରେ ଏହା ଅନୁକୂଳ ନୁହେଁ । ଏତିକି ମାତ୍ର କହିଦେଲି ପରେ କଣ ଆମେ ଶକ୍ତିଶାଳୀ କେନ୍ଦ୍ରୀୟ ସରକାର ଚାହୁଁ ନାହୁଁ ? ଏହା ଦାବୀ କଲି ପରେ କ'ଣ ମଝିରେ ଏକ ପ୍ରାନ୍ତୀୟ ବର୍ଗୀକରଣ ହେବା ଉଚିତ୍ ? ମୁଁ ଜାଣିବାକୁ ଚାହେଁ ଯେ, ତୃତୀୟ ଅନୁଚ୍ଛେଦରେ ଏହି ବର୍ଗୀକରଣର ବିଚାରକୁ କାହିଁକି ସ୍ଥାନ ଦିଆଗଲା ନାହିଁ ? ମୁଁ ଏକଥାରୁ ଭଲଭାବେ ବୁଝିଛି ଯେ ବର୍ଗୀକରଣ ବ୍ୟାଖ୍ୟା ବିଷୟରେ କଂଗ୍ରେସ, ମୁସଲିମ୍ ଓ ମହାମହିମ ସରକାରଙ୍କର ଗୋଟିଏ

ମତ ନୁହେଁ । କିନ୍ତୁ ମୁଁ ସବୁବେଳେ ମାନି ଆସିଛି ଯେ, କଂଗ୍ରେସର ମତ ଅନୁଯାୟୀ ନିଜର ଏକ ଉପସଂଘ ଗଠନ କରାଯିବ, ତାହା ହେଲେ କଂଗ୍ରେସର ଏଥିରେ କୌଣସି ଆପତ୍ତି ହେବ ନାହିଁ । ମୋର ଏହି ଉଦ୍ଦେଶ୍ୟରେ, କିଛି ତ୍ରୁଟି ଥାଏ ତେବେ, ମୁଁ ତାହା ସୁଧାରି ନେବା ପାଇଁ ପ୍ରସ୍ତୁତ ଅଛି । ଏହି ଅବସ୍ଥା ଉପସଂଘ ଗଠନ କରିବାର ସମ୍ଭାବନାକୁ ପ୍ରସ୍ତାବରେ ଏକଦମ୍ କିପରିଭାବେ ଉଠାଇ ଦିଆଗଲା ? ମୁଁ ଏହି ପ୍ରଶ୍ନ ଉଠାଉ ନାହିଁ ଯେ, ଏ ଗୃହର ଏପ୍ରକାର ପ୍ରସ୍ତାବ ପାଶ୍ କରିବା ପାଇଁ ଅଧିକାର ଅଛି ନା ନାହିଁ । ସମ୍ଭବ ହୁଏ ଏହାର ଅଧିକାର ଅଛି । ମୋର ପ୍ରଶ୍ନ ଏହା ହେଉଛି ଯେ, ଏପ୍ରକାର ପ୍ରସ୍ତାବକୁ ଗ୍ରହଣ କରି ନେବା କଣ ନିଜ ପାଇଁ ଏକ ବୁଦ୍ଧିମାନର କଥା ? ହାତରେ କ୍ଷମତା ନାହିଁ, ତାହା ଏକ କଥା । ବୁଦ୍ଧି ତଥା ବିବେକ ସବଦା ଅଲଗା ଅଲଗା । ମୁଁ ଏହା ମଧ୍ୟ ଚାହୁଁ ନାହିଁ ଯେ, ମୁହଁ ଏମିତି ପ୍ରଶ୍ନ ଉପରେ ଏପରି ଦୃଷ୍ଟି ଦେଇ ବିଚାର କରୁ, ଯାହା ବିଧାନ ନିର୍ମାଣ ସଭାର ଏପରି ପ୍ରସ୍ତାବକୁ ସ୍ୱୀକାର କରିନେଇ ବୁଦ୍ଧିମାନ ଓ ବିଚାରବାନର ପରିଚୟ ଦେବ । ମୋର ବିଚାର ହେଉଛି ଯେ, କଂଗ୍ରେସ ଓ ଲିଗ୍ ମଧ୍ୟରେ ମେଣ୍ଟ ସ୍ଥାପନା କରିବା ପାଇଁ ଆଉ ଏକ ଚେଷ୍ଟା କରିବା ଉଚିତ୍ । ଏହା ଏପରି ଏକ ମହତ୍ତ୍ୱପୂର୍ଣ୍ଣ ଲୋକ-ହିତକର ବିଷୟ, ଏହାର ନିର୍ଣ୍ଣୟ ପାଇଁ ଆମ୍ଭେମାନେ ଏହି, ବା ଏହି ପାର୍ଟିର ସ୍ୱାଭିମାନ ପ୍ରତି ଦୃଷ୍ଟି ନଦେବା ଉଚିତ୍ । ଆମ୍ଭମାନଙ୍କର ଦୃଷ୍ଟି ଦେଶହିତ ଓ ଆମର ଜନତାଙ୍କର ହିତ ଦିଗକୁ ହେବା ଉଚିତ୍ । ଯେତେବେଳେ ଆମ୍ଭେ-ମାନେ ଜନସାଧାରଣଙ୍କର ଭାଗ୍ୟ ନିର୍ଣ୍ଣୟ କରିବାକୁ ଯାଉଛନ୍ତି, ଆମ୍ଭେ ନେତାମାନେ ବ୍ୟକ୍ତିବିଶେଷ ବା ପାର୍ଟିର ସ୍ୱାଭିମାନ ଚିନ୍ତା କରିବା ଉଚିତ୍ ନୁହେଁ । ଏହି ସମସ୍ୟାକୁ ସମାଧାନ କରିବାର କେବଳ ୩ଟି ରାସ୍ତା ଅଛି । (୧) ଗୋଟିଏ ପାର୍ଟି ଅନ୍ୟ ପାର୍ଟିର ଇଚ୍ଛା ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିବ (୨) ଆପୋଷ ବୁଝାମଣାଦ୍ୱାରା ସେମାନଙ୍କର ମତର ଆଧାର ଉପରେ ଶାନ୍ତି ସ୍ଥାପନ କରାଯିବ ଓ(୩) ଖୋଲାଖୋଲି ଭାବେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ପଡ଼ିବ ।

ବିଧାନ ନିର୍ମାଣ ସଭାର କେତେକ ସଦସ୍ୟଙ୍କଠାରୁ ଶୁଣିବାକୁ ମିଳିଲା, ସେମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ଅଛନ୍ତି । ମୁଁ ଏହା ଚିନ୍ତାକରି ଖୁବ୍ ହତାଶ ହୋଇ-ପଡ଼ିଲି । କିବୁଝି, ଏହି ଦେଶରେ କୌଣସି ଲୋକ କ'ଣ ଏହା ମଧ୍ୟ ଚିନ୍ତା କରିପାରେ ଯେ, ରାଜନୈତିକ ସମସ୍ୟା, ଯୁଦ୍ଧଦ୍ୱାରା ସମାଧାନ କରାଯାଇ ପାରିବ ? ମୁଁ ଜାଣେନାହିଁ କେତେ ଲୋକ ଏହି ବିଚାରକୁ ସମର୍ଥନ କରିବେ ! ହୋଇପାରେ କେତେକ ଲୋକ ସମର୍ଥନ କରୁଛନ୍ତି, ମାତ୍ର ଏହିପରି ଲୋକଙ୍କ ସଂଖ୍ୟା ଖୁବ୍ କମ୍ । ମୁଁ ଏଣୁ ଏହା ବୁଝୁଛି, ସେହି ଲୋକମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଧାରଣା, ଏହି ଯୁଦ୍ଧ ବ୍ରିଟିଶ ଲୋକଙ୍କ ବିରୁଦ୍ଧରେ ହେବ । କିନ୍ତୁ ଯେଉଁ ଯୁଦ୍ଧ ଲୋକମାନଙ୍କ

ମୂଣ୍ଡରେ ଅଛି, ତାହା ଯଦି ସେମାନେ ସବୁ ଦଗରୁ ବ୍ରିଟିଶ ଲୋକମାନଙ୍କ ବିରୁଦ୍ଧରେ ଖଟାନ୍ତି, ମୋର କିଛି ନକହିବା ଉଚିତ୍ । କିନ୍ତୁ ଏହି ଯୁଦ୍ଧ କ'ଣ ବ୍ରିଟିଶ ଲୋକଙ୍କ ବିରୁଦ୍ଧରେ ହୋଇ ପାରିବ ? ମୁଁ ଏକଥାକୁ ସ୍ପଷ୍ଟ କରି ଦେବାକୁ ଚାହେଁ ଯେ, ଯଦି ଦେଶରେ ଏଭଳି କୌଣସି ଯୁଦ୍ଧ ହୁଏ, ଏବଂ ତାହାର କୌଣସି ଅଂଶ ଆମର ଏହି ବିସ୍ତୃତାଧୀନ ପ୍ରଶ୍ନସହ ଥାଏ, ତାହାହେଲେ ଏହି ଯୁଦ୍ଧ ବ୍ରିଟିଶ ଲୋକଙ୍କ ସହ ହେବନାହିଁ । କେବଳ ମୁସଲମାନମାନଙ୍କ ସହିତ ହେବ । ଏଥିରେ ମଧ୍ୟ ଖରାପ କଥା ଏହା ହୋଇ ପାରେ, ଏହି ଯୁଦ୍ଧ ଇଂରେଜ ଓ ମୁସଲମାନ ମିଳିତ ଶକ୍ତି ସହିତ ହେବ । ମୁଁ ଏହି ଯୁଦ୍ଧ ବିଷୟରେ ଯେଉଁସବୁ କଥା ଶୁଣି ଯାଉଅଛି, ତା'ହା ବ୍ୟତୀତ ଅନ୍ୟ କୌଣସି କଥା ଚିନ୍ତା ମଧ୍ୟ କରିପାରି ନଥାନ୍ତି ।

କାହାର କିଣ, ଧାରଣା ଅଛି ଯେ, ଯୁଦ୍ଧଦ୍ୱାରା ଏହି ସମସ୍ୟା ସମାଧାନ ହୋଇ ପାରିବ ? ଯଦି ମୁସଲମାନ୍ ମାନଙ୍କର ଏପରି ଧାରଣା ସୃଷ୍ଟି ହୋଇଥାଏ ଯେ, ଜବରଜସ୍ତ ଭାବେ ଗୋଟିଏ ସମ୍ବିଧାନ ନିର୍ମାଣକରି ସେମାନଙ୍କର ଅଜାଣତରେ ତାହାଙ୍କର ସ୍ୱୀକୃତି ନିଆ ହୋଇ ଯାଇଛି, ତାହାହେଲେ ଏମାନଙ୍କୁ ଏ ଦେଶରେ ସଦା ସର୍ବଦା ଯୁଦ୍ଧକରି ଲଢିବାକୁ ପଡ଼ିବ । ଏଥିପାଇଁ ଏଡମଣ୍ଡ ବର୍କ କହିଥିଲେ "ବଳ ଦେବା ସହଜ, ମାତ୍ର ବୁଦ୍ଧି ଦେବା କଷ୍ଟକର" । ଆମ୍ଭେମାନେ ସେହିଁକି ନିଜର ଆଚରଣ ଦ୍ୱାରା ଏହା ପ୍ରମାଣ କରିଦେଇ ପାରିବା, ଆମ୍ଭେ କେବଳ ଶକ୍ତିନୁହେଁ ଏପରିକି ବୁଦ୍ଧି ବଳରେ ନିଜ ଦେଶର ସମସ୍ତ ଲୋକଙ୍କୁ ଏକ ସାଥିରେ ନେଇ ଚାଲିପାରିବୁ । ଯାହା ଆମ୍ଭମାନଙ୍କୁ ନିଶ୍ଚିତ ରୂପେ ଏକତା ଦିଗକୁ ଆଗ୍ରହର ପନିଷ୍ଠ ସୂତ୍ରରେ ଯୋଡ଼ିଦେବ ।

—o—

# ରାଜନୀତିକ ଶକ୍ତି, ସାମାଜିକ ଉନ୍ନତିର ଗୁରୁକାଠି

(୧୯୪୮ ମସିହା ଏପ୍ରିଲ୍ ୨୫ ତାରିଖ ଦିନ ଲକ୍ଷ୍ନୌଠାରେ ସିଡ୍ୟୁଲଡ୍‌କାଷ୍ଟ ଫେଡେରେସନ୍ କନ୍‌ଫରେନ୍‌ସ୍‌ରେ ବାବାସାହେବଙ୍କର ଦେଇଥିବା ଏକ ମହତ୍ତ୍ୱ-ପୂର୍ଣ୍ଣ ବ୍ୟାଖ୍ୟାନ । ଏହି ସମୟରେ ଲକ୍ଷ୍ନୌର ବ୍ୟାକୱାର୍ଡ କ୍ଲାସ୍ ଲିଗ୍‌ର ନେତାମାନେ ମଧ୍ୟ ସେମାନଙ୍କର ସମସ୍ତ ଲୋକଙ୍କୁ ନେଇ ଉପସ୍ଥିତ ଥିଲେ ଓ ବାବାସାହେବଙ୍କୁ କିଛି କହିବାକୁ ଅନୁରୋଧ କରିଥିଲେ । ବାବାସାହେବ ଏ ପ୍ରସ୍ତାବରେ ରାଜିହୋଇ ପଛୁଆ ଶ୍ରେଣୀର ଭାଇମାନଙ୍କର ହିତପାଇଁ ନିଜର ବହୁମୂଲ୍ୟ ସମୟଦେଇ ନିମ୍ନୋକ୍ତ ଭାଷଣ ଦେଇଥିଲେ)

ଭାଇମାନେ,

ସବୁପ୍ରକାରର ସାମାଜିକ ଉନ୍ନତିର ଗୁରୁକାଠି ହେଉଛି, ରାଜନୀତିକ ଶକ୍ତି । ଯଦି ପରିଗଣିତ ଜାତିସମୂହ ନିଜେ ନିଜକୁ ଏକ ତୃତୀୟ ରାଜନୀତିକ ଶକ୍ତି ରୂପେ ସଙ୍ଗଠିତ କରିନେଇ ପାରନ୍ତି, ଏବଂ କଂଗ୍ରେସ ବା ସୋସିଅଲିଷ୍ଟ ଦୁଇ ପରସ୍ପର ବିରୋଧୀ ପାର୍ଟିଙ୍କ ମଝିରେ ଏକ ତୃତୀୟ ଶକ୍ତି ରୂପେ ଛିଡ଼ା ହୁଅନ୍ତି, ତାହାହେଲେ ସେମାନେ ରାଜନୈତିକ ଶକ୍ତି ଲାଭକରି ନିଜର ମୁକ୍ତିର ଦ୍ୱାର ନିଜେ ଖୋଲି-ଦେବାକୁ ସକ୍ଷମ ହୋଇ ପାରିବେ । ପରିଗଣିତ ଜାତିମାନେ କଂଗ୍ରେସ ସହ ମିଳିତ ହୋଇ, ରାଜନୈତିକ ଶକ୍ତି ପାଇପାରିବେ ନାହିଁ । କଂଗ୍ରେସ ଏକ ବୃହତ୍ ସଙ୍ଗଠନ । ଯଦି ଆମ୍ଭେମାନେ ଏଥିରେ ପ୍ରବେଶ କରନ୍ତି, ତାହାହେଲେ ଆମ୍ଭମାନଙ୍କର ସ୍ଥିତି ସମୁଦ୍ର ମଧ୍ୟରେ ଏକ ବିନ୍ଦୁ ଜଳର ପରିମାଣ ସଦୃଶ ହେବ । କଂଗ୍ରେସର ଲୋକମାନେ ବଡ଼ ଉଚ୍ଚାକାଂକ୍ଷୀ । ଆପଣମାନେ ଏହି ସଙ୍ଗଠନରେ ପ୍ରବେଶ କରି ନିଜକୁ ଉପରକୁ ଉଠାଇପାରିବେ ନାହିଁ । ଯଦି ଆପଣ କଂଗ୍ରେସରେ ସାମିଲ ହେବେ, ତାହାହେଲେ ଆପଣ କେବଳ ନିଜର ଶତ୍ରୁମାନଙ୍କର ଶକ୍ତି ବଢ଼ାଇବେ ।

କଂଗ୍ରେସଭବନ ନିଆଁରେ ଜଳୁଛି । ସେଥିରେ ପ୍ରବେଶ କରି ଆପଣ କୌଣସି ମଙ୍ଗଳ କରି ପାରିବେ ନାହିଁ । ମୁଁ ଆଶ୍ଚର୍ଯ୍ୟ ହେବି ନାହିଁ, ଯଦି ଏହା ୨/୪ ବର୍ଷ ପରେ ଭୁଷୁଡ଼ିପଡେ । ସୋସାଲିଷ୍ଟ କଂଗ୍ରେସଠାରୁ ବାହାରି ଆସିଛି ।

କଂଗ୍ରେସଠାରେ ଅନ୍ତରଭେଦ ଓ ବଡଭେଦ ରହିଛି । ଏଥିରୁ ଏହା ନିଶ୍ଚିତ ଯେ, କଂଗ୍ରେସ ଅଳ୍ପଦିନ ମଧ୍ୟରେ କମ୍‌ଜୋର ହୋଇଯିବ ।

ଏଣୁ ଆମ୍ଭମାନଙ୍କର, ଏକ ତୃତୀୟ ପାର୍ଟି ରୂପେ ସଙ୍ଗଠିତ ହୋଇଯିବା ଉଚିତ୍ । ଯାହାଫଳରେ କଂଗ୍ରେସ ପାର୍ଟିରେ ନିର୍ବାଚନ ସଂଖ୍ୟାଗରିଷ୍ଠତା ରହିବ ନାହିଁ । ଯୋଗାଳିଷ୍ଟଙ୍କ ପାଖରେ ମଧ୍ୟ ଏହିପରି ସଂଖ୍ୟାଗରିଷ୍ଠତା ରହିବ ନାହିଁ । ଏହି ଦୁହିଙ୍କ ନିର୍ବାଚନ ସମୟରେ ଆମ୍ଭମାନଙ୍କ ପାଖରେ ସେମାନଙ୍କୁ ଭୋଟ ଭିକ୍ଷା କରିବାକୁ ପଡ଼ିବ । ସେତେବେଳେ ଆମେ ଦୁଇ ପାର୍ଟି-ଶକ୍ତିର ସନ୍ତୁଳନ କାର୍ଯ୍ୟ କରିପାରିବା । ଆମ୍ଭମାନଙ୍କର ରାଜନୈତିକ କ୍ଷମତା ପାଇଁ ସେମାନଙ୍କଠାରେ ପ୍ରଥମେ ଆମ୍ଭମାନଙ୍କର ସର୍ତ୍ତ ଉପସ୍ଥାପନ କରିବାକୁ ସକ୍ଷମ ହୋଇ ପାରିବା ।

ବାରବର୍ଷ ପୂର୍ବେ ମୁଁ "ଲେଥିଅନ କମିଟି"ର ଜଣେ ସଦସ୍ୟର କ୍ଷମତାନେଇ ଲକ୍ଷ୍ନୌ ଆସିଥିଲି । ଏହା ଦେଖି ମୁଁ ଖୁସି ହେଉଛି ଯେ, ସେତେବେଳେ ଅପେକ୍ଷା ବର୍ତ୍ତମାନ, ତଫସିଲି ଜାତିମାନଙ୍କ ମଧ୍ୟରେ ରାଜନୈତିକ ଚେତନା ଅଧିକ-ମାତ୍ରାରେ ଜାଗ୍ରତ ହୋଇଛି । ଆମ୍ଭେମାନେ ଉତ୍ତରପ୍ରଦେଶରେ ସତ୍ୟାଗ୍ରହ କରିଥିଲୁ । ଆପଣମାନେ ନିଜର ସମାଜ ପାଇଁ ଯେଉଁ ଆତ୍ମବଳିଦାନ କରିଛନ୍ତି, ସେଥିପାଇଁ ମୁଁ ଆପଣମାନଙ୍କୁ ଧନ୍ୟବାଦ ଦେଉଛି । ଏଥିରୁ ନିଶ୍ଚିତ ହୁଏ ଯେ, ଯଦି ଆପେ ନିଜର ଲକ୍ଷହାସଲ ପାଇଁ କମର ଭିଡ଼ିବା, ତାହାହେଲେ ଆମ୍ଭେ ସମସ୍ତ ପ୍ରକାରର ବାଧାଗୁଡ଼ିକୁ, ଯାହା ଆମ୍ଭମାନଙ୍କର ସମ୍ମୁଖରେ ଦେଖାଦେବ, ମୁକାବିଲା କରି ନିଜର ଲକ୍ଷକୁ ଅବଶ୍ୟ ହାସଲ କରିପାରିବା । ମୁଁ ଯେଉଁ କଂଗ୍ରେସ ସରକାର ସହିତ ସମ୍ମିଳିତ ହୋଇଛି, ସେଥିରେ ପରିଗଣିତ ଜାତିମାନଙ୍କର କହିତ ଦୋଷ ତ୍ରୁଟି ସୃଷ୍ଟି ହୋଇ ଯାଇଛି । ମୁଁ ସେହି ଦୋଷ ତ୍ରୁଟି ଓ ସନ୍ଦେହଗୁଡ଼ିକୁ ଦୂର କରି ଦେବାକୁ ଚାହେଁ । ଇଂରେଜ ଲୋକମାନେ ସେମାନଙ୍କର ଜବାବ୍ ରଖିଲେ ନାହିଁ । ସେମାନେ ହିନ୍ଦୁ, ମୁସଲମାନ, ଶିଖ୍ ଏହି ତିନୋଟି ଜାତିଙ୍କୁ ରାଜନୈତିକ ସତ୍ତା ଅର୍ପଣ କରିବାକୁ ସ୍ଥିର କଲେ । ମୋତେ ଏହା ପଚରାଯାଇ-ପାରେ ଯେ, ଗତ ୨୫ ବର୍ଷଧରି କଂଗ୍ରେସ ବିରୁଦ୍ଧରେ ଲଢ଼େଇ କରି ଆସି ଏହି ଠିକ୍ ସମୟ ବେଳେ ମୁଁ କାହିଁକି ଚୁପ୍ ହୋଇଗଲି ? ଏହାର ଉତ୍ତରରେ ମୋର ନିବେଦନ ହେଉଛି, ସବୁବେଳେ ଯୁଦ୍ଧରେ ବ୍ୟାପୃତ ରହିବା କୌଣସି ଉତ୍ତମ ଯୁଦ୍ଧ କୌଶଳ ନୁହେଁ । ଆମ୍ଭେମାନେ ଅନ୍ୟ ଏକ କୌଶଳର ମଧ୍ୟ ସୁଯୋଗ ନେବା ଉଚିତ୍ !

ବ୍ରିଟେନରେ ଲୋକମାନଙ୍କୁ ଆମ୍ଭେମାନେ ଅଧାବାଟରେ ଛାଡ଼ିଦେଲେ ।

ଆମ୍ଭେମାନେ ତାହାଙ୍କୁ ଦେଖିଲେ ନାହିଁ । ଅମ୍ଭମାନଙ୍କ ନିଜ ସମାଜ ମଧ୍ୟରେ ଏକତା ନାହିଁ । ଅମ୍ଭମାନଙ୍କ ମଧ୍ୟରେ ବହୁତ ପ୍ରେମ ବାନ୍ଧନୀ, ଜୟଚନ୍ଦ୍ର ଅଛନ୍ତି । ଏହି ସମୟରେ ଓ ଏହି ପରିସ୍ଥିତିରେ ଗୋଟିଏ ଶକ୍ତିଶାଳୀ ସଙ୍ଗଠନ ମଧ୍ୟରେ ଯୋଗଦେବା ବା ସହଯୋଗ କରିବା ବ୍ୟତୀତ ଅମ୍ଭମାନଙ୍କର ସମାଜପାଇଁ ଅନ୍ୟ କିଛି ହିତକର ଉପାୟ ନଥିଲା ।

ଏହି କାରଣରୁ ମୁଁ ମିଳାମିଶାର ନୀତି ଗ୍ରହଣ କଲି ଏବଂ ଏହାର ଫଳ ସ୍ୱରୂପ ଏକ ବଡ ଧରଣର ସୁଯୋଗ ପାଇବାରେ ମଧ୍ୟ ସଫଳତା ଲାଭ କଲି । ଏହା ଠିକ୍ ଯେ, ଯାହାକିଛି ମୁଁ ଚାହୁଁଥିଲି, ତାହାସବୁ ମୋତେ ମିଳିଲନାହିଁ । କିନ୍ତୁ ତଥାପି ଆମକୁ ବହୁତ କିଛି ମିଳିପାରିଛି । ଆମ୍ଭେମାନେ ବିଧାନସଭା ମାନଙ୍କରେ ଓ ସରକାରୀ ଚାକିରୀ କ୍ଷେତ୍ରରେ ସୁରକ୍ଷିତ ସ୍ଥାନ ପାଉଅଛୁଁ । ଅମ୍ଭ-ମାନଙ୍କର ଅନ୍ୟାନ୍ୟ ବହୁତକିଛି ଦାବୀ ମଧ୍ୟ ମଞ୍ଜୁର କରି ଦିଆଯାଇଛି । ଅମ୍ଭ-ମାନଙ୍କର ପୃଥକ ପ୍ରତିନିଧିତ୍ୱ ଓ ପୃଥକ ନିର୍ବାଚନରେ ଦାବୀ ଗ୍ରହଣ ହୋଇନାହିଁ, କିନ୍ତୁ ଏଥିପାଇଁ ଆମ୍ଭେମାନେ ଲଜ୍ଜିତ ହେବାର ଆବଶ୍ୟକତା ନାହିଁ । କାରଣ ଅନ୍ୟ ସଂଖ୍ୟାଲଘୁ ମାନଙ୍କୁ ମଧ୍ୟ ଏହିଥିରେ ସଫଳତା ମିଳିନାହିଁ । ଏହି ସମୟରେ କଂଗ୍ରେସ ସହିତ ସଂଘର୍ଷ କରିବାର ନୁହେଁ । ମିଳାମିଶା ଦ୍ୱାରରେ ମଧ୍ୟ ଅଧିକରୁ ଅଧିକ କାର୍ଯ୍ୟ ହାସଲ କରିହେବ । ତାହାହିଁ କରିବା ଉଚିତ୍ ।

ଏହା ସତ୍ୟ ଯେ, ମୁଁ କେନ୍ଦ୍ର ସରକାର ସହିତ ମିଶିଯାଇଛି । କିନ୍ତୁ ମୁଁ କଂଗ୍ରେସ ଟିକେଟରେ ନିର୍ବାଚିତ ନୁହେଁ କିମ୍ବା ମୁଁ କଂଗ୍ରେସ ସଦସ୍ୟ ନୁହେଁ ଏବଂ ନହେବାହିଁ ମୋର ଉଦ୍ଦେଶ୍ୟ । ମୋତେ କଂଗ୍ରେସ ସରକାରରେ ମିଳିତ ହେବା-ପାଇଁ ନିମନ୍ତ୍ରଣ ଦିଆଯାଇଥିଲା ଏବଂ ମୁଁ ବିନା ସର୍ତ୍ତରେ ଆବଦ୍ଧ ହୋଇ ସେ ନିମନ୍ତ୍ରଣକୁ ସ୍ୱୀକାର କରିନେଲି । ମୋର ଯେତେବେଳେ ହୃଦବୋଧ ହେବ ଯେ, ସେଥିରେ ରହିଲେ କୌଣସି ଲାଭ ହେବନାହିଁ, ମୁଁ ଠିକ ସେହି ମୁହୂର୍ତ୍ତରେ ବାହାରିଯିବ ।

ଆଜି ମୋର ସ୍ଥିତିର ଦାବୀ ହେଉଛି, ମୋର ଲୋକମାନଙ୍କୁ ଶାସନ ବ୍ୟବସ୍ଥା ମଧ୍ୟରେ ରଖାଯାଉ, ଯାହାର କି ଅତ୍ୟନ୍ତ ଆବଶ୍ୟକତା ରହିଛି । ନ୍ୟାୟପୂର୍ଣ୍ଣ ଆଇନରେ ଅମ୍ଭମାନଙ୍କର କୌଣସି ଦ୍ୱିମତ ନାହିଁ । କିନ୍ତୁ ସେହିମାନଙ୍କର ହାତରେ ଏହି ଆଇନର ଡୋରୀ, ଯେମାନେ ଠିକ ଆଇନକୁ ମଧ୍ୟ ଦୁରୁପଯୋଗ କରିପାରନ୍ତି । ଯଦି ପ୍ରଶାସନ ମଧ୍ୟରେ ଏହିପରି ଲୋକପୂରି ରହନ୍ତି, ଯେଉଁମାନେ ବଂଶାନୁକ୍ରମେ ପରିଗଣିତ ଜାତିର ଲୋକଙ୍କର ସ୍ୱାର୍ଥ ସାଧନ ପଥରେ ଶତ୍ରୁତା କରି ଆସୁଛନ୍ତି, ତାହାହେଲେ ଆମ୍ଭମାନଙ୍କର ଭବିଷ୍ୟତ ଅନ୍ଧକାରମୟ ହୋଇଯିବ । ବଳପୂର୍ବକ କାମ ଅଦାୟ କରିବା, ବା ବେଠୀ ଖଟିବା ଆଇନ ବିରୁଦ୍ଧ, କିନ୍ତୁ

ଜମିଦାରମାନେ ଆଜିମଧ୍ୟ ଗରିବ ଦୁର୍ବଳ ଲୋକଙ୍କୁ ବେଠି ଖଟାଉଛନ୍ତି । ଯଦି ପରିଗଣିତ ଜାତିର ଲୋକେ ଏହି ଅଛନର ଖିଲାପ ସମସ୍ତରେ ଦରଖାସ୍ତ ଦଅନ୍ତି, ତାହାହେଲେ ତାହା ଶୁଣାଯିବନାହିଁ । କାରଣ ସେହି ଦରଖାସ୍ତ ନେଲବାଲା ଅଫିସର ପ୍ରାୟ ସେହି ଅତ୍ୟାଚାର କରୁଥିବା ଲୋକମାନଙ୍କର ପୃଷ୍ଠପୋଷକ କିମ୍ବା ଭାଇ ବନ୍ଧୁ କୁଟୁମ୍ବ ଥାନ୍ତି । ଯଦି ପରିଗଣିତ ଜାତିର ଲୋକ ସେହି ମହକୁମାରେ ରହିବେ ତାହାହେଲେ ସେମାନେ ନିଜର ଭାଇମାନଙ୍କର ସୁରକ୍ଷାପାଇଁ କିଛି ନା କିଛି କାମ ଅବଶ୍ୟ କରିବେ ।

ଯଦି ମୁଁ କେବେ କଂଗ୍ରେସରେ ମିଶିବି, ତାହାହେଲେ ମୁଁ ମୋର ନିଜର ଉଦ୍ଦେଶ୍ୟ ଘୋଷଣା କରି ସମ୍ମିଳିତ ହେବି । ଯଦି ମୋତେ କୁହାଯାଏ ଯେ, କଂଗ୍ରେସରେ ମିଶିଲେ ପରିଗଣିତ ଜାତିମାନଙ୍କର କ୍ଷତି ସାଧନ ହେବ, ତେବେ ମୁଁ ସ୍ପଷ୍ଟ ଭାବରେ ଆପଣମାନଙ୍କୁ କଂଗ୍ରେସରେ ମିଳିତ ହେବାପାଇଁ ନ କହିଛି ସେ ପର୍ଯ୍ୟନ୍ତ ଆପଣମାନେ ଏଥିରେ କଦାପି ମିଶନ୍ତୁ ନାହିଁ ।

ଦଳିତ ଶ୍ରେଣୀର ଭାଇମାନଙ୍କୁ ମୋର ଏହା କହିବାର କଥା ଯେ, ସବୁବେଳେ ଓ ସଂପୂର୍ଣ୍ଣଭାବେ ଅଲଗା ହୋଇ ରହିବାଟା ଅନଗ୍ରସର ଶ୍ରେଣୀର ଲୋକମାନଙ୍କ ପାଇଁ ବଡ଼ କ୍ଷତିକାରକ ଅଟେ । ଉଚ୍ଚ ଶ୍ରେଣୀର ଲୋକମାନଙ୍କ ହାତରୁ ରାଜନୈତିକ ଶକ୍ତି ଛଡ଼ାଇ ଆଣିବା ପାଇଁ ଆପଣମାନଙ୍କୁ ଏକତ୍ରିତ ହେବା ଉଚିତ୍ । ବହୁଳ ମତାଧିକାର ଦ୍ୱାରା ଜନତା ହାତରେ ସମସ୍ତ ସତ୍ତା ଅର୍ପଣ କରାଯାଇଛି । ମୋର ଅଭିମତ, ଯଦି ଉତ୍ତରପ୍ରଦେଶର ଦେଢକୋଟି ଦଳିତ ଶ୍ରେଣୀ ଓ ଦୁଇକୋଟି ପଛୁଆ ଶ୍ରେଣୀର ଲୋକେ ଏକସାଙ୍ଗରେ କାନ୍ଧକୁ କାନ୍ଧ ମିଳାଇ ସଂଘର୍ଷ କରନ୍ତି, ତାହାହେଲେ ଏହି ବିଧାନସଭାରେ ଅଧାରୁ ଅଧିକ ସ୍ଥାନ ଉପରେ ଲୋକମାନଙ୍କୁ ବସାଇ ଦିଆଯାଇ ପାରିବ ଏବଂ ସେହିପ୍ରକାର ରାଜନୈତିକ ସତ୍ତାର ଅଧିକାରୀ ହୋଇ ପାରିବେ । ମୋର ଏକଥାରେ କୌଣସି ଆପତ୍ତି ନାହିଁ, ଯଦି ପଛୁଆ ଶ୍ରେଣୀର ଲୋକେ ନିଜେ ନିଜର ମୋର୍ଚ୍ଚା ଛିଡ଼ାକରି ପାରନ୍ତି । ଏହା ବାସ୍ତବରେ ବଡ଼ ଦୁଃଖର କଥା, ଦଳିତ ଶ୍ରେଣୀ ଓ ଅନଗ୍ରସର ଶ୍ରେଣୀର ଲୋକମାନଙ୍କର ନିଜ ନିଜ ଶକ୍ତି ଉପରେ ସେମାନଙ୍କର ଆସ୍ଥା ବା ବିଶ୍ୱାସ ନାହିଁ । ତାହାର ଏହି ପରିଣାମ ଯେ, ତଥାକଥିତ ଉଚ୍ଚ ଶ୍ରେଣୀର ଲୋକେ ଶାସନ ଗାଦିରେ ନିଜର ଆସନ ଜମାଇ ବସିଛନ୍ତି ।

ଆପଣମାନେ ସମସ୍ତେ ଗୋଟିଏ ଗୋଟିଏ ନେତା ହେବା ଉଚିତ୍ । ଆପଣମାନଙ୍କର ଗୋଟିଏ ପାର୍ଟି ହେବା ଉଚିତ୍ ଓ ତାହାର ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ହେବା ଉଚିତ୍ । ଆପଣମାନଙ୍କର ଦରକାର, ଆପଣମାନେ ସମସ୍ତେ

ନିଜ ନିଜ ମଧ୍ୟରେ ଜାତିଗତ ଭେଦାଭାବ ଭୁଲି ଫେଡ଼ରେସନ (ରିପବ୍ଲିକାନ୍ ପାର୍ଟୀ) ତତ୍ତ୍ୱାବଧାନରେ ନିଜନିଜକୁ ସଗଠିତ କରିନେବା ଉଚିତ୍ ।



## ତ୍ରୁଟିପୂର୍ଣ୍ଣ ସମ୍ବାଦ ପରିବେଷଣ ଉପରେ ବାବାସାହେବଙ୍କ ବକ୍ତବ୍ୟ

( ଏହି କନଫରେନ୍ସରେ ବାବାସାହେବଙ୍କ ଭାଷଣକୁ ରିପୋର୍ଟ କରି ନେବାପାଇଁ ସ୍ଥାନୀୟ ସମ୍ବାଦପତ୍ରର ସାମ୍ବାଦିକମାନେ ମଧ୍ୟ ଆସିଥିଲେ । କିନ୍ତୁ ଏହି ସମ୍ବାଦ ପରିବେଷଣରେ ନିଜେତଃ ଭୁଲ ସମ୍ବାଦ ଲେଖିଲେ, ତାହା ବ୍ୟତୀତ ଅହଂକାଶୀ ଏଡ଼ିଟର ମଧ୍ୟ ତାହା ଉପରେ କାଲମ ଚଳାଇ ବାବାସାହେବଙ୍କ ଭାଷଣକୁ ଏପାଖ ସେପାଖ କରି ଭୁଲ ଭାବରେ ଛପାଇଥିଲେ । ଯେତେବେଳେ ସେ ସମ୍ବାଦପତ୍ର ବାବାସାହେବଙ୍କ ପାଖରେ ପହଞ୍ଚିଲା ତାହାକୁ ଖଣ୍ଡନ କରିବାକୁ ଯାଇ ନିମ୍ନୋକ୍ତମତେ ମନ୍ତବ୍ୟ ଦେଇଥିଲେ । )

ତା ୨୫ ଏପ୍ରିଲ୍ ୧୯୮୪ ଦିନ ଲକ୍ଷ୍ନୌର ସିଡ୍ୟୁଲଡ୍ କାଷ୍ଟ ଫେଡରେସନ କନଫରେନସରେ ମୁଁ ଯେଉଁ ଭାଷଣ ଦେଇଥିଲି, ତାହା ଅତ୍ୟନ୍ତ ବିକୃତ ଭାବେ ଏକ ସ୍ଥାନୀୟ ଦୈନିକ ଖବର କାଗଜରେ ଛପାହୋଇ ମୋର ଦୃଷ୍ଟିକୁ ଆସିଥାଇ-ଥିଲା । ରିପୋର୍ଟରେ ଲେଖାଯାଇଛି ଯେ ମୁଁ ନିଜର ସାଥିମାନଙ୍କ ସମ୍ବନ୍ଧରେ କିଛି ଅନୁଚିତ୍ କଥା କହିଛି । ଏହା ପଢି ମୋର ମନରେ ବଡ ଦୁଃଖ ହେଲା । ଏହି ଭୁଲ ଗୁଡ଼ିକୁ ଦୂର କରିବା ପାଇଁ ସେ ଭାଷଣରେ ମୁଁ ଯାହା ସବୁ କହିଥିଲି ତାକୁ ଦୋହରାଇ ପୃଷ୍ଠାରେ ପ୍ରକାଶ କରିବାକୁ ଆବଶ୍ୟକ ମନେ କରୁଛି ।

ମୋର ଏହି ଭାଷଣ ଲିଖିତ ନୁହେଁ । କିନ୍ତୁ ମୁଁ ଯେଉଁକଥା ସେମାନଙ୍କୁ କହିଥିଲି ତାହା ମୋର ମନେ ଅଛି । ତାହାରି ଉପରେ ମୁଁ ମୋର ଏହି ବକ୍ତବ୍ୟ ଲେଖୁଛି । ଏହି ସବୁ କଥା ସେହି ଆଲୋଚନା ଗୁଡ଼ିକର ବିବରଣ, ଯାହା କେତେକ ସୁଯୋଗକୁ ନେଇ ମୁଁ ମୋର ନିଜ ଲୋକଙ୍କ ପାଖରେ କହିଥିଲି ଓ ତାହା ସେମାନେ ଶୁଣିବାକୁ ଆସିଥିଲେ । ଏକଥା ମୁଖ୍ୟତଃ ତିନୋଟି ସମସ୍ୟା ଉପରେ ଆଧାରିତ :—

୧— ଯେତେବେଳେ "କ୍ୟାବିନେଟ ମିସନ" ଏଠା ହେଲା, ସେତେବେଳେ ମୁଁ କାହିଁକି, କିନା କାରଣରେ ତାହା ଗ୍ରହଣ କଲି ?

୨— ମୁଁ କଂଗ୍ରେସ ସରକାର ସହିତ କାହିଁକି ମିଶିଲି ?

୩— ବର୍ତ୍ତମାନ, ଭବିଷ୍ୟତ ବିଷୟରେ ମୁଁ କଣ କରିବାକୁ ଗ୍ରହୁଁଛି ?

ପ୍ରଥମ ଆପତ୍ତିର ଉତ୍ତରରେ ମୁଁ କହିଥିଲି, ସିଡ୍ୟୁଲଡ୍ କାଷ୍ଟ ଫେଡ୍ରେରେସନରେ ପଶ୍ଚଗଣିତ ଜାତି ମାନଙ୍କ ପାଇଁ ଯେଉଁ ରାଜନୀତିକ ସଂରକ୍ଷଣର ଦାବୀ ଥିଲା, ସେଥିରେ ସବୁଠାରୁ ମୁଖ୍ୟ ଓ ମହତ୍ତ୍ୱପୂର୍ଣ୍ଣ ଦାବୀ ଥିଲା, ପୃଥକ ପ୍ରତିନିଧିତ୍ୱ ଓ ପୃଥକ ନିର୍ବାଚନ । ଯଦି ପ୍ରଥମ ନିର୍ବାଚନର ଗୁରୁତ୍ୱକୁ ଠିକ୍ ମାନି ନିଆଯାଏ, ତାହାହେଲେ ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଏହି ଦାବୀ ପାଇଁ ସମଗ୍ର ଜାତିର ଏଥିପାଇଁ ସମର୍ଥନ ରହିଛି । କିନ୍ତୁ ସମଗ୍ର ଜାତିର ସମର୍ଥନ ଥିଲେ ମଧ୍ୟ 'କ୍ୟାବିନେଟ ମିଶନ' ଆମ୍ଭମାନଙ୍କର ଫେଡ୍ରେସନ ଦାବୀକୁ ନାମଞ୍ଜୁର କରିଦେଲା । ଏହି ନାମଞ୍ଜୁର କରିବାର ଦୁଇଟି କାରଣ ଥିଲା । ପ୍ରଥମ କାରଣ, ମୁସଲମାନ ଓ ଶିଖମାନଙ୍କ ମୁକାବିଲା କରିବାରେ ଆମର ପାର୍ଟି ଅସମର୍ଥ ଥିଲା । ଦ୍ୱିତୀୟ କାରଣ, ଆମ୍ଭମାନଙ୍କ ମଧ୍ୟରୁ କେତେକ ଆପୋଷରେ କିଛି କାର୍ଯ୍ୟ ହାସଲ କରିବାର ମତ ପୋଷଣ କରୁଥିଲେ । ଏହାଛଡ଼ା ଆମ୍ଭମାନଙ୍କ ମଧ୍ୟରେ କେତେକ ପଞ୍ଚମ ବାହିନୀ ବା ଜୟଚନ୍ଦ୍ର ଥିଲେ ।

ଅତଏବ 'କ୍ୟାବିନେଟ ମିଶନ' ପଶ୍ଚଣିତ ଜାତିମାନଙ୍କୁ ଏକ ପୃଥକ ରାଜନୀତିକ ପ୍ରତିଦ୍ୱନ୍ଦୀ ରୂପେ ମାନିଲେ ନାହିଁ, ଯେଉଁଭଳି ଶିଖ ଓ ମୁସଲମାନ ମାନଙ୍କୁ ମାନିନେଲେ । କିନା ରାଜନୈତିକ ସଂରକ୍ଷଣରେ ମୋତେ ପଶ୍ଚଗଣିତ ଜାତିମାନଙ୍କ ପାଇଁ ଅନ୍ୟ କୌଣସି ଭବିଷ୍ୟତ ଦେଖାଯାଉନଥିଲା । ମୋ ଆଖି ସାମନାରେ ସମ୍ପୂର୍ଣ୍ଣ ଅନ୍ଧକାର ଦେଖାଯାଉଥିଲା । ଏହି କାରଣରୁ ମୁଁ ନିରବ ହୋଇ ଯାଇଥିଲି ।

ଦ୍ୱିତୀୟ ଆପତ୍ତିର ଉତ୍ତରରେ ମୁଁ କହିଥିଲି, ମୁଁ କଂଗ୍ରେସର ଜଣେ ନିସନ୍ଦେହ ଭାବେ ସମାଲୋଚକ ବା ବିରୋଧୀ । କିନ୍ତୁ ମୁଁ ସେହି ବିରୋଧକୁ ଏକ ସ୍ଥାୟୀ ବିରୋଧ ବୋଲି ଭାବୁନଥିଲି । କାରଣ ସେତେବେଳେ ରାଜନୀତିର ବାସ୍ତବ ସ୍ଥିରତା ସୃଷ୍ଟି ହୋଇନଥିଲା । ପରିସ୍ଥିତି ଅନୁସାରେ ରାଜନୀତି ବଦଳି ଯାଉଥିଲା । ଏହି କାରଣରୁ ଯେଉଁଠାରେ ସହଯୋଗ କରିବାରେ କିଛି ମିଳିବାର ବା ମୋର ଲୋକମାନଙ୍କର କିଛି ହିତ ସାଧନ କରିବାର ଆଶା ଥିଲା, ସେ କ୍ଷେତ୍ରରେ ସହଯୋଗ କରିବା ପାଇଁ ଉଚିତ୍ ମନେ କରୁଥିଲି । ମୋତେ ଏହା ଅନୁଭୂତ

ହେଲ, କଂଗ୍ରେସ ମଧ୍ୟରେ ଏକ ସୂତ୍ରଧାରଣ କରିବାରେ ମୋର କିଛି ଲଭର ସୂଚନା ଅଛି । ଏହି କାରଣରୁ ମୁଁ କଂଗ୍ରେସ ମଧ୍ୟରେ ରହି ସହଯୋଗ କରିବା ପାଇଁ ସ୍ଥିର କଲି ଓ ସହଯୋଗ କରିବା ଦ୍ୱାରହିଁ ଆମ୍ଭେ ସମ୍ବିଧାନରେ କିଛି ସଂରକ୍ଷଣ ପାଇଲୁ । ବିରୋଧୀ ହୋଇଥିଲେ ଏହା ପାଇପାରିନଥାନ୍ତୁ । ମୁଁ ନିଜେ ଏହି ଉଦାହରଣ ଦେଇ ସର୍ତ୍ତକୁ ସ୍ଥିର କରିଥିଲି ।

ନିଜ ବିଷୟରେ. ମନ୍ତ୍ରୀମଣ୍ଡଳରେ ଯୋଗଦେବା ବିଷୟରେ ମୁଁ କହିଥିଲି, ଦୁଇଟି କାରଣରୁ ମୁଁ ଏହି ପ୍ରସ୍ତାବକୁ ସ୍ୱୀକାର କରିନେଲି । ଗୋଟିଏ ହେଉଛି, ଏହି ପ୍ରସ୍ତାବ ସହିତ ମୋ ଉପରେ କୌଣସି ବନ୍ଧନ ଲଗୁ ହୋଇନଥିଲା । ଦ୍ୱିତୀୟରେ ସରକାର ଠାରୁ ବାହାରେ ରହିବା ଅପେକ୍ଷା ସରକାର ମଧ୍ୟରେ ରହି ମୁଁ ପରିଗଣିତ ଜାତିଙ୍କ ହିତ ପାଇଁ ଅଧିକ ନିରାପତ୍ତା ଦେଇପାରିବି ।

ମୁଁ କହିଥିଲି 'ଅଛୁଆଁ' ଜାତିମାନଙ୍କର ଏହି କଥାରେ ଡରିବାର କୌଣସି କାରଣ ବା ଆବଶ୍ୟକତା ନାହିଁ । ସେମାନଙ୍କ ପାଇଁ ତ୍ରୁଟିପୂର୍ଣ୍ଣ ବା ଭ୍ରାନ୍ତିକର ଆଇନ ପ୍ରଣୟନ ହୋଇପାରିବ ନାହିଁ । ସେମାନଙ୍କ ପାଇଁ ଯାହା ବିପଦ ଅଛି, ତାହା କେବଳ 'ଦୁଷ୍ଟ ଶାସକ' ମାନଙ୍କ ପାଇଁ । କାରଣ ଶାସନ ତନ୍ତ୍ରରେ 'ଅଛୁତ' ଜାତିମାନେ ପ୍ରବେଶ କରିପାରି ନାହାନ୍ତି । ପ୍ରଶାସନ ସେହି ଲୋକମାନଙ୍କ ହାତ-ମୁଠାରେ ଅଛି, ଯେଉଁମାନେ ଅଛୁଆଁ ଜାତିଗୁଡ଼ିକର ଦୁର୍ଦ୍ଦଶାର କାରଣ ହୋଇ ଆସିଛନ୍ତି । ଏହି କାରଣରୁ ସେହି 'ଦୁଷ୍ଟ ଶାସକ' ମାନଙ୍କର ବିପଦ ସୃଷ୍ଟି ହୋଇଛି ।

ଅଛୁଆଁ ଜାତିମାନଙ୍କ ପାଇଁ ପ୍ରଶାସନ କ୍ଷେତ୍ରରେ କୌଣସି ସହାନୁଭୂତି ନାହିଁ । ଏହାର କାରଣ ହେଉଛି ପ୍ରଶାସନ କ୍ଷେତ୍ରରେ ଯେତେ ଅଫିସର ଅଛନ୍ତି, ସେମାନେ ସମସ୍ତେ ପ୍ରାୟ ବର୍ଣ୍ଣାଭିମାନୀ ହିନ୍ଦୁ ଅଟନ୍ତି । ସେମାନେ ଗ୍ରାମମାନଙ୍କରେ ରହୁଥିବା ସେହି ବର୍ଣ୍ଣାଭିମାନୀ ହିନ୍ଦୁମାନଙ୍କ ପ୍ରତି ସହାନୁଭୂତିଶୀଳ ରୁହନ୍ତି ଓ ସେମାନଙ୍କ ପକ୍ଷରେ କାର୍ଯ୍ୟ କରନ୍ତି; ଯାହି କି ଅଛୁଆଁମାନଙ୍କଠାରୁ ବେଠି ଆଦାୟ କରନ୍ତି ଓ ବିଭିନ୍ନ ଅତ୍ୟାଚାର କରନ୍ତି । ଏହି ସବୁ ଅତ୍ୟାଚାର ଓ ଜୁଲମ ସେତିକବେଳେ ବନ୍ଦ ହୋଇପାରିବ, ଯେତେବେଳେ ପ୍ରଶାସନର ଅଧିକାରୀମାନଙ୍କ ମଧ୍ୟରେ ଅଛୁଆଁମାନଙ୍କ ସଂଖ୍ୟା ଅଧିକ ହୋଇପାରିବ । ଏହି କାମ ସରକାର ଠାରୁ ବାହାରେ ରହିବା ଅପେକ୍ଷା ସରକାର ଭିତରେ ରହି ଅଧିକ କିଛି କରିଯାଇ ପାରିବ ।

ତୃତୀୟ ଆପତ୍ତିର ଉତ୍ତରରେ ମୁଁ କହିଥିଲି, କଂଗ୍ରେସରେ ମିଶିବାରେ କୌଣସି ଲାଭ ନାହିଁ । ଦୁଇଟି ପାର୍ଟୀ ଗଠନ ହେବାପରେ ଯାହା ରକ୍ଷା । ସରକାରଙ୍କ କାର୍ଯ୍ୟ ଓ ନୀତି ଗୁଡ଼ିକର ଆଲୋଚନା କରିବା ପାଇଁ କୌଣସି ବିରୋଧୀ ପକ୍ଷ ରହିବା ଉଚିତ । ତାହା ନ ହେଲେ ସରକାର ଏକଛତ୍ରବାଦୀ ଓ ମନମୁଖୀ ହୋଇଯିବ । କଂଗ୍ରେସ ଗୋଟିଏ ଜଳୁଥିବା ଗୃହ । କଂଗ୍ରେସ ମଧ୍ୟରେ ମଧ୍ୟ ବହୁତ ଲୋକ ଅଛନ୍ତି ଯେଉଁମାନେ ପ୍ରବଳ ବିରୋଧୀ-ପକ୍ଷର ଆବଶ୍ୟକତାକୁ ପ୍ରବଳଭାବରେ ଅନୁଭବ କରୁଛନ୍ତି । କଂଗ୍ରେସ ନିଜେ ମଧ୍ୟ ନିଜ ମଧ୍ୟରେ ଭାଗ ହୋଇଛି । ସୋସାଲିଷ୍ଟ ଲୋକମାନେ ବାହାରି ଚାଲିଗଲେ । ବର୍ତ୍ତମାନ ଏହା କୁହାଯାଇ ପାରିବ ନାହିଁ ଯେ ସେହି ଲୋକମାନଙ୍କ ଶକ୍ତି ବଢ଼ି ବଢ଼ି କେତେଦୂର ଯାଇପାରିବ । ବିଶ୍ୱାସ ହୁଏ, ଏହି ଲୋକେ ଶକ୍ତିଶାଳୀ ହୋଇଯିବେ । ଯଦି ଏହା ହୁଏ ତାହାହେଲେ ଦେଶରେ ଦୁଇଟି ପାର୍ଟି ହୋଇଯିବ । ଗୋଟିଏ କଂଗ୍ରେସ ଓ ଅନ୍ୟଟି ସୋସାଲିଷ୍ଟ । ଏହି ପରିସ୍ଥିତିରେ ମୋ ପକ୍ଷରେ କଂଗ୍ରେସରେ ମିଳିତହେବା ବା ନହେବାର ପ୍ରଶ୍ନ ଉଠୁନାହିଁ । ପ୍ରଶ୍ନ ହେଉଛି କଂଗ୍ରେସ ସହିତ ମିଳିବା ଉଚିତ ନା ସୋସାଲିଷ୍ଟ ସହିତ ମିଳିବା ଉଚିତ ।

ମୁଁ କହିଥିଲି, ମୋର ପରାମର୍ଶ ହେଉଛି ଆପଣମାନଙ୍କୁ ଏକ ତୃତୀୟ ପାର୍ଟି ରୂପେ ପୃଥକ ସଂଗଠନ କରିବା ଉଚିତ । ଏହା କରିବା ଦ୍ୱାରା ଅଛୁଆଁ ଜାତିମାନେ ଶକ୍ତିର ସାମର୍ଥ୍ୟ କାୟମ ରଖିପାରିବେ ଓ ନିଜର ଅଧିକାର ପାଇଁ ଦୁହିଁଙ୍କ ମଧ୍ୟରେ ମୂଲଚୂଲ କରିପାରିବେ । କେବଳ ପଛଗୁଡ଼ିଆଙ୍କ ପରି ଯେ କୌଣସି ରାଜନୀତିକ ପାର୍ଟିରେ ମିଳିତ ହେବାରେ କୌଣସି ଲାଭନାହିଁ । ଯଦି ଆମ୍ଭମାନଙ୍କୁ କିଛି ଦେଇ ପାରନ୍ତି, ତାହାହେଲେ କେବଳ ଦପ୍ତର ଦେଇପାରିବେ, ସେମାନେ ଆମ୍ଭମାନଙ୍କୁ ଶକ୍ତିଦେଇ ପାରିବେ ନାହିଁ ।

ପୁଣି ମୁଁ କହିଥିଲି ଯେ, ଆପଣମାନଙ୍କର କନଫରେନସରେ ବର୍ତ୍ତମାନ ଗୋଟିଏ ପ୍ରସ୍ତାବ ପାସ କରି ନିଅନ୍ତୁ, ଯେଉଁଥିରେ ଆପଣମାନେ ପନ୍ଥ ସରକାରର ଏଥିପାଇଁ ନିନ୍ଦା କରିବେ । କାରଣ ସେ ଆପଣମାନଙ୍କୁ ଆପଣମାନଙ୍କର ସଂଖ୍ୟା ଅନୁପାତରେ ଚାକିରି କ୍ଷେତ୍ରରେ ସ୍ଥାନଦେଇ ନାହାନ୍ତି । ପ୍ରସ୍ତାବରେ କୁହାଗଲା, ଆପଣଙ୍କର ସଂଖ୍ୟା ବର୍ତ୍ତମାନ ଶତକଡ଼ା ୨୨ଭାଗ ଏବଂ ଚାକିରି ମାତ୍ର ୧୨ ଭାଗ ରଖାଯାଇଛି । ଶ୍ରୀ ପନ୍ଥଜୀ, ଆପଣମାନଙ୍କୁ ଆପଣମାନଙ୍କର ପୂରାଭାଗ ଦେଉନାହାନ୍ତି । ଏହାର ଗୋଟିଏ କାରଣ ହେଉଛି ଉତ୍ତର ପ୍ରଦେଶର ବିଧାନସଭାରେ ତାଙ୍କର ବହୁମତ ଆପଣଙ୍କ ଉପରେ ନିର୍ଭର କରେନାହିଁ । ଏହା ସେତିକିବେଳେ ହୋଇପାରିବ ଯେତେବେଳେ ଆପଣଙ୍କର

ଏହି ରାଜ୍ୟରେ ଏକ ସୁଦୃଢ଼ ପୃଥକ ସଂଗଠନ ହେବ । ଯାହା ଯେକୌଣସି ପାର୍ଟି ସହିତ ଆଲୋଚନା କରିବାକୁ ସକ୍ଷମ ହେଉଥିବ । ଏହାଦ୍ୱାରା କଥାବାର୍ତ୍ତା କରିବା ପାଇଁ ଅନ୍ୟ ପାର୍ଟିମାନଙ୍କୁ ଅନୁରୋଧକାରୀ ହେବାକୁ ପଡ଼ିବ । ତେଣୁ ଗ୍ରୁକଣ୍ଡ କ୍ଷେତ୍ରରେ ଆପଣମାନେ ୨୨ ଭାଗ ସ୍ଥାନ ଦାବୀ କରିପାରିବେ ଓ ତେବେ ଯାଇ ଶ୍ରୀପଟ୍ଟଙ୍କୁ ମଧ୍ୟ ଆପଣମାନଙ୍କର ଏହି ଦାବୀକୁ ମାନି ନେବାକୁ ଅନୁଗ୍ରହପ୍ରାର୍ଥୀ ହେବାକୁ ପଡ଼ିବ ।

ଏହା ବ୍ୟତୀତ ମୁଁ ପ୍ରତିଗଣିତ ଜାତି ଓ ତଥା କଥିତ ଅଛୁଆଁ ଶ୍ରେଣୀଙ୍କ ଏକତା ପ୍ରଶ୍ନ ଉଠାଇଥିଲି । କାରଣ ଏହି ପ୍ରଶ୍ନ ଉଠାଇବା ପାଇଁ କନଫରେନସରେ ଏକତ୍ରିତ ହୋଇଥିବା ପଛୁଆ ଶ୍ରେଣୀର କେତେକ ନେତା, ମୋତେ ଅନୁରୋଧ କରିଥିଲେ । ମୁଁ କହିଥିଲି, କେଡ଼େ ଦୁଃଖର ବିଷୟ ଯେ ଏହି ଦୁଇ ଶ୍ରେଣୀ, ଯାହାଙ୍କର ଆବଶ୍ୟକତା ସମାନ, କିନ୍ତୁ ପରସ୍ପର ଏକ ସାଥିରେ ନାହାନ୍ତି । ଏହାର ଏହି କାରଣ ହୋଇପାରେ, ପଛୁଆ ଶ୍ରେଣୀର ଲୋକେ ଭାବନ୍ତି, ଯଦି ସେମାନେ ପରିଗଣିତ ହୋଇଯାଆନ୍ତି, ତାହାହେଲେ ସେମାନଙ୍କ ଡ଼ର ଯେ, କାଳେ ସେମାନେ ମଧ୍ୟ ତଳକୁ ଖସିଯିବେ । ମାନସିକ ସ୍ଥିତି ଦୃଷ୍ଟିରୁ ସେମାନେତ କେବେ ପରିଗଣିତ ବା ଅଛୁଆଁ ଜାତି ହୋଇପାରିବେ ନାହିଁ ।

ମୁଁ କହିଥିଲି, ପରିଗଣିତ ଜାତି ଓ ପଛୁଆ ଶ୍ରେଣୀର ଜାତିମାନଙ୍କ ମଧ୍ୟରେ ହାରାହାରି ପ୍ରଚଳନ କରାଯାଇ ପାରେ, ମାତ୍ର ପଛୁଆ ଶ୍ରେଣୀର ଲୋକେ ନିଜର ସାମାଜିକ ପୃଥକତା ବଜାୟ ରଖି, ସେମାନେ ନିଜେ ନିଜକୁ ପତିତ ଅବସ୍ଥାରୁ ଉପରକୁ ଉଠିବା ପାଇଁ ପରସ୍ପର ମିଳିମିଶି ଗୋଟିଏ ରାଜନୈତିକ ପାର୍ଟି ଗଠନ କରିପାରିବେ ନାହିଁ, ଏହାର କୌଣସି କାରଣ ନାହିଁ । ସେମାନଙ୍କୁ ବତାଇଥିଲି, ଦେଶର ରାଜନୀତିରେ ଭାଗନେଇ ପରିଗଣିତ ଜାତିମାନଙ୍କ ସହ କୌଣସି ପ୍ରକାରେ ନିଜର ଅବସ୍ଥାର କିଛିନା କିଛି ସୁଧାର କରାଯାଇପାରେ । ଏଥିରେ କୌଣସି କାରଣ ନାହିଁ ଯେ ପଛୁଆ ଶ୍ରେଣୀର ଲୋକେ ମଧ୍ୟ କାହିଁକି ଏହା କରିପାରିବେ ନାହିଁ ?

ମୁଁ କହିଥିଲି, ପରିଗଣିତ ଜାତିମାନେ ଓ ଅଛୁଆ ଶ୍ରେଣୀ, ପରସ୍ପର ମିଳିମିଶି ଦେଶ ଜନତାର ବହୁମତ ସୃଷ୍ଟି କରନ୍ତୁ । ଏହାର ମଧ୍ୟ କୌଣସି କାରଣ ବୁଝାଯାଉନାହିଁ, କାହିଁକି ସେହି ଲୋକମାନେ ନିଜର ଅଧିକାର କାୟମ କରିପାରିବେ ନାହିଁ ? ଆବଶ୍ୟକତା କେବଳ ଏହି କଥା ଉପରେ, ଆପଣମାନେ ରାଜନୈତିକ ଶକ୍ତି ଲାଭ ପାଇଁ ପରସ୍ପର ସଂଗଠିତ ହୁଅନ୍ତୁ । ବହୁଳ ମତାଧିକାର-ଶକ୍ତି ସୃଷ୍ଟି କରିବାକୁ ଯଦି ଚାହାଁନ୍ତି ତାହାହେଲେ ରାଜନୈତିକ ଶକ୍ତି ଆପଣମାନଙ୍କ ହାତ ମୁଠାକୁ

ଆସିଯାଇ ପାରିବ । ଲୋକେ ଉତ୍ସାହ ଓ ସାହାସର ସହିତ କାମ କରିପାରୁ ନାହାଁନ୍ତି, କାରଣ ସେମାନଙ୍କ ମଧ୍ୟରେ ଏକ ମିଥ୍ୟା ବିଶ୍ୱାସ ଦୃଢ଼ୀଭୂତ କରାଯାଇଛି ଯେ କଂଗ୍ରେସ ସରକାର ହିଁ ସବୁବେଳେ ତିଷ୍ଠି ରହିବ । ମୁଁ କହୁଥିଲି ଏହା ସମ୍ପୂର୍ଣ୍ଣ ରୂପେ ଭୁଲ ଧାରଣା । ଜନତାର ପ୍ରଜାତାନ୍ତ୍ରିକ ଶାସନ ପ୍ରଣାଳୀରେ କୌଣସି ସରକାର ସବୁବେଳେ ତିଷ୍ଠି ପାରିବ ନାହିଁ । ଆଜି ଗୋଟିଏ ପାର୍ଟି ହାତରେ ଶାସନ କ୍ଷମତା ଅଛି ତ କାଲି ଅନ୍ୟ ଏକ ପାର୍ଟି ଯଦି ଅଧିକ ଜନ ସମର୍ଥନ ପାଇପାରନ୍ତି, ତାହା ତାଙ୍କ ହାତକୁ ଚାଲିଯିବ । ଏହି କଥା ପ୍ରତ୍ୟେକ ସରକାରଙ୍କ ପାଇଁ ଲାଗୁ ଅଟେ । ପଣ୍ଡିତ ନେହରୁ ଓ ପଟେଲଙ୍କ ପରି ଉଚ୍ଚ ଶ୍ରେଣୀର ନେତାମାନଙ୍କ ସରକାର ପକ୍ଷରେ ଏହା ମଧ୍ୟ ସମ୍ଭବ । ଯଦି ଆପଣମାନେ ସଂଗଠିତ ହୋଇଯାଆନ୍ତି ଆପଣମାନେ ମଧ୍ୟ ନିଜର ସରକାର ଗଢ଼ି ପାରିବେ ।

ଏହା ଥିଲା ମୋ ଭାଷଣର ସାରାଂଶ । ମୋର ଏହି ବ୍ୟାଖ୍ୟାନରେ କଂଗ୍ରେସ ସରକାରକୁ ଭଲ କିମ୍ବା ମନ୍ଦ କୁହାଯାଇ ନାହିଁ । ମୋର ବକ୍ତବ୍ୟର ପୂର୍ଣ୍ଣ ବିଷୟକୁ ବିକୃତ ରୂପରେ ପ୍ରକାଶିତ କରି ଦେଶରେ ଭୁଲ ପରମ୍ପରା ସୃଷ୍ଟି କରିବା ମଧ୍ୟ ଭାରତୀୟ ପତ୍ର ପତ୍ରିକା ଗୁଡ଼ିକର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ନୁହେଁ ।

—o—

# ସମ୍ବିଧାନର ଚିଠା ଉପସ୍ଥାନ କରିବା ସମୟରେ ଭାଷଣ

(୧୫ ଅଗଷ୍ଟ ୧୯୪୭ରୁ ପୂର୍ଣ୍ଣ ପ୍ରଭୁ-ସତ୍ତା-ସମ୍ପନ୍ନ ସ୍ୱତନ୍ତ୍ରତା, ଘୋଷଣା ହୋଇସିବା ପରେ, ସମ୍ବିଧାନ ନିର୍ମାଣ ସଭାରେ ୨୯ ଅଗଷ୍ଟ ୧୯୪୭ରୁ ଭାରତୀୟ ସମ୍ବିଧାନର ଚିଠା ପ୍ରସ୍ତୁତ କରିବା ପାଇଁ ଛ-ଜଣ ସଦସ୍ୟଙ୍କୁ ନେଇ ଏକ ଚିଠା ପ୍ରସ୍ତୁତ କମିଟି ଗଠନ କରାଗଲା, ଯାହାର ସଂଯୋଜକ ଭାବେ ବାବାସାହେବଙ୍କୁ ନିଯୁକ୍ତ କରାଗଲା । ଚିଠା ପ୍ରସ୍ତୁତ ହୋଇସିବା ପରେ ସର୍ବସାଧାରଣଙ୍କ ସମ୍ମତି ପାଇଁ ଜନତା ମଧ୍ୟରେ ବିତରଣ କରି ଦିଆଗଲା । ବିଭିନ୍ନ ଅଭିମତ ସମ୍ମତି ଆସିସିବା ପରେ ବାବାସାହେବ ହିଁ ସମ୍ବିଧାନର ଚିଠାକୁ ୪ ନଭେମ୍ବର ୧୯୪୮ ମସିହା ଦିନ ବିଧାନ ନିର୍ମାଣ ସଭା ଦ୍ୱାରା ପାସ କରିବା ପାଇଁ ଉପସ୍ଥାପନ କରିଥିଲେ । ଚିଠା ଉପସ୍ଥାପନ କରିବା ସମୟରେ, ସମ୍ବିଧାନର ବିଶେଷତ୍ୱ ତଥା ତାହା ଉପରେ ଉଠାଯାଇଥିବା ପ୍ରଶ୍ନଗୁଡ଼ିକର ସମାଧାନ କରିବାକୁ ଯାଇ ବାବାସାହେବ ଯେଉଁ ଅଗାଧ ରାଜନୈତିକ ବିଜ୍ଞାନ ସମ୍ପୃକ୍ତଜ୍ଞାନ ଗର୍ଭକ ବକ୍ତବ୍ୟ ଦେଇଥିଲେ ତାହା ନିମ୍ନରେ ପ୍ରଦତ୍ତ ହେଲା ।)

ଅଧ୍ୟକ୍ଷ ମହାଶୟ,

ସମ୍ବିଧାନର ଚିଠା ପ୍ରସ୍ତୁତକାରୀ କମିଟି ଦ୍ୱାରା ଯେଉଁ ଚିଠା ପ୍ରସ୍ତୁତ କରାଗଲା, ମୁଁ ତାହାକୁ ଉପସ୍ଥାପନ କରୁଛି । ପ୍ରସ୍ତାବ କରୁଅଛି ଯେ ତାହା ଉପରେ ବର୍ତ୍ତମାନ ବିଚାର କରାଯାଉ । ସମ୍ବିଧାନ ନିର୍ମାଣ ସଭାର ନିଷ୍ପତ୍ତି ଅନୁଯାୟୀ, ଚିଠା ନିର୍ମାଣ କମିଟି ଉପରେ ସମ୍ବିଧାନର ଚିଠା ପ୍ରସ୍ତୁତ କରିବାର ଦାୟିତ୍ୱ ନ୍ୟସ୍ତ କରାଯାଇ-ଥିଲା । ସମ୍ବିଧାନ ନିର୍ମାଣ ସଭା ଦ୍ୱାରା ଗଠିତ କମିଟି ଗୁଡ଼ିକର ରିପୋର୍ଟ ଉପରେ ଏହି ଚିଠା ସ୍ଥିର କରାଯାଇଛି । ସେହି କମିଟି ଗୁଡ଼ିକ ମଧ୍ୟରେ, ସଂଘର ଅଧିକାର କମିଟି, ସଂଘର ସମ୍ବିଧାନ ସାବ୍ୟସ୍ତ କମିଟି, ପ୍ରାନ୍ତୀୟ ସମ୍ବିଧାନ ସାବ୍ୟସ୍ତ କମିଟି, ମୌଳିକ ଅଧିକାର ଓ ସଂଖ୍ୟାଲଘୁ ତଥା ଆଦିବାସୀ ହରିଜନମାନଙ୍କ ବିଷୟରେ ମତାମତ ପ୍ରଦାନକାରୀ କମିଟି ଆଦି ପ୍ରଧାନ । ବିଧାନ ନିର୍ମାଣ ସଭାର ଏହା ମଧ୍ୟ ନିର୍ଦ୍ଦେଶ ଥିଲା, ଯେ-କୌଣସି କଥାରେ ହେଉନା କାହିଁକି ୧୯୩୫ ମସିହାର ଭାରତ ଆକ୍ଟ (Govt. of India Act. 1935)ର ଅନୁକରଣ କରାଯିବ । କୌଣସି କଥାକୁ ବାଦ୍ ନଦେଇ, ଯାହାର ଚର୍ଚ୍ଚା । ମୁଁ ୧୯୪୮ ମସିହା ଫେବୃୟାରୀ ମାସ ୨୧ ତାରିଖରେ ମୋର ନିଜ ଚିଠିରେ ଲେଖିଥିଲି, ଯେଉଁ ବିଷୟରେ ମୁଁ ସ୍ୱତନ୍ତ୍ର ଭାବେ ସିଦ୍ଧାନ୍ତ ଦେଇଛି, ଶେଷରେ କମିଟିକୁ ଯେଉଁ ନିର୍ଦ୍ଦେଶ ଦିଆଯାଇ ଥିଲା, ସେ ସବୁକୁ ସମ୍ମାନର ସହ ପାଳନ କରାଯାଇଛି ।

ଖସଡ଼ା ପ୍ରସ୍ତୁତ କମିଟି, ସମ୍ବିଧାନର ଯେଉଁ ଖସଡ଼ା ତିଆରି କରିଛି, ତାହା ପ୍ରକୃତରେ ଏକ ଫନ୍ଦତା ଅଟେ । ଏଥିରେ ୩୧୫ ଟି ଧାରା, ୮ଟି ଅନୁସୂଚୀ ଅଛି । ମୁଁ ଭାବୁଛି, ଖସଡ଼ା ପ୍ରସ୍ତୁତକାରୀ କମିଟି ଦ୍ୱାରା ପ୍ରସ୍ତୁତ ହୋଇଥିବା ସମ୍ବିଧାନ ପରି ଅନ୍ୟ କୌଣସି ଦେଶର ସମ୍ବିଧାନ ଏତେ ବଡ଼ ନୁହେଁ । ଯେଉଁମାନେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ଏହାକୁ ପଢ଼ିନାହାଁନ୍ତି, ସେମାନଙ୍କ ପାଇଁ ଏହା ସହଜ ନୁହେଁ ଯେ ସେମାନେ ଏହାର ବିଶେଷତ୍ୱକୁ ଉପଲବ୍ଧି କରିପାରିବେ ।

ସମ୍ବିଧାନର ଖସଡ଼ା, ୮ ମାସ ହେବ ସର୍ବସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରାଯାଇଥିଲା । ଏତେ ଦୀର୍ଘ ସମୟ ମଧ୍ୟରେ, ଯେଉଁମାନେ ସମର୍ଥକ, ସମାଲୋଚକ ତଥା ବିରୋଧୀ, ସମସ୍ତେ ଏହା ଉପରେ ନିଜ ନିଜର ସିଦ୍ଧାନ୍ତ ଦେଇ ପାରିଛନ୍ତି । ସେଥି ମଧ୍ୟରୁ ଯାହା ଆଲୋଚନା ମଧ୍ୟକୁ ଆସିଛି, ସେ ସବୁର ଉତ୍ତର ଦିଆଯିବା ଆବଶ୍ୟକ । ଏହି ଖସଡ଼ା ଉପରେ, ବିଚାର କରିବାର ପ୍ରସ୍ତାବ ଦେବା ପୂର୍ବରୁ ମୁଁ ଆବଶ୍ୟକ ମନେ କରେ ଯେ, ଏହି ସମ୍ବିଧାନର ବିଶେଷତ୍ୱ ଦିଗକୁ ଆପଣମାନଙ୍କର ଧ୍ୟାନ ଆକର୍ଷଣ କରିବି । ଯାହା ଆଲୋଚନା ହୋଇ ଯାଇଛି, ତାହାର ସମାଧାନ କରିବି । ପ୍ରଥମେ, ସମ୍ବିଧାନ ନିର୍ମାଣ କମିଟି ଦ୍ୱାରା ନିଯୁକ୍ତ କରାଯାଇଥିବା ୩ଟି ଛୋଟ କମିଟିର ବିବରଣୀ ଉପସ୍ଥାପନ କରୁଛି ।

ଏଥିରେ— (୧) ମୁଖ୍ୟ କମିସନରଙ୍କର ଉଦଯାପନ ବିଷୟରେ ନିଯୁକ୍ତ ହୋଇଥିବା କମିଟିର ରିପୋର୍ଟ ।

(୨) କେନ୍ଦ୍ରସ୍ଥ ସରକାର ତଥା ରାଜ୍ୟ ମଧ୍ୟରେ ଆର୍ଥିକ ସମ୍ପର୍କ ବିଷୟରେ ଗଠିତ ବିଶେଷଜ୍ଞଙ୍କ ରିପୋର୍ଟ ।

(୩) କବାଦ୍ଧଲ ବା ଆଦିବାସୀ ଏରିଆ ବିଷୟରେ ଜାଞ୍ଚ କମିଟିର ରିପୋର୍ଟ ।

ଏହି ତଥ୍ୟସ୍ଥ ରିପୋର୍ଟ ଏତେ ଡେରିରେ ମିଳିଲା ଯେ, ତାହା ଉପରେ ସମ୍ବିଧାନ ନିର୍ମାଣ ସଭଦ୍ୱାରା କୌଣସି ବିଚାର କରିବା କଷ୍ଟକର ହୋଇପଡ଼ିଲା । ସଦସ୍ୟମାନଙ୍କୁ ଏହାର ପ୍ରତିଲିପି ଗୁଡ଼ିକୁ ବାଣ୍ଟି ଦିଆଯାଇଥିଲା । ଖସଡ଼ା କମିଟିଦ୍ୱାରା ଏହି ସମସ୍ତ କମିଟି ଗୁଡ଼ିକର ରିପୋର୍ଟ ଏବଂ ଏଥିରେ କରାଯାଇଥିବା ସୁପାରିସ୍ ଗୁଡ଼ିକ ଉପରେ ବିଚାର କରାଯାଇଛି ।

ବର୍ତ୍ତମାନ ମୁଁ ମୁଖ୍ୟ କଥା ଗୁଡ଼ିକ ଉପରକୁ ଆସୁଛି । ଯଦି ଏହି ସମ୍ବିଧାନକୁ କୌଣସି ଏକ ଆଇନ ଗ୍ରନ୍ଥକୁ ଦିଆଯିବ, ତାହାହେଲେ ଯେ ଦୁଇଟି ପ୍ରଶ୍ନ

ପଚାରିବ । (୧)ଏହି ସମ୍ବିଧାନରେ କେଉଁପ୍ରକାରର ଶାସନ ପଦ୍ଧତି ଅଛି ? (୨)ଏହି ସମ୍ବିଧାନ କିପରି ? ମୁଁ ଏହି ଦୁଇଟି ପ୍ରଶ୍ନ ମଧ୍ୟରୁ ସବାଗ୍ରେ ପ୍ରଥମଟିକୁ ବିଚାରକୁ ନେଉଛି ।

## ଭାରତୀୟ ପାର୍ଲିଆମେଣ୍ଟାରୀ ସଂଘୀୟ-ଶାସନର ସ୍ୱରୂପ :-

ସମ୍ବିଧାନର ଏହି ଢାଞ୍ଚାରେ ପାର୍ଲିଆମେଣ୍ଟାରୀ ସଂଘୀୟ ଶାସନ ପଦ୍ଧତିର କଳ୍ପନା କରାଯାଇଛି । ଏଥିରେ ପ୍ରଧାନ ସ୍ଥାନ ଯାହାକୁ ଦିଆଯାଇଛି ତାକୁ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଣ୍ଟ କୁହାଯାଏ । କିନ୍ତୁ ଭାରତୀୟ ଶାସନ ପଦ୍ଧତିରେ ଓ ଆମେରିକାର ଶାସନ ପଦ୍ଧତିରେ କେବଳ ନାମ ବ୍ୟତୀତ ଅନ୍ୟ କୌଣସି ସମାନତା ନାହିଁ । ଦୁଇ ପଦ୍ଧତି ମଧ୍ୟରେ ମୌଳିକ ପାର୍ଥକ୍ୟ ଅଛି ।

ଆମେରିକା ଶାସନ ପଦ୍ଧତି ଅନୁଯାୟୀ ଏହାର ଅଧ୍ୟକ୍ଷ, କାର୍ଯ୍ୟ ସାଧନର ମୁଖ୍ୟ ଓ ଶାସନର କେନ୍ଦ୍ରବିନ୍ଦୁ ହୋଇଥାନ୍ତି । କିନ୍ତୁ ଢାଞ୍ଚା ସମ୍ବିଧାନ ଅନୁସାରେ ଅଧ୍ୟକ୍ଷଙ୍କ ସ୍ଥାନ ଇଂରେଜ ସମ୍ବିଧାନ ଅନୁରୂପ କରାଯାଇଛି । ସେ ରାଜ୍ୟର ମୁଖ୍ୟ ଅଧିକାରୀ ଅଟନ୍ତି, କିନ୍ତୁ କାର୍ଯ୍ୟ ସାଧନର ମୁଖ୍ୟ ନୁହନ୍ତି । ସେ ରାଷ୍ଟ୍ରର ପ୍ରତିନିଧିତ୍ୱ ହିଁ କରନ୍ତି । ମାତ୍ର ରାଷ୍ଟ୍ରକୁ ଶାସନ କରନ୍ତି ନାହିଁ । ସେ ରାଷ୍ଟ୍ରର ରାଜ ପ୍ରମୁଖ ଅଟନ୍ତି । କିନ୍ତୁ ଶାସନ କ୍ଷେତ୍ରରେ ତାଙ୍କର ସ୍ଥାନ ମୁଦ୍ରା ଉପରେ ଅଙ୍କିତ ଆକୃତି ପରି, ଯାହାଙ୍କର ସ୍ୱାକ୍ଷର ହେଲପରେ ହିଁ ରାଷ୍ଟ୍ରର ମତାମତ ପ୍ରକାଶ ହୋଇପାରିବ ।

ଆମେରିକା ସମ୍ବିଧାନ ଅନୁସାରେ ରାଷ୍ଟ୍ରପତିଙ୍କ ଅଧୀନରେ ବହୁତମନ୍ତ୍ରୀ ଥାଇ ବିଭିନ୍ନ ବିଭାଗର ଦାୟିତ୍ୱ ନେଇଥାନ୍ତି । ସେହିପରି ଭାରତୀୟ ସଂଘୀୟ ଶାସନ ଅଧୀନରେ ଥିବା ବିଭାଗର ଦାୟିତ୍ୱ ବହନ କରିବେ । କିନ୍ତୁ ଏତେ ଗୁଡ଼ିଏ ସମାନତା ରହିଲେ ମଧ୍ୟ ଏମାନଙ୍କ ମଧ୍ୟରେ ଥିବା ସବୁଠାରୁ ବଡ଼ ପାର୍ଥକ୍ୟ ହେଉଛି ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ନିଜର କୌଣସି ମନ୍ତ୍ରୀଙ୍କର ପ୍ରସ୍ତାବକୁ ମାନି ପାରନ୍ତି, ନ ପାରନ୍ତି ମଧ୍ୟ । କିନ୍ତୁ ଭାରତୀୟ ସଂଘୀୟ-ଶାସନର ରାଷ୍ଟ୍ରପତିଙ୍କୁ ନିଜ ମନ୍ତ୍ରୀମଣ୍ଡଳର ପ୍ରସ୍ତାବକୁ ମାନିବାକୁ ପଡ଼ିବ । ସେ ତାଙ୍କ ସମ୍ମତି ବିରୁଦ୍ଧରେ କିଛି କରିପାରିବେ ନାହିଁ, ଏବଂ ଏହା ମଧ୍ୟ ତାଙ୍କ ସମ୍ମତି ବିନା କିଛି କରିପାରିବେ ନାହିଁ । ଆମେରିକା ପ୍ରେସିଡେଣ୍ଟ, ନିଜର ଇଚ୍ଛା ଅନୁସାରେ ଯେକୌଣସି ମନ୍ତ୍ରୀଙ୍କୁ ବରଖାସ୍ତ କରି ପାରିବେ । କିନ୍ତୁ ଭାରତୀୟ ସଂଘୀୟ ଶାସନର ରାଷ୍ଟ୍ରପତି, ସେ ପର୍ଯ୍ୟନ୍ତ, ଏହା କରି ପାରିବେ ନାହିଁ, ଯେଉଁ ପର୍ଯ୍ୟନ୍ତ ତାଙ୍କର ମନ୍ତ୍ରୀ, ପାର୍ଲିଆମେଣ୍ଟରେ ସଂଖ୍ୟାଧିକ ମତାଧିକାରୀ ଅଟନ୍ତି ।

ଆମେରିକା ଶାସନ ପଦ୍ଧତିର ଆଧାର ହେଉଛି ଶାସନ ବିଭାଗ ଓ ଆଇନ ପ୍ରଣୟନ କରିବାର ବିଭାଗ ଅଲଗା ଅଲଗା । ଏହି କାରଣରୁ ପ୍ରେସିଡେଣ୍ଟ ଓ ତାଙ୍କର ମନ୍ତ୍ରୀ ଆମେରିକା କଂଗ୍ରେସର ସଦସ୍ୟ ହୋଇ ପାରିବେ ନାହିଁ । କିନ୍ତୁ ଏଠା ସମ୍ବିଧାନ ଅନୁସାରେ ଭାରତୀୟ ସଂଘୀୟ ଶାସନର ମନ୍ତ୍ରୀଗଣ କେବଳ ପାର୍ଲିଆମେଣ୍ଟର ସଦସ୍ୟ ମାନେହିଁ ହୋଇପାରିବେ । ପାର୍ଲିଆମେଣ୍ଟର ଅନ୍ୟ ସଦସ୍ୟମାନଙ୍କର ଯାହା ଅଧିକାର, ମନ୍ତ୍ରୀମାନଙ୍କର ମଧ୍ୟ ତାହା ଥାଏ । ସେମାନେ ପାର୍ଲିଅମେଣ୍ଟରେ ବସିପାରିବେ, ଆଲୋଚନାରେ ଭାଗନେଇ ପାରିବେ ଓ ନିଜର ମତ ମଧ୍ୟ ଦେଇ ପାରିବେ ।

ଲୋକତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଅବଶ୍ୟ ଦୁଇଟି କଥା ରହିବା ଉଚିତ୍, ତାହା ସ୍ଥିରତା ଓ ଉତ୍ତର ଦାୟିତ୍ୱ । ଆଜି ପର୍ଯ୍ୟନ୍ତ ଏପରି କୌଣସି ଶାସନ ପଦ୍ଧତିର ଆବିଷ୍କାର କରାଯାଇ ପାରିନାହିଁ, ଯେଉଁଥିରେ ଉଭୟ ସମାନ ସମାନ ମାତ୍ରାରେ ରହିଛି । ଗୋଟିକରେ ସ୍ଥିରତା ବେଶି ଓ ଉତ୍ତର ଦାୟିତ୍ୱ କମ, ଅନ୍ୟଟିରେ ଉତ୍ତର ଦାୟିତ୍ୱ ବେଶୀ ମାତ୍ର ସ୍ଥିରତା କମ । ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିର ସୁପାରିଶ କରିବା ସମୟରେ ସ୍ଥିରତା ଅପେକ୍ଷା ଉତ୍ତର ଦାୟିତ୍ୱକୁ ଅଧିକ ମହତ୍ତ୍ୱ ଦିଆଯାଇଛି ।

ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ଏଠା ସମ୍ବିଧାନ ଅନୁସାରେ ସରକାରର ସ୍ୱରୂପ ସମ୍ବନ୍ଧରେ ବ୍ୟାଖ୍ୟା କଲି । ବର୍ତ୍ତମାନ ମୁଁ ଦ୍ୱିତୀୟ ପ୍ରଶ୍ନ, ସମ୍ବିଧାନର ସ୍ୱରୂପ ଉପସ୍ଥାପନ କରୁଅଛି ।

### ସମ୍ବିଧାନର ସ୍ୱରୂପ :—

ଇତିହାସରେ ଦୁଇପ୍ରକାର ସମ୍ବିଧାନ ଦେଖିବାକୁ ମିଳେ (୧) ୟୁନିଟାରିଆନ (୨) ଫେଡରାଲ । କେନ୍ଦ୍ରଭୂତ ପାଇଁ ସମ୍ବିଧାନକୁ ଏହି ଦୁଇଟି ଆବଶ୍ୟକୀୟଗୁଣର ଆଧାର ହେବା ଉଚିତ୍ । (୧) କେନ୍ଦ୍ରୀୟ ଶାସନ ସର୍ବୋଚ ଶାସନ ହେବ (୨) ସହାୟକ ଦ୍ୱିତୀୟତା ସମ୍ପନ୍ନ ଶାସନ ବିଧିଦ୍ୱାରା ହେବନାହିଁ । ସଂଘର ଆଧାର ପାଇଁ ସମ୍ବିଧାନର ବିଶେଷତ୍ୱ ଏହିପରି ରହିବ । (କ) କେନ୍ଦ୍ରୀୟ ଶାସନ ତଥା ସହାୟକ ଶାସନ ଗୁଡ଼ିକ ଏକାଧାରରେ ରହିବ । (ଖ) ନିଜ ନିଜ କ୍ଷେତ୍ରରେ ପ୍ରତ୍ୟେକଙ୍କ ପ୍ରଭୁତ୍ୱ ବଜାୟ ରହିବ । ସଂଘର ଆଧାର ପାଇଁ ଶାସନ ବ୍ୟବସ୍ଥାକୁ " ଦ୍ୱିବିଧ ଶାସନ ପଦ୍ଧତି " କୁହାଯାଏ ।

ଏଠା ସମ୍ବିଧାନ, ସଂଘର ଆଧାର ପାଇଁ । କାରଣ ଏହାଦ୍ୱାରା ଦ୍ୱୈଧ ଶାସନ ପଦ୍ଧତି ସ୍ଥାପିତ ହୋଇପାରିବ । ପ୍ରସ୍ତାବିତ ସମ୍ବିଧାନ ଅନୁସାରେ ଯେଉଁ

ଦ୍ୱୈଧ ଶାସନ ପ୍ରତିଷ୍ଠା ହେବ ତ ଦ୍ୱାରା ଗୋଟିଏ କେନ୍ଦ୍ରରେ ସଙ୍ଘୀୟ ସରକାର ରହିବ ଓ ଅନ୍ୟଟି ରାଜ୍ୟରେ ରହିବ । ପ୍ରତ୍ୟେକ ରାଜ୍ୟ ସମ୍ବିଧାନ ଦ୍ୱାରା ପ୍ରଦତ୍ତ ବିଷୟରେ ତାଲୁକା ସମ୍ପନ୍ନ ହୋଇ ପାରିବ ।

ଆମେରିକା ସମ୍ବିଧାନ ଓ ଭାରତୀୟ ସମ୍ବିଧାନ ମଧ୍ୟରେ ଦୁଇଟି ମୁଖ୍ୟ ପ୍ରଭେଦ ଅଛି । ଆମେରିକା ଶାସନ ପଦ୍ଧତିରେ ଦୁଇସ୍ତରରେ ନାଗରିକତାର ବ୍ୟବସ୍ଥା ଅଛି । ଆମେରିକାରେ ସଯୁକ୍ତ ରାଷ୍ଟ୍ରର ନାଗରିକତା ରହିବ, ତା ସଙ୍ଗେ ସଙ୍ଗେ ରାଜ୍ୟର ମଧ୍ୟ ଏକ ପୃଥକ ନାଗରିକତା ଗ୍ରହଣ କରିବାକୁ ପଡ଼ିବ । ଏହି ଦୋହରା ନାଗରିକତା ଦ୍ୱାରା ଆମେରିକୀୟ ସମ୍ବିଧାନରେ ସୃଷ୍ଟି ହୋଇଥିବା ବହୁତ ତ୍ରୁଟି ଚତୁର୍ଦ୍ଦଶ ସଂଶୋଧନ ଦ୍ୱାରା ଲାଘବ କରାଯାଇଛି । କିନ୍ତୁ ଶ୍ରୀଯୁକ୍ତ ଉଇଲିୟମ ଏଣ୍ଡରସନଙ୍କ କହିବା ଅନୁସାରେ କେତେକ ରାଜନୈତିକ ଘଟଣାରେ, ଯେଉଁଥିରେ ମତ ଦାନର ଅଧିକାର ଓ ସରକାରୀ ଚାକିରୀ ସଶ୍ଳିଷ୍ଟ, ସେ କ୍ଷେତ୍ରରେ ରାଜ୍ୟଗୁଡ଼ିକ ପକ୍ଷପାତ ନୀତି ଅବଲମ୍ବନ କରିଥାନ୍ତି ଓ କରୁଛନ୍ତି । ବେଳେ ବେଳେ ଏହି ପକ୍ଷପାତ ନୀତି ବହୁତ ଦୂର ଆଗେଇ ଯାଇଥାଏ । ଯେଉଁ ରାଜ୍ୟ ବା ସ୍ଥାନୀୟ ସରକାରୀ ଦପ୍ତରରେ ଚାକିରୀ କରିବା ପାଇଁ ଆବଶ୍ୟକ ହେବ, ତାକୁ ସେଠାକାର ବାସିନ୍ଦା ବା ନାଗରିକ ହେବାକୁ ପଡ଼ିବ । ଏପରିକି କୌଣସି ସାର୍ବଜନୀନ ପେସା ବା ସେବା ପାଇଁ ଅନୁମତି ପତ୍ର ପାଇବାକୁ ହେଲେ ସେଥିପାଇଁ ରାଜ୍ୟର ବାସିନ୍ଦା ବା ନାଗରିକ ହେବାକୁ ହେବ । ଏପରିକି ଯେଉଁ କାର୍ଯ୍ୟ ଆଇନ ବରୁଦ୍ଧ, ଯଥା ବେଆଇନ୍ ମଦ ବିକ୍ରି, ଜୁଆ ଖେଳ, ବେଶ୍ୟା ବ୍ୟବସାୟ ଏହି ସବୁ କାର୍ଯ୍ୟରେ ମଧ୍ୟ ନାଗରିକତାର ଆବଶ୍ୟକତା ଅନିବାର୍ଯ୍ୟ ।

ପ୍ରତ୍ୟେକ ରାଜ୍ୟର କିଛି ନିଜର ଅଧିକାର ଅଛି, ଯାହାଦ୍ୱାରା ତାହା ନିଜ ରାଜ୍ୟର ନାଗରିକମାନଙ୍କୁ ଅଧିକାର ଭୋଗ କରାଇବ । ଯଥା ଶିକାର କରିବା ଓ ମାଛ ଧରିବା ଇତ୍ୟାଦି । ଏହା ଦୁଇ ରାଜ୍ୟ ଅନ୍ତର୍ଗତ ବିଷୟ ଅଟେ । ରାଜ୍ୟ ଗୁଡ଼ିକର ଏହି ସାମାନ୍ୟ କ୍ଷମତା, ଯାହାଦ୍ୱାରା ନିଜ ନାଗରିକମାନଙ୍କ ଅପେକ୍ଷା, ଅନ୍ୟ ନାଗରିକମାନଙ୍କଠାରୁ ଶିକାର କରିବ, ବା ମାଛ ଧରିବାର ଅନୁମତି ପତ୍ର ପାଇଁ ଅଧିକ ଫିସ୍ ନିଅନ୍ତି । ରାଜ୍ୟ, ନିଜ ରାଜ୍ୟର କଲେଜ୍ ବା ବିଶ୍ୱ-ବିଦ୍ୟାଳୟରେ, ସେମାନଙ୍କର ଲୋକମାନଙ୍କ ବ୍ୟତୀତ ଯେଉଁମାନେ ସେ ରାଜ୍ୟର ଅଧିବାସୀ ନୁହନ୍ତି ବିଶେଷ ସୁବିଧା ପାଇ ପାରନ୍ତିନାହିଁ । ସାଧାରଣ ଅବସ୍ଥାକୁ ଛାଡ଼ିଦେଲେ, ସାମାନ୍ୟ ତଥା ନିଜର ହସପିଟାଲ୍‌ରୁ ଅନ୍ୟ ସ୍ଥାନମାନଙ୍କରେ ମଧ୍ୟ ନିଜର ନାଗରିକମାନଙ୍କୁ ନିଯୁକ୍ତ କରନ୍ତି ।

ସଂକ୍ଷେପରେ ମୁଁ ଏହା କହିପାରେ, ଆମେରିକା ସମ୍ବିଧାନରେ ଏପରି

କେତେକ ଅଧିକାର ଅଛୁ, ଯାହାଦ୍ୱାରା ଯେକୌଣସି ରାଜ୍ୟ ନିଜର ନାଗରିକ ତଥା ଅଧିବାସୀମାନଙ୍କୁ କିଛି ବିଶେଷ ସୁବିଧା ଦେଇପାରିବ ଏବଂ ସେହି ଆଇନ ବଳରେ ଅନ୍ୟ ରାଜ୍ୟର ନାଗରିକମାନଙ୍କୁ ବା ବାସିନ୍ଦାଙ୍କୁ ସେଥିରୁ ବଞ୍ଚିତ କରି ଦେଇପାରିବ । ଅଥବା ସେମାନଙ୍କୁ ନିଜର ନାଗରିକମାନଙ୍କ ଅପେକ୍ଷା କଠିନ ସର୍ତ୍ତ ମଧ୍ୟରେ ଜଡ଼ିତ କରି ରଖିପାରିବ । କୌଣସି ରାଜ୍ୟର ନାଗରିକଗଣ, ସେହି ରାଜ୍ୟର ଯେଉଁ ବିଶେଷ ସୁବିଧା ପାଇଥାନ୍ତି, ତାହା ସେହି ରାଜ୍ୟର ନାଗରିକଙ୍କ ପାଇଁ, ବିଶେଷ ଅଧିକାର ଅଟେ । ଅସ୍ଥାୟୀ ତଥା ଅଳ୍ପକାଳୀନ ଯାତ୍ରୀମାନଙ୍କୁ ପ୍ରତ୍ୟେକ ସ୍ଥାନରେ କିଛି ବିଶେଷ ଅସୁବିଧା ସହିବାକୁ ପଡ଼ିଥାଏ ।

ଯେଉଁ ଭାରତୀୟ ବିଧାନର ପ୍ରସ୍ତାବ କରାଯାଇଛି, ସେଥିରେ ଦୋହରା ଶାସନ ଅଛି, ମାତ୍ର ନାଗରିକତା ଗୋଟିଏ । ସାରା ଭାରତ ପାଇଁ କେବଳ ଗୋଟିଏ ନାଗରିକତା ରହିଛି । ଯେକୌଣସି ଭାରତୀୟ ଯେକୌଣସି ରାଜ୍ୟରେ ରହୁନା କାହିଁକି ତାର ନାଗରିକତା ଅନ୍ୟସବୁ ନାଗରିକମାନଙ୍କ ସହିତ ସମାନ । ପ୍ରସ୍ତାବିତ ଭାରତୀୟ ସମ୍ବିଧାନର ଦ୍ୱୈଧ ଶାସନ ପଦ୍ଧତି ଆମେରିକା ଶାସନ ପଦ୍ଧତିଠାରୁ ପାର୍ଥକ୍ୟ ଅଟେ । ଆମେରିକାର ରାଜ୍ୟସରକାର ଗୁଡ଼ିକ ସଂଘୀୟ ସରକାର ଦୃଷ୍ଟିରୁ କିଛି ଭିନ୍ନ, ଯାହାର କଳ୍ପନା ନିମ୍ନଲିଖିତ କଥାରୁ ଜଣାଯାଏ ।

(୧) ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ସମ୍ମାନ ଦେବାକୁ ଯାଇ ପ୍ରତ୍ୟେକ ରାଜ୍ୟ ନିଜର ସମ୍ବିଧାନ ତିଆରି କରିବାରେ ସ୍ୱତନ୍ତ୍ର ।

(୨) କେନ୍ଦ୍ରୀୟ ସରକାର ଉପରେ କୌଣସି ପ୍ରକାର ନିର୍ଭର ନରଖି ପ୍ରତ୍ୟେକ ରାଜ୍ୟର ନାଗରିକ, ନିଜ ସମ୍ବିଧାନରେ ପରିବର୍ତ୍ତନ ଆଣିବାର ଅଧିକାର ସବୁଦିନ ପାଇଁ ନିଜ ହାତରେ ସୁରକ୍ଷିତ ରଖିଛନ୍ତି ।

ଶ୍ରୀଯୁକ୍ତ ବ୍ରାଇସନଙ୍କ ଭାଷାରେ ଆମେରିକାରେ ଗୋଟିଏ ରାଜ୍ୟ, ନିଜେହିଁ ସମ୍ବିଧାନ ଅନୁଯାୟୀ ରାଷ୍ଟ୍ରମଣ୍ଡଳର ସଦସ୍ୟ ଅଟେ । ବିଧାନ ସମ୍ବନ୍ଧୀୟ ଅଧିକାର ହେଉ ବା ଶାସନ ସମ୍ବନ୍ଧୀୟ ହେଉ, କିମ୍ବା ନ୍ୟାୟ ସମ୍ବନ୍ଧୀୟ ହେଉ, ସମସ୍ତ ଅଧିକାର ସମ୍ବିଧାନ ଜନିତ ଅଟେ ଓ ସମ୍ବିଧାନ ଉପରେ ନିର୍ଭର କରେ ।

ପ୍ରସ୍ତାବିତ ଭାରତୀୟ ସମ୍ବିଧାନ ବିଷୟରେ ଏହା କୁହାଯାଇ ପାରିବ ନାହିଁ । କୌଣସି ରାଜ୍ୟକୁ ମଧ୍ୟ [ ଅତି କମ୍‌ରେ ପ୍ରଥମ ଭାଗ ନାମାଙ୍କିତ ରାଜ୍ୟମାନଙ୍କ ] ନିଜର ସମ୍ବିଧାନ ତିଆରି କରିବାର ଅଧିକାର ଦିଆଯାଇଛି । କେନ୍ଦ୍ରୀୟ ସରକାର ମାନଙ୍କର ଗୋଟିଏ ମାତ୍ର ସମ୍ବିଧାନ ଯେଉଁଥିରୁ କେହିହେଲେ ବାହାରକୁ ଯାଇ ପାରିବେନାହିଁ ମାତ୍ର ସମସ୍ତଙ୍କୁ ତାହାରି ଭିତରେ ରହି କାର୍ଯ୍ୟ କରିବାକୁ ପଡ଼ିବ ।

—୦—

# ଭାରତ ସମ୍ବିଧାନର ବିଶେଷତ୍ୱ

ଭାରତୀୟ ସଙ୍ଘୀୟ ଶାସନ ପଦ୍ଧତିର କିଛି ଅଲଗା ବିଶେଷତ୍ୱ ମଧ୍ୟ ଅଛି । ଯାହା ଫଳରେ ଏହା କେବଳ ଆମେରିକୀୟ ସମ୍ବିଧାନ ଠାରୁ ଭିନ୍ନରେ ନୁହେଁ, ଅନ୍ୟ ଯେତେ ସଙ୍ଘୀୟ ଶାସନ ପଦ୍ଧତି ଆମ୍ଭମାନଙ୍କର ପରିଚିତ ହୋଇଛି, ସେମାନଙ୍କ ଠାରୁ ମଧ୍ୟ ଭିନ୍ନରେ ରହିଛି । ଯେଉଁଗୁଡ଼ିକ ଶାସନ ପଦ୍ଧତି ଅଛି ସେଗୁଡ଼ିକ ସମ୍ପୂର୍ଣ୍ଣଭାବେ ସଙ୍ଘୀୟ ରୂପରେ ଚଳାଯାଇଛି । ଯେ କୌଣସି ପରିସ୍ଥିତି ହେଉନା କାହିଁକି, ସେଗୁଡ଼ିକ ନିଜର ଆକାର ପ୍ରକାରକୁ ବଦଳାଇ ପାରିବେ ନାହିଁ । ସେଗୁଡ଼ିକ କୌଣସି ହେଲେ ପରିସ୍ଥିତିରେ "ଏକକ ସରକାର"ର ସ୍ୱରୂପ ଗ୍ରହଣ କରିପାରିବେ ନାହିଁ । ଅନ୍ୟ ପକ୍ଷରେ ସମୟ ଓ ପରିସ୍ଥିତିର ଆବଶ୍ୟକତା ଅନୁଯାୟୀ ଭାରତୀୟ ସମ୍ବିଧାନ 'ଏକକ' ଓ 'ସଙ୍ଘୀୟ' ଉଭୟ ହୋଇ ପାରିବ । ଏହାର ରଚନା ଏପରି ଭାବରେ କରାଯାଇଛି ଯେ ଶାନ୍ତି ସମୟ ମଧ୍ୟରେ ଏହା ଏକ ସଙ୍ଘୀୟ ଶାସନ ପଦ୍ଧତି ପରି କାର୍ଯ୍ୟ କରିବ, କିନ୍ତୁ ଯୁଦ୍ଧ ଲାଗିଗଲେ ଏହା ଏପରି କାର୍ଯ୍ୟ କରିବ, ଯାହାକି, 'ଏକକ' ସରକାରର ସମ୍ବିଧାନ ସମ୍ମତ ରୂପ ଧାରଣ କରିପାରିବ । ଯଦି ରାଷ୍ଟ୍ରପତି ସମ୍ବିଧାନର ୨୩୫ ଧାରା ଅନୁସାରେ ଏକ ଘୋଷଣା କରନ୍ତି, ତାହାହେଲେ ସମସ୍ତ ରୂପ ବଦଳି ଯାଇପାରିବ । ସମସ୍ତ ଦେଶ ଗୋଟିଏ ରାଜ୍ୟରେ ପରିଣତ ହୋଇପାରିବ । ଯଦି ସଙ୍ଘୀୟ ସରକାର ଚାହାନ୍ତି, ତାହାହେଲେ ନିଜର ଘୋଷଣା ଦ୍ୱାରା ନିମ୍ନଲିଖିତ ମତେ ଦାବି କରିପାରିବେ ।

୧) ଯଦ୍ୟପି "ଏହି ବିଷୟ" ରାଜ୍ୟ ସୂଚୀରେ ରହୁ, ତାହାହେଲେ ମଧ୍ୟ ଏହି ବିଷୟରେ ଆଇନ ପ୍ରଣୟନ କରିବାର ଅଧିକାର ଅଛି ।

୨) ରାଜ୍ୟ ସୂଚୀରେ ଥିବା କୌଣସି ବିଷୟକୁ ରାଜ୍ୟଗୁଡ଼ିକ ଠାରୁ ଫେରାଇ ଆଣିବା ସମ୍ବନ୍ଧରେ ଆଦେଶ ଦେବାର ଅଧିକାର ମଧ୍ୟ ରହିଛି ।

୩) କୌଣସି ପଦାଧିକାରୀଙ୍କୁ କିଛି ଅଧିକାର ଦେବାର ଅଧିକାର ଅଛି ।

୪) ସମ୍ବିଧାନ ଦ୍ୱାରା ଦିଆଯାଇଥିବା ଆର୍ଥିକ ସାହାଯ୍ୟକୁ ସ୍ଥଗିତ କରିବାର ଅଧିକାର ମଧ୍ୟ ଅଛି ।

ଏହି ପ୍ରକାର ନିଜେ ନିଜକୁ 'ଏକକ' ଶାସନ ପଦ୍ଧତିକୁ ବଦଳାଇ ଦେବାର ଅଧିକାର କୌଣସି ସଙ୍ଘୀୟ ଶାସନ ପଦ୍ଧତିରେ ନାହିଁ । ଭାରତ ସମ୍ବିଧାନ ଓ ଅନ୍ୟ

ଦେଉଛି ସଙ୍ଘୀୟ ସମ୍ବିଧାନ ସମ୍ବନ୍ଧରେ ଆମମାନଙ୍କର ପରିଚୟ ସେଗୁଡ଼ିକ ମଧ୍ୟରେ ଏହି ଗୋଟିଏ ବିଭେଦ ରହିଛି ।

ସଙ୍ଘୀୟ ସମ୍ବିଧାନର ଉଦ୍ଦେଶ୍ୟ ହେଉଛି ସମ୍ବିଧାନର ବିଧାନ ଅନୁଯାୟୀ ଥିବା ପ୍ରଭୁତ୍ୱକୁ ସଙ୍ଘୀୟ ଶାସନ ବ୍ୟବସ୍ଥା ତଥା ରାଜ୍ୟ ଗୁଡ଼ିକର ଶାସନ ବ୍ୟବସ୍ଥା ମଧ୍ୟରେ ବିତରଣ କରିବା, ଯାହାର ଦୁଇଟି ଅନିବାର୍ଯ୍ୟ ପରିଣାମ ହୋଇପାରେ ।

୧) ଯଦି ସଙ୍ଘୀୟ ସରକାର ରାଜ୍ୟ ସରକାର ଗୁଡ଼ିକର 'ବିଷୟ'ରେ ହସ୍ତକ୍ଷେପ କରେ ଅଥବା ରାଜ୍ୟ ସରକାର ସଙ୍ଘୀୟ ସରକାରର 'ବିଷୟ' ଗୁଡ଼ିକ ଉପରେ ହସ୍ତକ୍ଷେପ କରନ୍ତି, ତାହାହେଲେ ସ୍ୱୟଂ ସମ୍ବିଧାନକୁ ଲଙ୍ଘନ କରାଯାଏ ।

୨) ଏହି ପ୍ରକାର ଲଙ୍ଘନ ଗୁଡ଼ିକୁ ନ୍ୟାୟାଧୀଶଙ୍କ ବିଚାରକୁ ଅଣାଯାଇପାରେ ଏବଂ ଏହାର ଔଚିତ୍ୟ ବା ଅନୈତିକତାର ସିଦ୍ଧାନ୍ତ କେବଳ ନ୍ୟାୟାଳୟ ହିଁ କରିପାରିବ । ଯେଉଁଦେଶରେ ସଙ୍ଘୀୟ ଶାସନ ପଦ୍ଧତିର କିଛି ପଛକୁ ଯାଇ ଦୃଷ୍ଟାନ୍ତ ନିଆଯାଏ ତାହା ମଧ୍ୟରେ ଏହି ପଦ୍ଧତିରେ ନିହିତ 'କଠୋରତା' ଏବଂ 'ଅତି ବୈଧାନିକତା' ଦ୍ୱାରା ଉତ୍ପନ୍ନ କ୍ଷତି ଗୁଡ଼ିକୁ ଲାଘବ କରିବାର ଚେଷ୍ଟା କରାଯାଏ । ସମ୍ବନ୍ଧରେ ଅଷ୍ଟ୍ରେଲିଆର ସମ୍ବିଧାନରେ ଥିବା କଠୋରତାକୁ କମ୍ କରିବା ପାଇଁ ନିମ୍ନଲିଖିତ ଦୁଇଟି କଥାର ଦୃଷ୍ଟାନ୍ତ ଅଛି ।

ଏହି ସମ୍ବିଧାନରେ ଏପରି 'ବିଷୟ'ର ଏକ ଲମ୍ବା ସୂଚୀ ଦିଆଯାଇଛି ଯାହା ସମ୍ବନ୍ଧରେ ସମବର୍ତ୍ତୀ ଆଇନ ପାସ କରିବାର ଅଧିକାର ଅଛି । ଅଷ୍ଟ୍ରେଲିଆର ସମ୍ବିଧାନରେ ସମବର୍ତ୍ତୀ ବିଷୟ ୩୯ ଅଟେ । ମାତ୍ର ଭାରତ ସମ୍ବିଧାନରେ ଏହାର ସଂଖ୍ୟା ୩୭ ଅଟେ । ଅଷ୍ଟ୍ରେଲିଆ ସମ୍ବିଧାନର ଅନୁକରଣରେ ଭାରତ ସମ୍ବିଧାନରେ ଅତି କମରେ ୬ଟି ଧାରା ଏପରି ଭାବରେ ଅଛି, ଯାହା ଅସ୍ଥାୟୀ ଓ ଯେଉଁଥିରେ ସମୟର ଆବଶ୍ୟକତା ଅନୁଯାୟୀ ଲୋକସଭା ଯେ କୌଣସି ସମୟରେ ବଦଳାଇ ପାରିବ । ଯାହାକୁ ଗୋଟିଏ କଥାରେ କହିବାକୁ ଗଲେ ଭାରତ ସମ୍ବିଧାନ ଅଷ୍ଟ୍ରେଲିଆ ସମ୍ବିଧାନ ଅପେକ୍ଷା ମଧ୍ୟ ବିଶେଷ ଭାବରେ କୃତକାର୍ଯ୍ୟ ସମ୍ପନ୍ନ ଅଟେ । ଏହା ହେଉଛି ଲୋକସଭାକୁ "କ୍ଷେତ୍ର ବିଶେଷ ପାଇଁ ଆବଶ୍ୟକ" ଆଇନ ପାସ କରି ପାରିବାର ଅଧିକାର । ଅଷ୍ଟ୍ରେଲିଆର ପାର୍ଲିଆମେଣ୍ଟକୁ କେବଳ ୩ଟି ବିଷୟରେ କ୍ଷେତ୍ର ବିଶେଷ ପାଇଁ ଆବଶ୍ୟକ ଆଇନ ପାସ କରିବାର ଅଧିକାର ଅଛି । ଭାରତ ସମ୍ବିଧାନ ଅନୁଯାୟୀ ଭାରତୀୟ ଲୋକସଭା ୯୧ଟି ବିଷୟରେ କ୍ଷେତ୍ର ବିଶେଷ ପାଇଁ ଆବଶ୍ୟକ ଆଇନ ପାସ କରିପାରିବ । ଏହି ପ୍ରକାର ଭାରତ ସମ୍ବିଧାନରେ ସଙ୍ଘୀୟ ସମ୍ବିଧାନକୁ, ଯାହା ସ୍ୱଭାବତଃ କଠୋର ଅନୁଭୂତ ହୁଏ, ତାହା ଅଧିକରୁ ଅଧିକ

ସ୍ୱଳେ ନରମ କରି ଦିଆଯାଇଛି ଏବଂ ସଙ୍ଘୀୟ ଶାସନ ପଂକ୍ତିରେ ଯାହା ସ୍ୱାଭାବିକ 'କଠୋରତା' ବା ଅତିବୈଧାନିକତା ଅଛି, ତାହା ଦୂର କରିବା ପାଇଁ ନୂତନ ଉପାୟ ଖୋଜି ବାହାର କରାଯାଇଛି । ଯାହା ଅନ୍ୟତ୍ର ଦେଖାଯାଏ ନାହିଁ ।

ପ୍ରଥମ ଉପାୟ ହେଉଛି, ପାର୍ଲିଆମେଣ୍ଟକୁ ଏହି ଅଧିକାର ଦିଆଯାଇଛି, ତାହା ସାମାନ୍ୟ ଅବସ୍ଥାରେ ମଧ୍ୟ ଏହିସବୁ ବିଷୟରେ ଆଇନ ପ୍ରଣୟନ କରିପାରିବ, ଯାହା କେବଳ ପ୍ରାନ୍ତୀୟ ବିଷୟ ଅଟେ ତାହା ୨୪୯, ୨୫୦ ଓ ୨୫୨ ଧାରାରେ ଉଲ୍ଲେଖ କରାଯାଇଛି । ୨୪୯ ଧାରା ଅନୁଯାୟୀ ଯଦି କୌଣସି ବିଷୟ କେବଳ ପ୍ରାନ୍ତୀୟ ବିଷୟ ନ ରହି ରାଷ୍ଟ୍ରୀୟ ମହତ୍ତ୍ୱ ଥିବା ବିଷୟ ହୋଇଥାଏ, ତାହା ମାତ୍ର ରାଜ୍ୟର ସୂଚୀ ମଧ୍ୟରେ ରଖାଯାଇଥାଏ । ତାହାହେଲେ ମଧ୍ୟ ପାର୍ଲିଆମେଣ୍ଟ ସେହି ବିଷୟରେ ଆଇନ ପ୍ରଣୟନ କରିପାରିବ । କିନ୍ତୁ ଏଥିପାଇଁ ରାଜ୍ୟ ସଭାର ୨।୩ ଅଂଶର ବହୁମତ ଲୋଡ଼ା ହେବ । ଏଣୁ କେନ୍ଦ୍ରକୁ ଏହି ପ୍ରକାର ଅଧିକାର ପ୍ରୟୋଗ କରିବା ପାଇଁ ଅନୁମତି ଦିଆଯାଇଛି । ୨୫୦ ଧାରା ଅନୁଯାୟୀ ମଧ୍ୟ ରାଷ୍ଟ୍ରୀୟ ସ୍ତରରେ "ଅସାଧାରଣ ସ୍ଥିତି"ରେ ପାର୍ଲିଆମେଣ୍ଟକୁ ଏହି ଅଧିକାର ଦିଆଯାଇଛି । ୨୫୨ ଧାରା ଅନୁଯାୟୀ ମଧ୍ୟ ପାର୍ଲିଆମେଣ୍ଟ ନିଜେ ଏହି ଅଧିକାରର ଉପଯୋଗ କରିପାରେ, ଯଦି 'ପ୍ରାନ୍ତୀୟ' ବା ରାଜ୍ୟ ଗୁଡ଼ିକ ଏଥିରେ ଏକମତ ହୁଅନ୍ତି ! ଶେଷକଥାଟି ଅଷ୍ଟ୍ରେଲିଆ ସମ୍ବିଧାନରୁ ମିଳିଛି । ମାତ୍ର ପ୍ରଥମ ଦୁଇଟି କଥା ଭାରତୀୟ ସମ୍ବିଧାନର ନିଜର ବିଶେଷତ୍ୱ ଅଟେ ।

ଦ୍ୱିତୀୟ ଉପାୟ, "କଠୋରତା" ଓ ଅତି ବୈଧାନିକତାରୁ ନିସ୍ତାର ପାଇବା ପାଇଁ ଗ୍ରହଣ କରାଗଲା, ତାହା ହେଉଛି ସମ୍ବିଧାନରେ ସଂଶୋଧନ ଆଣି ନିୟମକୁ ସୁଧାର ଦେବା । ସମ୍ବିଧାନର କୌଣସି ସଂଶୋଧନ ଉପସ୍ଥାପିତ କରିବା ବିଷୟରେ, ଯାହା ବ୍ୟବସ୍ଥା ଅଛି, ତାହା ସମ୍ବିଧାନର ଧାରାଗୁଡ଼ିକ ଦୁଇଭାଗରେ ବିଭକ୍ତ କରି ଦେଇଛି । ଗୋଟିଏ ବିଭାଗରେ ସେହି ଧାରା ଗୁଡ଼ିକ (କ) କେନ୍ଦ୍ର ଓ ରାଜ୍ୟ ମଧ୍ୟରେ କ୍ଷମତା ବିତରଣ (ଖ) ପାର୍ଲିଆମେଣ୍ଟରେ ରାଜ୍ୟଗୁଡ଼ିକର ପ୍ରତିନିଧିତ୍ୱ (ଗ) ନ୍ୟାୟାଳୟ ଗୁଡ଼ିକର ଅଧିକାର ସମ୍ବନ୍ଧୀୟ ଅଟେ । ଶେଷ ସମସ୍ତ ଧାରାଗୁଡ଼ିକ ଦ୍ୱିତୀୟ ବିଭାଗର ଅନ୍ତର୍ଗତ । ସମ୍ବିଧାନରେ ଅଧିକାଂଶ ବିଭାଗ ଗୁଡ଼ିକ ସମ୍ବିଧାନର ଧାରା ସମୂହ ଅଟେ । ଏଥିରେ କେବଳ ପାର୍ଲିଆମେଣ୍ଟର ସଂଖ୍ୟାଧିକ ମତଦ୍ୱାରା ପରିବର୍ତ୍ତନ କରାଯାଇପାରେ । ଏହି ଧାରା ଗୁଡ଼ିକର ସଂଶୋଧନକୁ ରାଜ୍ୟମାନଙ୍କର ସମର୍ଥନ ପାଇଁ ଅପେକ୍ଷା କରା ଯାଏନାହିଁ ।

ଏହି କାରଣରୁ ମୁଁ ବଡ଼ ଆନନ୍ଦର ସହିତ କହୁଅଛି, ଭାରତୀୟ ସଂଘୀୟ ଶାସନକୁ 'କଠୋରତା' ବା "ଅତି ବୈଧାନିକତା' ଜନିତ କ୍ଷତି ହେବାକୁ

ପଡ଼ିନାହିଁ" । ଆମ୍ଭମାନଙ୍କର ସମ୍ବିଧାନର ବିଶେଷତ୍ୱ ହେଉଛି ଏହାର ସହଜ ପରିବର୍ତ୍ତନ ଶୀଳତା ।

ପ୍ରସ୍ତାବିତ ଭାରତୀୟ ସମ୍ବିଧାନର ଆଉ ଗୋଟିଏ ବିଶେଷତ୍ୱ ରହିଛି । ପ୍ରତ୍ୟେକ ସଂଘୀୟ ସମ୍ବିଧାନ 'ଦ୍ୱୈଧ' ଶାସନକୁ ନେଇ ପରିଗୃହୀତ ହୁଏ । କେନ୍ଦ୍ର ତଥା ରାଜ୍ୟ ଦୁଇ ଶାସନ ପାଇଁ ବିଧାନ ନିର୍ମାଣ, ପ୍ରଶାସନ ତଥା ନ୍ୟାୟାଧୀଶମାନଙ୍କର କାର୍ଯ୍ୟ ଅଲଗା ଅଲଗା ହୋଇଥାଏ । କିନ୍ତୁ ଏହି ବିଭିନ୍ନତା ଯଦି ଗୋଟିକର ସୀମାକୁ ଅନ୍ୟଟି ଲଙ୍ଘନ କରିଯାଏ, ତାହାହେଲେ ଅରାଜକତା ହୋଇଯାଏ । ଏହି କାରଣରୁ କେତେକ ସଂଘୀୟ ରାଜ୍ୟରେ ଏହି ପ୍ରକାର ଅରାଜକତା ସୃଷ୍ଟି ହେବାର ଲକ୍ଷ କରାଯାଇଛି ! ମାନି ନିଅନ୍ତୁ ଯଦି କୌଣସି ସଂଘରେ ୨୦ଟି ରାଜ୍ୟ । କଳ୍ପନା କରନ୍ତୁ ଏହି ୨୦ଟି ରାଜ୍ୟରେ ସେହି ପ୍ରକାରର ଆଇନ ଅଛି ଯେଗୁଡ଼ିକ ହେଲା ବିବାହ, ବିଚ୍ଛେଦ ସମ୍ପତ୍ତିର ଉତ୍ତରାଧିକାର, ପାରିବାରିକ ସମ୍ପର୍କ, ଠିକାଦାରୀ ଦେବା ବା ନେବା, କାହାର କ୍ଷତି କରିବା ଅପରାଧ, ମାପ ଓଜନ, ଜମିଜମା, ବ୍ୟାଙ୍କ ତଥା ବାଣିଜ୍ୟ, ନ୍ୟାୟ ପ୍ରଦାନ କରିବାର ପଦ୍ଧତି, ତଥା ରାଜ୍ୟ-ପ୍ରଶାସନର ସ୍ତର ଓ ପ୍ରକାର ଆଦି ବିଷୟରେ କରାଯାଇଥାଏ । ଏହି ପ୍ରକାର ପରିସ୍ଥିତି କେବଳ ରାଜ୍ୟକୁ ଦୁର୍ବଳ କରେନାହିଁ, ବରଂ ସେହି ନାଗରିକଙ୍କ ପାଇଁ ମଧ୍ୟ ଅସହ୍ୟ ହୋଇ ପଡ଼ିଥାଏ । ଯାହାଦ୍ୱାରା ଗୋଟିଏ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଗଲେ ସେ ଦେଖିବ ଯାହା ଗୋଟିଏ ରାଜ୍ୟରେ ଆଇନ ସମ୍ମତ ତାହା ଅନ୍ୟ ରାଜ୍ୟରେ ଆଇନ ବିରୁଦ୍ଧ । ନୂଆ ସମ୍ବିଧାନରେ ଏପରି ଉପାୟ ଅବଲମ୍ବନ କରାଯାଇଛି, ଯେଉଁଥିରେ ଭାରତୀୟ ଶାସନ ପଦ୍ଧତି ସଂଘୀୟ ରହିବ, କିନ୍ତୁ ତାହା ସଙ୍ଗେ ସଙ୍ଗେ ଏହିସବୁ କଥାରେ, ଯାହା ଦେଶର ଏକତା ପାଇଁ ଦରକାର ତାହା ଗୋଟିଏ ସ୍ୱରୂପରେ ଗଠିତ ହୋଇ ପାରିବ । ନୂଆ ସମ୍ବିଧାନରେ ଏଥିପାଇଁ ତିନୋଟି ଉପାୟ ନିର୍ଦ୍ଧାରଣ କରାଯାଇଛି ।

୧ — ନ୍ୟାୟାଧୀଶ ଶୃଙ୍ଖଳର ଏକୀକରଣରେ ବ୍ୟବସ୍ଥା ରହିଛି ।

୨ — ମୁଖ୍ୟ ଦେୱାନୀ ବା ଫୌଜଦାରୀ ଆଇନର ଏକ ରୂପତା ହୋଇଛି ।

୩ — ମହତ୍ତ୍ୱପୂର୍ଣ୍ଣ ପଦବୀରେ ନିଯୁକ୍ତି ପାଇଁ ଏକ ଅଖିଳ ଭାରତୀୟ ସରକାରୀ ଚାକିରୀ ବ୍ୟବସ୍ଥା ଧାର୍ଯ୍ୟ କରାଯାଇଛି ।

ଯାହା ମୁଁ କହିଲି, ସଂଘୀୟ ଶାସନ ପଦ୍ଧତିର ସ୍ୱଭାବ ଅନୁଯାୟୀ ବିଭିନ୍ନ ନ୍ୟାୟାଳୟରେ ବିଭିନ୍ନ ଆଇନ୍ ଓ ସିଭିଲ ସର୍ଭିସ ମଧ୍ୟରେ ପାର୍ଥକ୍ୟ ରହିବା

ଯୁକ୍ତି ସଙ୍ଗତ । କାରଣ କେନ୍ଦ୍ର ତଥା ରାଜ୍ୟ ପରସ୍ପର ପୃଥକ ଓ ଗୋଟିଏ ଅନ୍ୟଠାରୁ ସ୍ୱତନ୍ତ୍ର । ଭାରତୀୟ ଶାସନ ବିଧାନ ସଂଘୀୟ ହେଲେ ମଧ୍ୟ ସେଥିରେ ଥିବା ନ୍ୟାୟାଳୟ ଗୁଡ଼ିକ ଅଭିନ୍ନ । ଯେତେବେଳେ ଉଚ୍ଚ ନ୍ୟାୟାଳୟ ହେଉନା କାହିଁକି ତାହା ଗୋଟିଏ ନିୟମାବଳୀ ଅଧୀନରେ ପରିଚାଳିତ । ତାହାର ଅଧିକାର କ୍ଷେତ୍ର ସବୁଠାରେ ସମାନ । ଦେୱାନୀ ହେଉ ବା ଫୌଜଦାରୀ ହେଉ ତାହା ସମ୍ବିଧାନର ଆଇନ ଅନ୍ତର୍ଗତ ପ୍ରତ୍ୟେକ ମାମଲାର ଅପିଲ ଶୁଣାହେବ । ଅପିଲ କରିବା ପାଇଁ ଯେତେଗୁଡ଼ିଏ କାରଣ ଅଛି, ସେଥିରୁ ସମସ୍ତ ପ୍ରକାର ପାର୍ଥକ୍ୟଗୁଡ଼ିକୁ ଦୂର କରିବା ପାଇଁ ଏହା କରାଯାଇଛି । କାନାଡା ଏପରି ଏକ ଦେଶ, ଯେଉଁଠାରେ ଏହି ସବୁ ପଦ୍ଧତି ପ୍ରାୟଃ ସମାନ । ମାତ୍ର ଅଷ୍ଟ୍ରେଲିଆର ବିଚାର ପଦ୍ଧତି କେତେକ ଏପାଖ ସେପାଖ ଅଛି ।

ଯେଉଁସବୁ ଆଇନ ନାଗରିକ ତଥା ସାମାଜିକ ଜୀବନର ମୌଳିକ ଉତ୍ସ ସେ ସବୁ ଆଇନରୁ ସମସ୍ତ ପ୍ରକାର ପାର୍ଥକତା ଦୂର କରିବାରେ ଯଥେଷ୍ଟ ସାବଧାନତା ଅବଲମ୍ବନ କରାଯାଇଛି । ନାଗରିକତା, ସାକ୍ଷୀ ଦେବା ସମ୍ବନ୍ଧୀୟ ନିୟମ, ଜମିଜମା ହସ୍ତାନ୍ତର ସମ୍ବନ୍ଧୀୟ ନିୟମ, ବିବାହ ବିଚ୍ଛେଦ, ଉତ୍ତରାଧିକାରୀ ସମ୍ବନ୍ଧୀୟ ଆଇନ ଯେତେପ୍ରକାରର ଦେୱାନୀ ବା ଫୌଜଦାରୀ ଆଇନ ଅଛି, ସେଗୁଡ଼ିକୁ ସମବର୍ତ୍ତୀ ସୂଚୀ ମଧ୍ୟରେ ରଖିଦିଆଯାଇଛି । ଯାହା ଫଳରେ ସଂଘୀୟ ଶାସନ ପଦ୍ଧତିକୁ କୌଣସି ପ୍ରକାରେ କ୍ଷତି ନପହଞ୍ଚାଇ ଆବଶ୍ୟକ ମତେ ଏକ ନିର୍ଦ୍ଦିଷ୍ଟ ରୂପ ଦିଆଯାଇ ପାରିଛି ।

ମୁଁ କହିସାରିଛି, ସଂଘୀୟ ଶାସନ ବ୍ୟବସ୍ଥାରେ ଦ୍ୱୈଧ ଶାସନ ପଦ୍ଧତି ଅଛି ଓ ଏଥିପାଇଁ ସେଥିରେ ଦୁଇଟି ସରକାର ସେବାମଣ୍ଡଳ ହେବା ମଧ୍ୟ ଅନିବାର୍ଯ୍ୟ । ସମସ୍ତ ସଂଘୀୟ ଶାସନ ପଦ୍ଧତି ମାନଙ୍କରେ ଗୋଟିଏ ସଂଘୀୟ ସେବା ଆୟୋଗ ତଥା ରାଜ୍ୟୀୟ ସେବା ଆୟୋଗ ରହିଛି । ଭାରତୀୟ ସଂଘୀୟ ଶାସନ ମଧ୍ୟରେ ଦ୍ୱୈଧ ଶାସନ ହେବା ଦୃଷ୍ଟିରୁ ଦୁଇଟି ସେବା ଆୟୋଗ ହେବ, କିନ୍ତୁ ସେଥିରେ ଗୋଟିଏ ବିଶେଷତ୍ୱ ରହିବ । ଏହା ସ୍ୱୀକାର କରିବାର କଥା, ପ୍ରତ୍ୟେକ ଦେଶର ଶାସନ ବ୍ୟବସ୍ଥାରେ କେତେଗୁଡ଼ିଏ ଏପରି ପଦବୀ ରହିଛି, ଯେଉଁଥିରେ ଶାସନର ସ୍ତର ନିର୍ଣ୍ଣୟ କରିବା ବେଳେ ସେଗୁଡିକୁ ଅସାଧାରଣ ମହତ୍ତ୍ୱପୂର୍ଣ୍ଣ ପଦବୀ ବୋଲି ବୁଝାଯାଇଥାଏ । ଶାସନ ବ୍ୟବସ୍ଥାର ଏତେ ବଡ଼ ଯାନ୍ତ୍ରିକମାନ ମେସିନ୍ ମଧ୍ୟରେ ଏପରି ପଦବୀର ନାମକରଣ ସହଜ ନୁହେଁ । କିନ୍ତୁ ଏଥିରେ କୌଣସି ସନ୍ଦେହ ନାହିଁ ଯେ ଶାସନର ସ୍ଥିରତା ସେହି ଲୋକମାନଙ୍କର ଯୋଗ୍ୟତା ଉପରେ ନିର୍ଭର କରେ, ଯେଉଁମାନଙ୍କୁ ଏହି ପଦବୀରେ ନିଯୁକ୍ତି ଦିଆଯାଇଥାଏ । ଆମ୍ଭମାନଙ୍କ ପାଇଁ

ଏହା ସୌଭାଗ୍ୟର କଥା ଯେ ଆମ ଦେଶରେ ଗୋଟିଏ ଶାସନ ବ୍ୟବସ୍ଥା, ପରମ୍ପରା କ୍ରମେ ରହି ଆସିଛି । ଏହା ସାରା ଦେଶ ପାଇଁ ସମାନ, ଏଥିରେ ମହତ୍ତ୍ୱପୂର୍ଣ୍ଣ ପଦବୀ ଗୁଡ଼ିକ କଣ ତାହା ସହଜରେ ଆମକୁ ଜଣା । ସମ୍ବିଧାନରେ ଏପରି ଅବସ୍ଥା ଅଛି ଯେ ରାଜ୍ୟମାନଙ୍କର ନିଜ ନିଜ ସିଭିଲ ସର୍ଭିସ୍ ଗଠନ କରିବାର ଅଧିକାର ଉପରେ ହସ୍ତକ୍ଷେପ ନକରି ସାରା ଭାରତ ପାଇଁ ଏକ ଅଖିଳ ଭାରତୀୟ ସିଭିଲ୍ ସର୍ଭିସ୍ ରହିପାରିବ । ଯାହାର ଆଧାର ଅଖିଳ ଭାରତୀୟ ସ୍ତରରେ ଥିବା ଯୋଗ୍ୟତାର ବିଷୟ ବସ୍ତୁରେ ସମାନତା ରହିବ । ବେତନ ମଧ୍ୟ ସମସ୍ତଙ୍କୁ ସମାନ ପରିମାଣରେ ଦିଆଯିବ । ଯେଉଁମାନେ ଏହି ସିଭିଲ୍ ସର୍ଭିସ୍ ସଦସ୍ୟ ହୋଇ ପାରିବେ, କେବଳ ସେହିମାନଙ୍କୁ ନିଯୁକ୍ତ ଏହିପରି ମହତ୍ତ୍ୱପୂର୍ଣ୍ଣ ପଦବୀରେ ଦିଆଯିବ । ଶଠା ସମ୍ବିଧାନରେ ଏହିସବୁ ବିଶେଷତ୍ୱ ରହିଛି । ବର୍ତ୍ତମାନ ଆଲୋଚକମାନଙ୍କ ବକ୍ତବ୍ୟ ପ୍ରତି ମୋର ଧ୍ୟାନ ଦେବା ଉଚିତ୍ ।

—o—

# ଆଲୋଚକମାନଙ୍କର ଆଶଙ୍କା ଗୁଡ଼ିକର ସମାଧାନ

କୁହାଯାଉଛି, ଏହି ଖଠା ସମ୍ବିଧାନରେ ନୂଆ କିଛି ନାହିଁ । ୧୯୩୫ରେ ହୋଇଥିବା ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟର ଏକ ନକଲ ମାତ୍ର । ଅବଶିଷ୍ଟ ଯାହା କିଛି ତାହା ସହିତ ଯୋଗ କରାଯାଇଛି, ତାହା ଅନ୍ୟ ଦେଶମାନଙ୍କ ସମ୍ବିଧାନରୁ ନିଆଯାଇଛି । ମୌଳିକ ଅଂଶ ଏଥିରେ ଖୁବ କମ୍ ।

ଏହାର ଆଲୋଚନା ଉପରେ ପ୍ରଶ୍ନ ହୁଏ, ଯଦି କୌଣସି ଏକ ସମ୍ବିଧାନ ରଚନା କରାଯାଏ, ତାହାହେଲେ ସେଥିରେ କୌଣସି ପୁରୁଣା କଥା ନରଖି କଣ ସବୁ ନୂଆ କଥା ରହିବ ? ଯେତେବେଳେ ପ୍ରଥମ ସମ୍ବିଧାନ ଲିପିବଦ୍ଧ କରାଯାଇଥିଲା, ତାହାର ସମସ୍ତ ଆଜକୁ ପ୍ରାଏ ଶହେ ବର୍ଷ ବିତିଗଲାଣି । ଏହା ବ୍ୟତୀତ ଅନ୍ୟର ଅନେକ ଦେଶ ଇତି ମଧ୍ୟରେ ନିଜ ନିଜ ସମ୍ବିଧାନ ଲେଖିଛନ୍ତି । ଏହା ଏକ ନିଶ୍ଚିତ ମତ ଯେ, କେଉଁ ସମ୍ବିଧାନରେ କଣ କଣ ମହତ୍ତ୍ୱପୂର୍ଣ୍ଣ ବିଷୟମାନ ଅଛି ତାହା ଅନୁଶୀଳନ କରିବା ଉଚିତ୍ । ସେହି ବିଷୟଗୁଡ଼ିକୁ ଯଦି ଗ୍ରହଣ କରାଯାଏ, ତାହାହେଲେ ସବୁ ସମ୍ବିଧାନର ମୁଖ୍ୟ ମୁଖ୍ୟ ବିଷୟଗୁଡ଼ିକରେ ସମାନତା ଦେଖା କରାଯାଇ ପାରିବ । ବହୁଦିନ ବିତିଯିବା ପରେ ଯେତେବେଳେ କେହି ଏକ ସମ୍ବିଧାନ ରଚନା କରେ, ତାହାହେଲେ ସେଥିରେ ଯଦି କୌଣସି ନୂଆ କଥା ରଖାଯାଏ ତାହାହେଲେ କେବଳ ଏହା ହୋଇପାରିବ ଯେ, ପ୍ରଚଳିତ ସମ୍ବିଧାନ ଗୁଡ଼ିକର ଦୋଷ ତ୍ରୁଟିଗୁଡ଼ିକୁ ବାଦ ଦେଇ ସେଥିରୁ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ଆବଶ୍ୟକ ଅନୁଯାୟୀ ସୁଧାର କରାଯାଇ ପାରିବ । ଏଥିପାଇଁ କଣ, ପ୍ରଶ୍ନ କରାଯାଇପାରେ ଯେ ଏହି ସମ୍ବିଧାନ ଅନ୍ୟ ଦେଶର ସମ୍ବିଧାନକୁ ଆଖିବୁଜା ନକଲ କରାଯାଇଛି ? ସମ୍ବିଧାନଟିକୁ ପର୍ଯ୍ୟାପ୍ତଭାବେ ଅଧ୍ୟୟନ ନକଲା ପର୍ଯ୍ୟନ୍ତ ଏହିପରି ପ୍ରଶ୍ନ ଉଠିପାରେ । ମୁଁ ଆପଣମାନଙ୍କୁ କହୁଛି, ଏହି ଖଠା ସମ୍ବିଧାନର କଣ କଣ ବିଷୟ ନାହିଁ । ମୋର ବିଶ୍ୱାସ ହେଉଛି, ଯେଉଁମାନେ ଅନ୍ୟ ଦେଶମାନଙ୍କର ସମ୍ବିଧାନ ପଢିଛନ୍ତି ଓ ଯେଉଁମାନେ ନିରପେକ୍ଷ ଭାବେ ବିଷୟର ଜଣାକୁ ପ୍ରସ୍ତୁତ ଅଛନ୍ତି, ସେମାନେ ମୋର ଏହିକଥାରେ ଏକମତ ହେବେ । ସମ୍ବିଧାନର ଖଠା ପ୍ରସ୍ତୁତକାରୀ ସମିତି ଉପରେ କୌଣସି ବିଧାନକୁ ଆଖିବୁଜା ନକଲ କରିବାର ଦୋଷ ଲଗାଯାଇ ପାରିବ ନାହିଁ ।

ଯେଉଁପର୍ଯ୍ୟନ୍ତ ଏହି ଆଲୋଚନାର ସମ୍ପର୍କ, ଖଠା ସମ୍ବିଧାନରେ ସେଥି ମଧ୍ୟରୁ ବହୁତ କିଛି ୧୯୩୫ର ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟରୁ ଗ୍ରହଣ କରାଯାଇଛି । ଏହି ବିଷୟରେ ମୋତେ କ୍ଷମା ମାଗିବାର କୌଣସି

ଆବଶ୍ୟକତା ନାହିଁ । କୌଣସିଥିରୁ କିଛି ଗ୍ରହଣ କରିବାରେ ଲଜ୍ୟା କରିବାର କୌଣସି କାରଣ ମଧ୍ୟ ନାହିଁ ।ଏଥିରେ ମଧ୍ୟ କୌଣସି ସାହିତ୍ୟ ଚୋରିର କଥା ନାହିଁ । ସମ୍ବିଧାନ ସମ୍ବନ୍ଧୀୟ ପ୍ରଧାନ ପ୍ରଧାନ ବିଷୟର ଉପରେ କାହାର "କପିରାଇଟ୍" ନାହିଁ । ମୋର କେବଳ ଏହି କଥାରେ ଅବଶୋଷ ରହିଛି ଯେ, ୧୯୩୫ର ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟରୁ ଯେଉଁ ବିଷୟ ଗ୍ରହଣ କରାଯାଇଛି ସେସବୁ କେବଳ ପ୍ରଶାସନ ସମ୍ବନ୍ଧୀୟ ବିବୃତ୍ତି ମାତ୍ର । ମୁଁ ଏହି କଥାରେ ଏକମତ, ପ୍ରଶାସନ ସମ୍ବନ୍ଧୀୟ ବିବୃତ୍ତି ପାଇଁ ସମ୍ବିଧାନରେ କୌଣସି ସ୍ଥାନ ନରହିବା ଉଚିତ୍ । ମୁଁ ଚାହିଁଥିଲି ଡ୍ରାଫ୍ଟ କମିଟି ଏହି ସବୁକୁ କୌଣସି ପ୍ରକାରେ ବାଦ କରିଦେଇ ପାରିବେ । ଫଳରେ ସମ୍ବିଧାନ ମଧ୍ୟରେ ଏହାର ସମାବେଶ କରି ହୋଇପାରିବ ନାହିଁ । କିନ୍ତୁ କାହିଁକି କରିଯାଇ ପାରିଲନାହିଁ, ଏହି ବିଷୟରେ ବହୁତ କିଛି କୁହାଯାଇପାରେ । ୟୁନାନର ନେତା 'ଗ୍ରେଟେ' ଲେଖିଛନ୍ତି :— "କେବଳ କୌଣସି ସମାଜର ଅଧିକାଂଶଙ୍କ ମଧ୍ୟରେ ନୁହେଁ, ମାତ୍ର ସାରା ସମାଜ ମଧ୍ୟରେ "ସମ୍ବିଧାନ ସମ୍ବନ୍ଧୀୟ ନୈତିକତା"କୁ ପ୍ରତିଷ୍ଠିତ କରିବା ଏକାନ୍ତ ଆବଶ୍ୟକ । ତାହାହେଲେ ଯେକୌଣସି ଶାସନ ସ୍ୱାଧୀନ ଭାବେ ଓ ଶାନ୍ତିପୂର୍ଣ୍ଣ ନୀତିରେ ଚଳି ପାରିବ । କାରଣ ଯେତେ ଶକ୍ତିଶାଳୀ ସଂଖ୍ୟା ଲଘୁ କିଦାଂଶ ଚାହିଁଲେ ମଧ୍ୟ ସେମାନେ ସ୍ୱୟଂ ଅଧିକାର ଲାଭ କରିପାରିବେନାହିଁ । କିନ୍ତୁ ତାହା ସେହି ସ୍ୱତନ୍ତ୍ର ସଂସ୍ଥାର ପରିଚାଳନାକୁ ଅସମ୍ଭବ କରିପାରିବ ।

ସମ୍ବିଧାନ ସମ୍ବନ୍ଧୀୟ 'ନୈତିକତା' ଉପରେ 'ଗ୍ରେଟେ'ଙ୍କର ଆସ୍ଥା ଥିଲା । ସମ୍ବିଧାନର ସ୍ୱରୂପ ପ୍ରତି ଆଦର ତଥା ଏହାର ସ୍ୱରୂପ ଅଧିନରେ କାର୍ଯ୍ୟ କରୁଥିବା ଅଧିକାରୀମାନଙ୍କର ଆଜ୍ଞା ପାଳନ କରିବାର ସ୍ୱଭାବ ପ୍ରତି ମଧ୍ୟ ଆସ୍ଥା ଥିଲା । ଏହା ସହିତ ଭାଷଣ ତଥା କାର୍ଯ୍ୟରେ ସ୍ୱତନ୍ତ୍ରତା ରକ୍ଷା କରିବାର ପଦ୍ଧତି ଦ୍ୱାରା ନିର୍ଦ୍ଧିଷ୍ଟ ଭାବେ ଆଇନର ସୀମା ମଧ୍ୟରେ ରହି ଏହାର ଅଧିକାରୀମାନେ, ସମସ୍ତ ସାର୍ବଜନୀନ କାମର ସମାଲୋଚନା କରିପାରିବାର ବ୍ୟବସ୍ଥା ପ୍ରତି ପ୍ରବୃତ୍ତି ମଧ୍ୟ ଥିଲା । ତାହା ସଙ୍ଗେ ସଙ୍ଗେ ପ୍ରତ୍ୟେକ ନାଗରିକଙ୍କ ହୃଦୟ ମଧ୍ୟରେ ଏହି ବିଶ୍ୱାସର ସପକ୍ଷ ବା ବିପକ୍ଷର ସଂଘର୍ଷ, କୌଣସି କ୍ଷେତ୍ରରେ ବିକଟ ରୂପ ଧାରଣ କରିବନାହିଁ । ଏପରିକି ବିରୋଧୀଙ୍କ ଦୃଷ୍ଟିରେ ମଧ୍ୟ ସମ୍ବିଧାନର ସ୍ୱରୂପ ଏପରି ପବିତ୍ର ହୋଇ ରହିବ ଯେ, ସତେ ଯେପରି ତାହା ନିଜ ଦୃଷ୍ଟିଭଙ୍ଗୀରୁ ସେମାନେ ସୃଷ୍ଟି କରିଛନ୍ତି ବୋଲି ଅନୁଭବ କରିବେ ।

ପ୍ରତ୍ୟେକ ଏହାକୁ ସ୍ୱୀକାର କରିବେ । କୌଣସି ପ୍ରଜାତନ୍ତ୍ରୀୟ, ସମ୍ବିଧାନ ଅନୁଯାୟୀ ଶାନ୍ତିପୂର୍ଣ୍ଣଭାବେ କାର୍ଯ୍ୟ ଚଳାଇବାକୁ ହେଲେ ସମ୍ବିଧାନ "ନୈତିକ

ନୈତିକତା''କୁ ପ୍ରତିଷ୍ଠିତ କରିବାର ଆବଶ୍ୟକତା ରହିଛି । କିନ୍ତୁ ଏହା ସହିତ ସମ୍ବନ୍ଧ ରକ୍ଷା କରୁଥିବା ଏହିପରି ଦୁଇଟି ବିଷୟ ଅଛି, ଯାହା ପ୍ରତି ଦୁର୍ଭାଗ୍ୟ ବଶତଃ ଯଥୋଚିତ୍ ଧ୍ୟାନ ଦିଆଯାଇ ପାରିନାହିଁ । ପ୍ରଥମ କଥା ହେଉଛି ପ୍ରଶାସନର ସ୍ୱରୂପ, ଗଠିତ ସମ୍ବିଧାନର ରୂପ ଅତି ପରିଚିତ ହେବା ଉଚିତ୍ । ପ୍ରଶାସନ ପଦ୍ଧତି ସମ୍ବିଧାନର ସ୍ୱରୂପ ସହିତ ମେଳ ଖାଇଲା ପରି ହେବ ଉଚିତ୍ । ଦ୍ୱିତୀୟ କଥା ହେଉଛି ସମ୍ବିଧାନର ସ୍ୱରୂପରେ କୌଣସି ପରିବର୍ତ୍ତନ ନଆଣି ମଧ୍ୟ ଏହା ସମ୍ପୂର୍ଣ୍ଣ ସମ୍ଭବ ହେବଯେ କେବଳ ଶାସନବ୍ୟବସ୍ଥାକୁ ବଦଳାଇ, ସାମ୍ବିଧାନିକୁ ବିକୃତ କରିଦେବା ଓ ଏଥିରେ ପରସ୍ପର ବିରୋଧୀ ତଥା ଏହାର ନିଜ ଉଦ୍ଦେଶ୍ୟ ସାଧନର ବିରୋଧୀ କରି, ବିକୃତ କରି ଦିଆଯାଇ ପାରିବ । ଏଥିରୁ ଏହି ଦୃଷ୍ଟାନ୍ତ ମିଳେ, ଯେଉଁଠାରେ ଲୋକେ "ସମ୍ବିଧାନ ସମ୍ବନ୍ଧୀୟ ନୈତିକତା''ର ଭାବନାରେ ଓତ ପ୍ରୋତ ଭାବେ ଜଡ଼ିତ ଥାନ୍ତି । ସେମାନେ ବିଚାର କରନ୍ତି, ଶାସନ କଥାକୁ ସମ୍ବିଧାନ ଅନ୍ତର୍ଗତ ନକରିବାଉ । ଏହାକୁ ନିର୍ଧାରଣ କରିବାର ଦାୟିତ୍ୱ ବିଧାନ ସଭା ଉପରେ ନ୍ୟସ୍ତ କରି ଦିଆଯାଉ । ପ୍ରଶ୍ନ ଉଠେ ଆମ୍ଭେମାନେ କଣ ଏହା ମାନି ଚାଲୁଛନ୍ତି ଯେ, "ସମ୍ବିଧାନ ସମ୍ବନ୍ଧୀୟ ନୈତିକତା" ସୁପ୍ରତିଷ୍ଠିତ ଅଛି । ସମ୍ବିଧାନ ସମ୍ବନ୍ଧୀୟ ନୈତିକତା କୌଣସି ସ୍ୱାଭାବିକ ଭାବନା ନୁହେଁ । ଏହାକୁ ଅଭ୍ୟାସ କରିବାକୁ ପଡ଼ିବ । ଆମ୍ଭେମାନେ ଏହାକୁ ହୃଦୟଙ୍ଗମ କରିବା ଉଚିତ୍ ଯେ, ଆମ୍ଭମାନଙ୍କର ଲୋକମାନେ ବର୍ତ୍ତମାନ ଏହା ଶିଖିବେ । ଭାରତର ଭୂମିତଳେ ପ୍ରଜାତନ୍ତ୍ର ନାହିଁ । ତାହା ସମାଜ ମଧ୍ୟରେପ୍ରତ୍ୟେକ ସ୍ତରରେ ପ୍ରତିଷ୍ଠା କରାଯିବ ଓ ନିର୍ବାଚନ ପଦ୍ଧତି ସ୍ଥିର କରାଯିବାର ବ୍ୟବସ୍ଥାକୁ ଧାର୍ଯ୍ୟ କରାଯିବ ।

ଏହି ପରିସ୍ଥିତିରେ ବୁଦ୍ଧିମାନର କାର୍ଯ୍ୟ ହେଉଛି, ପ୍ରଶାସନ ପଦ୍ଧତିର ସ୍ୱରୂପ ନିର୍ଦ୍ଧାରଣ କରିବାର କାର୍ଯ୍ୟ ଆଇନ ପ୍ରଣୟନ କରୁଥିବା ସଭା ଉପରେ ଛାଡ଼ି ଦିଆ ନଯାଇ ସେଗୁଡ଼ିକୁ ସମ୍ବିଧାନ ମଧ୍ୟକୁ ନେଇଯିବା ଉଚିତ୍ । ଏଠା ସମ୍ବିଧାନର ଏକ ଅନ୍ୟ ଆଲୋଚନାରୁ ଏହା ଶୁଣାଯାଏ ଯେ ଏହାର କୌଣସି ଅଂଶରେ ପ୍ରାଚୀନ ଗ୍ରାମ ଶାସନ ପଦ୍ଧତିର ପ୍ରତିନିଧିତ୍ୱ ନାହିଁ । କୁହାଯାଏ, ନୂଆ ସମ୍ବିଧାନର ଏଠାର ଆଧାର ପ୍ରାଚୀନ ହିନ୍ଦୁ ଶାସନ ପଦ୍ଧତିର ନମୁନା ଅନୁଯାୟୀ ହୋଇନାହିଁ, ନା ପାଶ୍ଚାତ୍ୟ ଆଦର୍ଶରୁ ସଂଗ୍ରହ କରିବା ଦାବି ହୋଇଛି ! ନୂଆ ସମ୍ବିଧାନର ରଚନା ଗ୍ରାମ ପଞ୍ଚାୟତ ତଥା ଜିଲ୍ଲା ପଞ୍ଚାୟତକୁ ମୂଳ କରି ତିଆରି କରିବାର ଥିଲା । କେତେକ ଏପରି ଲୋକ ମଧ୍ୟ ଅଛନ୍ତି ଯେଉଁମାନଙ୍କର ମତ ଆହୁରି ବିସ୍ତୃତ ଥିଲା । ସେମାନେ କେବେହେଲେ କେନ୍ଦ୍ରୀୟ ବା ପ୍ରାନ୍ତୀୟ ସରକାର ଗ୍ରହଣ କରନ୍ତି ନାହିଁ । ସେମାନେ ଚାହାନ୍ତି ଭାରତ କେବଳ ଗ୍ରାମୀଣ ସରକାର ଗୁଡ଼ିକର ସମୂହ ମାତ୍ର ହୋଇରହୁ ।

ଭାରତୀୟ ବୁଦ୍ଧିଜୀବୀମାନଙ୍କର ନିଜ ଗ୍ରାମ ଭାଇମାନଙ୍କ ପାଇଁ ଯେଉଁ ପ୍ରେମ ଅଛି, ଯଦିଓ ତାହା କାରୁଣିକ ନୁହେଁ, ତଥାପି ଏହା ଅସୀମ । ଏହାର ପ୍ରଧାନ କାରଣ 'ମେଟକାଫ' ମହାଶୟଙ୍କ ଏହା ପ୍ରଶଂସା । ସେ ଗ୍ରାମ ପଞ୍ଚାୟତ ଗୁଡ଼ିକ ସ୍ୱୟଂ ସମ୍ପୂର୍ଣ୍ଣ ଓ ବାହାର ହସ୍ତକ୍ଷେପରୁ ମୁକ୍ତ ରହି ଗୋଟିଏ ଗୋଟିଏ ଛୋଟ ଗଣରାଜ୍ୟ ହେବା ଉଚିତ୍ ବୋଲି ମତବ୍ୟକ୍ତ କରିଥିଲେ । ତାଙ୍କର ମତ ଅନୁଯାୟୀ ନିଜ ନିଜ ମଧ୍ୟରେ ଛୋଟ ଛୋଟ ରାଜ୍ୟ ଗଠନ କରାଯାଇ ଗ୍ରାମ ପଞ୍ଚାୟତ ମାଧ୍ୟମରେ ଭାରତୀୟ ଜନତାଙ୍କୁ ସବୁଠାରୁ ଅଧିକ ସୁରକ୍ଷା ମିଳି ପାରିବ । ଭାରତୀୟ ଜନତା ମଧ୍ୟରେ କେତେକ ପରିମାଣରେ କ୍ରାନ୍ତିୟ ପରିବର୍ତ୍ତନକୁ ସହିବାକୁ ହେବ । ଏହି ସବୁର ମାଧ୍ୟମରେ ଗ୍ରାମପଞ୍ଚାୟତ ଦ୍ୱାରା ସାରା ଭାରତର ଜନତାଙ୍କୁ ସବୁଠାରୁ ଅଧିକ ସୁଖ, ଆନନ୍ଦ ଓ ସ୍ୱତନ୍ତ୍ରତା ପ୍ରଦାନ କରାଯାଇ ପାରିବ ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଯେଉଁଠାରେ ସାମାଜିକ ପ୍ରଥା ପ୍ରସାସନିକ ପଦ୍ଧତି ଓ ଗୋଷ୍ଠିଗତ ସଙ୍ଗଠନ ବହୁତ ପରିମାଣରେ ନଷ୍ଟ ହୋଇ ଯାଇଛି ସେଠାରେ ଅଦ୍ୟାବଧି ଗ୍ରାମ ପଞ୍ଚାୟତର ପ୍ରଥା ଅଳ୍ପ ବହୁତ କରି ତିଷ୍ଠି ରହିଛି । କିନ୍ତୁ ଯେଉଁ ଲୋକମାନଙ୍କ ମନରେ ଗ୍ରାମ ପଞ୍ଚାୟତକୁ ନେଇ ଏପ୍ରକାର ଭ୍ରାନ୍ତିମାନ ସେମାନେ ବିଚାର କରନ୍ତି ନାହିଁ ଯେ ଦେଶର ସମସ୍ୟା ଗୁଡ଼ିକରେ ବା ଦେଶକୁ ସୌଭାଗ୍ୟ ପୂର୍ଣ୍ଣ କରିବାରେ ଗ୍ରାମ ପଞ୍ଚାୟତ ଗୁଡ଼ିକ କେତେ ପରିମାଣରେ ଅଂଶ ଗ୍ରହଣ କରିଛନ୍ତି । ସ୍ୱୟଂ 'ମେଟକାଫ', ଦେଶକୁ ସୌଭାଗ୍ୟ ପୂର୍ଣ୍ଣ କରିବାକୁ ଗ୍ରାମ ପଞ୍ଚାୟତଗୁଡ଼ିକୁ କେଉଁଭଳି ଭାବରେ ଅଂଶ ଗ୍ରହଣ କରନ୍ତି, ସେ ତାଙ୍କର ନିଜ ଭାଷାରେ ବର୍ଣ୍ଣନା କରିଛନ୍ତି ।

ଗୋଟିଏ ରାଜବଂଶ ପରେ ଆଉ ଗୋଟିଏ ରାଜବଂଶ ଆରମ୍ଭ ହୁଏ । ଗୋଟିଏ କ୍ରାନ୍ତି ପରେ ଆଉ ଗୋଟିଏ କ୍ରାନ୍ତି ଆସେ । ହିନ୍ଦୁ, ପଠାଣ, ମୋଗଲ, ମରଠା, ଶିଖ, ଇଂରେଜ ସମସ୍ତେ ବାରମ୍ବାର ରାଜ୍ୟ ଅଧିକାର କରିଛନ୍ତି । କିନ୍ତୁ ଗ୍ରାମପଞ୍ଚାୟତ ଗୁଡ଼ିକ ଯେଉଁଭଳି ଥିଲା ସେହିଭଳି ରହିଛି । ବିପଦ ସମୟରେ ସେଗୁଡ଼ିକ ଏକାଠି ହୋଇଥାନ୍ତି । ଶତ୍ରୁସେନା ଦେଶ ମଧ୍ୟରେ ପଶିଯାନ୍ତି । ଗ୍ରାମ ପଞ୍ଚାୟତ ନିଜର ପଶୁମାନଙ୍କୁ ଗାଁର ଖୁଅଡ଼ ମଧ୍ୟରେ ଏକତ୍ରିତ କରି ରଖନ୍ତି ଏବଂ ଶତ୍ରୁମାନଙ୍କଠାରୁ କୌଣସି ମତେ ଛଡ଼ା ଛୁଡ଼ି ନକରି ସେମାନଙ୍କୁ ଅଗ୍ରସର ହେବାକୁ ଦଅନ୍ତି ।

ଗ୍ରାମପଞ୍ଚାୟତଗୁଡ଼ିକ ନିଜ ଦେଶର ଇତିହାସରେ ଏହିପରି ଭାଗନେଇ ଆସିଛନ୍ତି । ଯେତେବେଳେ ମୁଁ ଏହି କଥାକୁ ଅନୁଭବ କଲି ସେତେବେଳେ ଏହି

ଗ୍ରାମ ପଞ୍ଚାୟତ ପାଇଁ ମୋ ମନରେ କୌଣସି ସ୍ଥାନ ନ ଥିଲା ହେଲନାହିଁ । ସବୁ ଉଥାନ ପତନ ମଧ୍ୟରୁ ସୃଷ୍ଟି ହୋଇଛି । ଏହା ଏକ ଗୁରୁତ୍ୱପୂର୍ଣ୍ଣ କଥା । କିନ୍ତୁ ଏହାକୁ ଏଣୁ ତେଣୁ ଭାବେ ଗଠନ କରିବାରେ କୌଣସି ମୂଲ୍ୟ ନାହିଁ । ସ୍ପଷ୍ଟ ଭାବେ, ଗ୍ରାମ ପଞ୍ଚାୟତ ମଧ୍ୟରେ କେଉଁ ସ୍ତର ବଞ୍ଚି ରହିଛି । ଏହାର ଉତ୍ତର ପରିଷ୍କାର ଯେ ଏହା ଖୁବ୍ କମ୍ ସ୍ତରରେ । ଖୁବ୍ ସ୍ୱାର୍ଥପୂର୍ଣ୍ଣ ସ୍ତର ମଧ୍ୟରେ ଅଛି । ମୋର ମତ ଏହି ଗ୍ରାମ ପଞ୍ଚାୟତ ଭାରତର ବିନାଶର କାରଣ ହୋଇଛି । ଏହି କାରଣରୁ ମୁଁ ଆଶ୍ଚର୍ଯ୍ୟ ହୁଏ ଯେ ଯେଉଁମାନେ ପ୍ରାନ୍ତୀୟ ତଥା ସାମ୍ପ୍ରଦାୟିକତାର ନିନ୍ଦା କରନ୍ତି, ସେମାନେ କେଉଁ ପ୍ରକାରର ଗ୍ରାମପଞ୍ଚାୟତର ପକ୍ଷନେଇ ଆଗକୁ ଆସୁଛନ୍ତି ? ଆଜିର ଗ୍ରାମ ନିଜର ସ୍ୱାର୍ଥ, ମୋହ, ଅଜ୍ଞାନତା ସଂକୀର୍ଣ୍ଣତା ଏବଂ ସାମ୍ପ୍ରଦାୟିକତାର ଗୁମ୍ଫା ବ୍ୟତୀତ ଅନ୍ୟ କିଛି ନୁହେଁ । ମୁଁ ଖୁସି ଯେ, ନୂଆ ସମ୍ବିଧାନରେ 'ଗ୍ରାମ' କୁ ଛଲାଞ୍ଜଳି ଦେଇ ତାହାର ସମର୍ଥକ ବ୍ୟକ୍ତିମାନଙ୍କୁ ଗୋଟିଏ ଏକତା ମଧ୍ୟରେ ରଖିବାକୁ ସ୍ୱୀକାର କରିଛନ୍ତି ।

ନୂଆ ସମ୍ବିଧାନକୁ ଏଥିପାଇଁ ମଧ୍ୟ ଆଲୋଚନାର କ୍ଷେତ୍ରରୂପେ ପ୍ରସ୍ତୁତ କରା ଯାଇଥିଲା । କାରଣ ଏଥିରେ ସଂଖ୍ୟାଲଘୁଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ଅଛି । ଏହି ସମ୍ବନ୍ଧରେ ନୂଆ କମିଟିର କୌଣସି ଦାୟିତ୍ୱ ନାହିଁ । ସେଥିରେ ବିଧାନ ନିର୍ମାଣ ସଭାର ସିଦ୍ଧାନ୍ତକୁ ଅନୁସରଣ କରିବାକୁ ହୋଇଥିଲା । ବ୍ୟକ୍ତିଗତ ଭାବେ ମୋର ଏଥିରେ ସନ୍ଦେହ ନାହିଁ ଯେ, ଅଳ୍ପ ସଂଖ୍ୟକଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା କରି, ବିଧାନ ନିର୍ମାଣ ସଭା ବୁଦ୍ଧିମାନର କାର୍ଯ୍ୟ କରିଛନ୍ତି । ଏହି ଦେଶରେ ଅଳ୍ପମତ ଓ ବହୁମତ ଅଧିକାରୀମାନେ ଉଭୟ ଭୁଲ୍ ରାସ୍ତା ଗ୍ରହଣ କରିଛନ୍ତି । ସଂଖ୍ୟାଧିକଙ୍କ ପାଇଁ ଏହା ଠିକ୍ ନୁହେଁ ଯେ, ସେମାନେ ନିଜକୁ ସବୁଦିନ ପାଇଁ ସେହିପରି କରି ରଖିବାକୁ ଚେଷ୍ଟା କରିବେ । ଏପରି ଏକ ସମାଧାନ ତାହାର କରିବା ଉଚିତ୍ ଯାହାଦ୍ୱାରା ଦୁଇପକ୍ଷର ଉଦ୍ଦେଶ୍ୟ ପୂରଣ ହୋଇ ପାରିବ । ପ୍ରଥମ କଥା ହେଉଛି ଏହି ସମାଧାନ ଦ୍ୱାରା ଅଳ୍ପମତ ଲୋକଙ୍କର ଅସ୍ତିତ୍ୱକୁ ସ୍ୱୀକାର କରାଯାଇପାରିବ । ଦ୍ୱିତୀୟତଃ ଏହି ସମାଧାନ ଏପରି ହେବା ଉଚିତ୍ ଯାହା ଫଳରେ ଅଳ୍ପମତ ଓ ବହୁମତ ଉଭୟେ ଉଭୟେ ମିଳିମିଶି ଗୋଟିଏ ହୋଇ ପାରିବେ । ବିଧାନ ନିର୍ମାଣ ସଭାଦ୍ୱାରା ଯେଉଁ ସମାଧାନ ଉପସ୍ଥାପିତ କରାଗଲା, ଏହା ସ୍ୱାଗତ ଯୋଗ୍ୟ କାରଣ ଏଥିରେ ଦୁଇଟିଯାକ ଉଦ୍ଦେଶ୍ୟ ପୂରଣ ହୋଇ ପାରିବ । ଏପରିକି କଳହ ପନ୍ଥୀ ମାନଙ୍କର ମନରେ ଯେଉଁ ସଂରକ୍ଷଣକୁ ବିରୋଧ କରିବାର ଏକ ପାଗଳାମିର ବସା ବାନ୍ଧିଛି । ସେମାନେ ମଧ୍ୟ ଏହାର ଗୁରୁତ୍ୱ ଅନୁଭବ କରିବେ । ସେମାନଙ୍କୁ ଦୁଇପଦ କଥା କହିବାକୁ ଚାହୁଁଛି । ପ୍ରଥମ କଥା ହେଉଛି ଏହି ଅଳ୍ପମତ, ଏକ

ଆତ୍ମହତ୍ୟା ସଦୃଶ । କୌଣସି ମତରେ ଯଦି ଏହା ବଳବତ୍ତର ହୁଏ ତାହେଲେ ରାଜ୍ୟର ସାରା ସ୍ଥିତିକୁ ସଢ଼ାଇ ଦେବ । ଅଲ୍‌ଷ୍ଟର୍‌ର ଇତିହାସ ଏହି ଭୟାବହତାର ଜ୍ୱଳନ୍ତ ପ୍ରମାଣ । ଦ୍ୱିତୀୟ କଥା, ଭାରତର ସଂଖ୍ୟାଲଘୁ ନିଜେ ନିଜକୁ ସଂଖ୍ୟା-ଗରିଷ୍ଠଙ୍କ ହାତରେ ସେମାନଙ୍କ ଭାଗ୍ୟ ନିୟନ୍ତ୍ରଣର ଡୋରି ସମର୍ପଣ କରିବାକୁ ସ୍ୱୀକାର କରିଛନ୍ତି ।

ଯେଉଁ ସମୟରେ ଆୟର୍ଲେଣ୍ଡକୁ ଦୁଇ ଖଣ୍ଡରେ ବିଭକ୍ତ କରିଦେବା ପାଇଁ ଆଲୋଚନା ଚାଲିଥିଲା, ସେତେବେଳେ ରେଡ଼ମଣ୍ଡ କାରସନ୍‌ଙ୍କୁ କହିଥିଲେ ପ୍ରୋଟେଷ୍ଟାଣ୍ଟ ସଂଖ୍ୟାଲଘୁଙ୍କ ପାଇଁ ଆପଣ ମୈଖିକଭାବେ ସଂରକ୍ଷଣ ନେଇଗଲେ, କିନ୍ତୁ ଆୟର୍ଲଣ୍ଡକୁ ବିଭକ୍ତ ହେବାକୁ ଦିଆନଯାଉ । କାରସନଙ୍କ ଉତ୍ତର ଥିଲା, ତୁମର ସଂରକ୍ଷଣ ଷଣ୍ଢରେ ଯାଉ, ଆମେ ତୁମମାନଙ୍କ ଦ୍ୱାରା ଶାସିତ ହେବାକୁ ଚାହୁଁନାହୁଁ, ଭାରତରେ କୌଣସି ସଂଖ୍ୟାଲଘୁ କେବେହେଲେ ଏହି ବିଚାର କରିନାହାନ୍ତି । ସେମାନେ ସମ୍ପୂର୍ଣ୍ଣଭାବେ ବହୁମତର ଶାସନକୁ ସ୍ୱୀକାର କରିନେଇଛନ୍ତି ଯଦିଓ ଏହି ବହୁମତଧାରୀମାନେ କେବଳ ସାମ୍ପ୍ରଦାୟିକର ପୃଷ୍ଠପୋଷକ ଅଟନ୍ତି । ରାଜନୈତିକ ନୁହେଁ, ବର୍ତ୍ତମାନ ଏହି ବହୁମତର କାର୍ଯ୍ୟ ହେଉଛି ସେମାନେ ସଂଖ୍ୟାଲଘୁମାନଙ୍କ ପ୍ରତି ନିଜର କର୍ତ୍ତବ୍ୟକୁ ବୁଝି କୌଣସି ପକ୍ଷପାତ ନକରନ୍ତୁ । ଭବିଷ୍ୟତରେ ସେମାନେ ଅଳ୍ପମତାବଲମ୍ବୀ ହୋଇ ରହିବେ, କିମ୍ବା ସେମାନଙ୍କର ଲୋପ ହୋଇଯିବ, ଏହା ବହୁମତାଧିକାରୀମାନଙ୍କ ବ୍ୟବହାର ଉପରେ ନିର୍ଭର କରୁଛି । ଯଦି ସଂଖ୍ୟାଧିକ ଲୋକେ ସଂଖ୍ୟାଲଘୁମାନଙ୍କର କ୍ଷତିସାଧନ କରିବାର ବନ୍ଧୁତାଚରଣ କରି, ବନ୍ଦ କରିଦିଅନ୍ତି ତାହାହେଲେ ଅଳ୍ପ ମତାବଲମ୍ବୀମାନଙ୍କ ପାଖରେ ନିଜର ପୃଥକ ଅସ୍ତିତ୍ୱ ବଜାୟ ରଖିବା ପାଇଁ କୌଣସି ଉପାୟ ରହିବ ନାହିଁ । ଏହା ଆପେ ଆପେ ଲୋପ ହୋଇଯିବ ।

ଶଠା ସମ୍ବିଧାନର ଯେଉଁ ଅଂଶ ଉପରେ ସବୁଠାରୁ ଅଧିକ ଆଲୋଚନା କରାଯାଇଛି ତାହା ହେଉଛି ଏହାର ସେହି ଅଂଶ ଯାହାର ସମ୍ବନ୍ଧ "ପ୍ରଧାନ ଅଧିକାର"ର ବିଷୟ ବସ୍ତୁ ଅଟେ । କୁହାଯାଏ ପ୍ରଧାନ ଅଧିକାର ଗୁଡ଼ିକ ବର୍ଣ୍ଣନା କରାଯାଇଥିବା ଧାରାଗୁଡ଼ିକ ଏଭଳି ଅପବାଦ ଗ୍ରସ୍ତ ଯେ ସେହି ଅପବାଦ ଗୁଡ଼ିକହିଁ ସମସ୍ତ ଧାରାଗୁଡ଼ିକୁ କଳୁଷିତ କରି ଦେଇଛି । ଏଥିରେ ଏହାକୁ ଏକପ୍ରକାର ଧୋକା କୁହାଯାଇଛି । ଆଲୋଚକମାନଙ୍କ ମତ ଅନୁଯାୟୀ ପ୍ରଧାନ ଅଧିକାରଗୁଡ଼ିକ ପାଇଁ ନିରପେକ୍ଷ ଅଧିକାର ରହିବା ଅନିବାର୍ଯ୍ୟ ଅଟେ । ନିଜ ମତର ସମର୍ଥନରେ ଏହି ଲୋକମାନେ ଆମେରିକାର ସମ୍ବିଧାନ ଓ ସେହି ସମ୍ବିଧାନର ଆରମ୍ଭରୁ ଏହି ସଂଶୋଧନ ଗୁଡ଼ିକୁ ଉପସ୍ଥାପନ କରିଅଛନ୍ତି । କୁହାଯାଏ ଆମେରିକାରେ

ଅଧିକାର ଗୁଡ଼ିକର ସାବ୍ୟସ୍ତ ପାଇଁ ଯେଉଁ ବଳ ଅଛି ତାହା ବାସ୍ତବିକ ଗୁରୁତ୍ୱପୂର୍ଣ୍ଣ ଅଟେ । କାରଣ ସେହି ଅଧିକାର ଗୁଡ଼ିକ ଅସୀମ ନୁହେଁ । ତାହା ସିମୀତ ଅଟେ । ଏବଂ ତାହା ସହିତ କୌଣସି ଅପବାଦ ଜଡ଼ିତ ନୁହେଁ ।

ମୋତେ ଏହା କହିବାକୁ ଅବଶୋଷ ଲାଗୁଛି । ପ୍ରଧାନ ଅଧିକାର ଗୁଡ଼ିକୁ ନେଇ ଯେତେ ଆଲୋଚନା ହେଲା, ତାହାର ଆଧାର କେବଳ ଭ୍ରାନ୍ତିପୂର୍ଣ୍ଣ । ଆଲୋଚକଙ୍କ ପ୍ରଥମ କଥା ମଧ୍ୟରେ ଏହା ଠିକ୍ ନୁହେଁ । ପ୍ରଧାନ ଅଧିକାର ଗୁଡ଼ିକ ଓ ପ୍ରଧାନ ଅଧିକାରକୁ ନେଇ ଯେଉଁ ମତଭେଦ ତାହା ନିରପେକ୍ଷ ଭାବରେ ସମାଧାନ ହେବା ଉଚିତ୍ । ପ୍ରଧାନ ଅଧିକାର ଓ ଅପ୍ରଧାନ ଅଧିକାର ମଧ୍ୟରେ ତାହା ବାସ୍ତବ ଦୃଷ୍ଟିରୁ ପାର୍ଥକ୍ୟ ଅଛି, ତାହା ହେଉଛି; ଯାହା ଅପ୍ରଧାନ ଅଧିକାର, ତାହା ଦୁଇ ପକ୍ଷର ଆପୋଷ ବୁଝାମଣାର ପରିଣାମ ଓ ଯାହା ପ୍ରଧାନ ଅଧିକାର ତାହା ଆଇନର ଅବଦାନ ।

ଦ୍ୱିତୀୟରେ ଏହା ମଧ୍ୟ ଠିକ୍ ନୁହେଁ ଯେ ଆମେରିକାରେ ପ୍ରଧାନ ଅଧିକାର ପ୍ରଥା ନିରପେକ୍ଷ ଅଟେ । ଆମେରିକା ସମ୍ବିଧାନରେ ପ୍ରଧାନ ଅଧିକାରକୁ ପ୍ରତ୍ୟେକ ଅପବାଦଯୁକ୍ତ କରିଥାଆନ୍ତି । ଆମେରିକାର ଉଚ୍ଚତମ ନ୍ୟାୟାଳୟର ଅନ୍ୟୂନ ଗୋଟିଏ ଆଦେଶ ଉପସ୍ଥାପନ କରି ୧୩ ଦଶ ଧାରାରେ 'ଭାଷଣ-ସ୍ୱାତନ୍ତ୍ର୍ୟ' ଉପରେ ଯେଉଁ ପ୍ରତିବନ୍ଧକ ଲଗାଇ ଦିଆଗଲା, ତାହାର ଯଥାର୍ଥତା ପ୍ରତିପାଦନ କରାଯାଇଛି । "ଜିଟ୍‌ଲୋ'ବନାମ ନ୍ୟୁୟର୍କ"ର ବିବାଦରେ ନ୍ୟୁୟର୍କ ଦଣ୍ଡନୀୟ ଅରାଜକତା ଆଇନ୍ ବିବାଦମାନ ବିଷୟ ଥିଲା । ଏହାର ଉଦ୍ଦେଶ୍ୟ ଥିଲା ପରିବର୍ତ୍ତନ ଆଣିବା ପାଇଁ ହିଂସାପୂର୍ଣ୍ଣ ପ୍ରୟାସକାରୀ ଭାଷଣଗୁଡ଼ିକୁ ଦଣ୍ଡନୀୟ ଘୋଷଣା କରିବା । ଏହି ବିଷୟରେ ଉଚ୍ଚତମ ନ୍ୟାୟାଳୟର ସିଦ୍ଧାନ୍ତ ଥିଲା । "ଏହା ଏକ ନିର୍ଦ୍ଧାରିତ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ । ସମ୍ବିଧାନର ଯେଉଁ କହିବାର ବା ଲେଖିବାର ଅଧିକାର ଦିଆଯାଇଛି ତାହାର ଉଦ୍ଦେଶ୍ୟ ନୁହେଁ ଯେ କାହାରିକୁ ପ୍ରତିବାଦ କରିବାକୁ ଯାଇ ଅସଂଯତ ଭାବେ ଯଥାର୍ଥତା ହିନ ଯାହା ଇଚ୍ଛା ତାହା କହିପାରିବ ବା ଲେଖିପାରିବ । ଏହାର ମଧ୍ୟ ଅର୍ଥ ନୁହେଁ ଯେ ସେ ଯେକୌଣସି ପ୍ରକାରର ଭାଷା ପ୍ରୟୋଗ କରି ତା'ର ସେହି ଅଧିକାରର ଦୁରୁପଯୋଗ କଲେ ମଧ୍ୟ ତାକୁ ଦଣ୍ଡିତ କରାଯାଇ ପାରିବ ନାହିଁ ।

ଏହି କାରଣରୁ ଏହା ମଧ୍ୟ କହିବା ଭୁଲ ହେବ, ଆମେରିକାର ପ୍ରଧାନ ଅଧିକାର ହେଉଛି ଅସୀମ ଓ ନିରପେକ୍ଷ । ଏଠା ସମ୍ବିଧାନରେ ଦିଆଯାଇଥିବା ପ୍ରଧାନ ଅଧିକାର ଅବଶ୍ୟ ତଦନୁରୂପ ବା ଅସୀମ ବା ନିରପେକ୍ଷ ନୁହେଁ ।

ଯୁକ୍ତ ହୁଏ ଅମେରିକା ସମ୍ବିଧାନର ଅନୁସରଣ କରିବାବେଳେ ଏହି ବ୍ୟବସ୍ଥାକୁ ସମ୍ବିଧାନ ମଧ୍ୟରେ ସ୍ଥାନ ଦେବା ହେଉଛି ଯେ, ଯଦି କୌଣସି ପ୍ରଧାନ ଅଧିକାରରେ କ୍ଷେତ୍ରକୁ କିଛି ସୀମିତ କରି ଦିଆଯାଏ । ତାହାହେଲେ ସମ୍ବିଧାନ ବହିର୍ଭୂତ କାର୍ଯ୍ୟଗୁଡ଼ିକୁ ନ୍ୟାୟାଳୟ ଉପରେ ଛାଡ଼ିଦେବା ହେଉଛି । ନ୍ୟାୟାଳୟ ହିଁ ଏହି ବିଷୟ ଗୁଡ଼ିକୁ ବିଚାର କରି ନିର୍ଣ୍ଣୟ କରିପାରିବ । ମୋତେ ଏହା କହିବାକୁ ଅତ୍ୟନ୍ତ ଦୁଃଖ ଲାଗୁଛି, ଯାହାକିଛି କୁହାଗଲା ଯଦିଓ ଏହା ଅମେରିକା ସମ୍ବିଧାନର ତ୍ରୁଟିପୂର୍ଣ୍ଣ ତର୍ଜମାରେ ଚର୍ଚ୍ଚା କରି ନିର୍ଦ୍ଧାରଣ କରିବା ଯୋଗୁଁ ନୁହେଁ ହୁଏତ ଏହା ନିଶ୍ଚୟ ସେହି କାରଣ ଯୋଗୁଁ ଘଟିଛି ଯାହା ସର୍ବଦା ଭୁଲ ବିଚାର ଦ୍ୱାରା ସ୍ଥିର କରାଯାଇଛି । ଆମେରିକାର ସମ୍ବିଧାନ ଏପରି କିଛି କରିନାହିଁ । ଆସେମ୍ବ୍ଲିର ଅଧିକାର ବହିର୍ଭୂତ ଅନ୍ୟ କିଛି ବିଷୟ ସମ୍ବିଧାନରେ, ଯାହାକି ଆମେରିକାର ନାଗରିକମାନଙ୍କର ଅଧିକାର ଗୁଡ଼ିକର ପ୍ରତିବନ୍ଧକ ହୋଇ ରହିବ । ଏହା ମଧ୍ୟ କହିବା ଠିକ୍ ହେବନାହିଁ ଯେ ଆମେରିକା ସମ୍ବିଧାନ ପ୍ରଧାନ ଅଧିକାରଗୁଡ଼ିକୁ ସୀମିତ କରିବା ପାଇଁ ନ୍ୟାୟାଳୟ ଗୁଡ଼ିକ ପାଇଁ ଛାଡ଼ିଦିଆଯାଇଛି । ପ୍ରଧାନ ଅଧିକାର ଗୁଡ଼ିକୁ ସୀମିତ କରିବାର କାର୍ଯ୍ୟ କଂଗ୍ରେସର । ଆଲୋଚକ ମାନଙ୍କଠାରେ ମାନ୍ୟ ସ୍ଥିତ ଠାରୁ ବହୁ ସ୍ଥିତ ସମ୍ପୂର୍ଣ୍ଣ ଭିନ୍ନ । ଏଥିରେ କୌଣସି ସନ୍ଦେହ ନାହିଁ ଯେ, ସମ୍ବିଧାନରେ ଯେଉଁ ପ୍ରଧାନ ଅଧିକାର ଗୁଡ଼ିକୁ ଆଇନର ସ୍ୱରୂପ ଦିଆଗଲା, ସେଗୁଡ଼ିକ ଅସୀମ ବା ନିରପେକ୍ଷ । କିନ୍ତୁ କଂଗ୍ରେସକୁ ଏହି କଥାଗୁଡ଼ିକୁ ଅନୁଭବ କରିବାରେ ଡେରିହେଲା । ଏଥିରେ ଅନିବାର୍ଯ୍ୟ ଆବଶ୍ୟକତା ହେଉଛି, ପ୍ରଧାନ ଅଧିକାର ଗୁଡ଼ିକୁ ଅବାଧକରି ଦିଆନଯାଉ । ଯେତେବେଳେ ସର୍ବୋତ୍ତମ ନ୍ୟାୟାଳୟର ସମ୍ମୁଖରେ ଏହି ପ୍ରଶ୍ନ ଉପସ୍ଥାପିତ କରାହେଲା ଯେ, ପ୍ରଧାନ ଅଧିକାର ଗୁଡ଼ିକ ଉପରେ କୌଣସି ପ୍ରତିବନ୍ଧକ ଲଗାଯିବ, ମାତ୍ର ବୈଧାନିକ ହେବ ନା ନାହିଁ, ସେତେବେଳେ ଏମାନେ ଯୁକ୍ତି ଦର୍ଶାଇଥିଲେ ଯେ ଯୁକ୍ତରାଷ୍ଟ୍ର ଆମେରିକାକୁ ଏହି ପ୍ରକାରର ପ୍ରତିବନ୍ଧକ ଲଗାଇବା ପାଇଁ କୌଣସି ଅଧିକାର ଦିଆଯାଇ ନାହିଁ । ସେହି ସମୟରେ ପୁଲିସ୍‌ର ବଳ ସମ୍ବନ୍ଧରେ ଥିବା ସିଦ୍ଧାନ୍ତ ଗୁଡ଼ିକର ଆବିଷ୍କାର କରାଗଲା । ଅସୀମ ଅଧିକାରଗୁଡ଼ିକର ସମର୍ଥକମାନଙ୍କୁ ବୁଝାଇ ଦିଆଗଲା ପ୍ରତ୍ୟେକ ରାଜ୍ୟରେ ପୁଲିସ୍‌ର କ୍ଷମତା ସେମାନଙ୍କ ଠାରେ ନିହିତ ରହିବା ଏକାନ୍ତ ବାଞ୍ଛନୀୟ ଓ ଏହାକୁ ସ୍ୱୀକାର କରିବା କଥା । ଏଣୁ ସେମାନଙ୍କ ପାଇଁ ସମ୍ବିଧାନରେ ସେପରି କୌଣସି ବ୍ୟବସ୍ଥାର ଆବଶ୍ୟକତା ନାହିଁ । ଯେଉଁ ବିଷୟ ମୁଁ ପ୍ରଥମେ ଉଲ୍ଲେଖ୍ୟ କଲି, ତାର ନିର୍ଦ୍ଦିଷ୍ଟତା ଅଦାଲତର ଭାଷାରେ ହେଉଛି "ଏହା ବିବାଦର ପ୍ରଶ୍ନ ନୁହେଁ, ଯେକୌଣସି ରାଜ୍ୟ ଏହି ଲୋକକୁ ଦଣ୍ଡିତ କରିପାରିବ, ଯେ ଲୋକଙ୍କ ପାଇଁ ଅହିତକର ଭାଷା ପ୍ରୟୋଗ କରିଥାନ୍ତି । କିମ୍ବା ଜନତାର ନୈତିକ ସ୍ତରକୁ ତଳକୁ

ଖସାଇ ଦେଇଥିବା ଭଳି ଭାଷା ପ୍ରୟୋଗ କରନ୍ତି । ସେଥିରେ ଲୋକମାନଙ୍କର ଅପରାଧ କରିବାର ପ୍ରବୃତ୍ତି ବଢ଼ିଯିବା ସଙ୍ଗେ ସଙ୍ଗେ ସାର୍ବଜନିକ ଶାନ୍ତି ଭଙ୍ଗ ହେବାର ବିପଦ ଦେଖାଯାଏ ।"

ଡଠା ସମ୍ବିଧାନରେ ଏହା କୁହାଯାଇଛି, ପ୍ରଥମେ ନିରପେକ୍ଷ ଭାବରେ ପ୍ରଧାନ ଅଧିକାର ଗୁଡ଼ିକର ଘୋଷଣା କରାଯିବ ଓ ତାହାପରେ ସୁବିଧା ମତ ସୀମା ନିର୍ଦ୍ଧାରଣ କରାଯାଇ ଉଚ୍ଚତମ ନ୍ୟାୟାଳୟରେ ସେ ସବୁର ସମୀକ୍ଷା ରାଜ୍ୟମାନଙ୍କୁ ସିଧାସଳଖ ଅଧିକାର ଦେଇଦିଆଯିବ ଯେ ସେମାନେ ଏହି ସବୁ ପ୍ରଧାନ ଅଧିକାର ଗୁଡ଼ିକ ଅସୀମ ବୋଲି ଘୋଷଣା କରାଯାଇ ପାରିବ । ଉପରୋକ୍ତ ଦୁଇଟି ସ୍ଥିତି ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଗୋଟିଏ ପରିସ୍ଥିତିରେ ଏହା ପ୍ରତ୍ୟକ୍ଷଭାବରେ କରାଗଲା । ଅନ୍ୟଟି ପରୋକ୍ଷଭାବରେ କରାଗଲା । ଉଭୟ ପରିସ୍ଥିତିରେ ପ୍ରଧାନ ଅଧିକାର ଅସୀମ ବା ନିରପେକ୍ଷ ନୁହେଁ ।

ଡଠା ସମ୍ବିଧାନରେ ପ୍ରଧାନ ଅଧିକାରମାନଙ୍କ ସହିତ 'ନିର୍ଦ୍ଦେଶିତ ସିଧାନ୍ତ' ମଧ୍ୟ ଆରୋପ କରାଯାଇଛି । ଏହି ନିର୍ଦ୍ଦେଶିତ ସିଧାନ୍ତ ଗୁଡ଼ିକ ମଧ୍ୟ ଆଲୋଚନାର ବିଷୟବସ୍ତୁ । କୁହାଯାଇଛି ଯେ ଏଗୁଡ଼ିକ କେବଳ "ପବିତ୍ର ଘୋଷଣା" ମାତ୍ର । ଏଥିରେ ନିଜେ ନିଜକୁ ନିୟୋଜିତ କରିପାରିବାର ସାମର୍ଥ୍ୟ ପାଇପାରିନଥାନ୍ତି ।

ଏହି, "ନିର୍ଦ୍ଦେଶିତ ସିଧାନ୍ତ" ଏପରି ଏକ ସିଧାନ୍ତ ୧୯୩୫ର "ଇଣ୍ଡିଆ ଆକ୍ଟ" ବଳରେ ବ୍ରିଟିଶ ସରକାର ଦ୍ୱାରା ଭାରତ ତଥା ଉପନିବେଶ ଗୁଡ଼ିକର ଗଭର୍ଣ୍ଣର ଜେନେରାଲ ଓ ଗଭର୍ଣ୍ଣରମାନଙ୍କୁ ଦିଆଯାଇଥିଲା । ଡଠା ସମ୍ବିଧାନରେ ଏହା ପ୍ରସ୍ତାବ କରାଯାଇଛି ଯେ ଏହି ପ୍ରକାରର ଆଦେଶ ରାଷ୍ଟ୍ରପତି ତଥା ରାଜ୍ୟପାଳଙ୍କୁ ଦିଆଯିବ । ଏହି ଆଦେଶ ଗୁଡ଼ିକର ନିର୍ଦ୍ଦିଷ୍ଟ ଶବ୍ଦାବଳୀ ସମ୍ବିଧାନର ଅର୍ଥ ଅନୁସୂଚୀରେ ଦିଆଯାଇଛି ।

ଡଠା ସମ୍ବିଧାନରେ ଏହି ପ୍ରକାର ଆଦେଶ ରହିବାଟା, ଗୋଟିଏ କାରଣରୁ ଉଚିତ୍ ବୋଲି ନିର୍ଦ୍ଧାରିତ କରାଯାଇଛି । ଯେଉଁ ଆକାରରେ ସମ୍ବିଧାନ ପ୍ରସ୍ତାବିତ କରାଗଲା ସେଥିରେ ଦେଶର ସରକାରଙ୍କୁ ଦେଶର ଶାସନ ଚଳାଇବା ପାଇଁ ଏକ ପ୍ରକାର କ୍ଷମତା ବୋଲି ଅନୁଭୂତ ହୁଏ । ଏହା ଯେପରି କେତେକ ଦେଶରେ କରାଯାଇଛି କୌଣସି ପାର୍ଟି ବା ଦଳକୁ ଶାସନାରୂଢ଼ କରିବା କୌଣସି କପଟ ଯୋଜନା ନୁହେଁ । କିଏ ଶାସନାରୂଢ଼ ହୋଇ ହେବ ଏହା ଜନତାର ଶକ୍ତି ଉପରେ ଛାଡ଼ିଦିଆଯାଇଛି । ଯଦି କୌଣସି ଶାସନ ପଦ୍ଧତିକୁ ପ୍ରଜାତନ୍ତ୍ରବାଦ କସଟି ଉପରେ ସୁରକ୍ଷିତ ରଖାଇବାକୁ ପଡ଼ିବ, ତାହାହେଲେ ତାହାକୁ ଏହି ଜନତାର ଶକ୍ତି

ମାଧ୍ୟମରେ ପରୀକ୍ଷା କରିବାକୁ ପଡ଼ିବ । ଯେ କେହି ଶାସନାରୂଢ଼ ହେଉ, ତାଙ୍କର ମନନ୍ଦନ ନିଜ ଇଚ୍ଛା ଅନୁଯାୟୀ ହୋଇପାରିବ ନାହିଁ । ବରଂ ତାହାକୁ ନିଜର ଶକ୍ତିକୁ କାର୍ଯ୍ୟରୂପ କରିବା ପାଇଁ ରାଷ୍ଟ୍ରପତି ବା ରାଜ୍ୟପାଳଙ୍କ ଆଦେଶ ଆଡ଼କୁ ଧ୍ୟାନ ଦେବାକୁ ପଡ଼ିବ । ଏହାହିଁ "ନିର୍ଦ୍ଦେଶିତ ସିଦ୍ଧାନ୍ତ" ଦ୍ୱାରା ଧାର୍ଯ୍ୟ କରାଯାଇଛି । ତାହା ଉପେକ୍ଷା କରାଯାଇପାରିବ ନାହିଁ । ଯଦି ସେମାନେ ଏହି ଆଦେଶକୁ ପାଳନ ନ କରନ୍ତି ତାହାହେଲେ ସେମାନଙ୍କୁ ଅଦାଲତର କାଠଗଡ଼ା ମଧ୍ୟରେ ଛିଡ଼ା କରାଯାଇପାରିବ । କିନ୍ତୁ ସେମାନଙ୍କୁ ନିର୍ବାଚନ ସମୟରେ ଏଥିପାଇଁ ଜନତା ଆଗରେ ଜବାବ ଦେବାକୁ ପଡ଼ିବ । ଏହି "ନିର୍ଦ୍ଦେଶିତ ସିଦ୍ଧାନ୍ତ"ରେ କେତେଦୂର ଶକ୍ତି ଅଛି, ତାହାର ସ୍ପଷ୍ଟତା ସେତିକିବେଳେ ଜଣାପଡ଼ିବ, ଯେତେବେଳେ ଠିକ୍ ବାଟରେ ଚାଲୁଥିବା ଜନଶକ୍ତି ଜବାବ ଆଦାୟ କରିବାପାଇଁ ଆଗେଇ ଆସିବେ ।

ଏହା କୁହାଯାଏ ଯେ, ଏହାର ସମାବେଶ ସମ୍ବିଧାନରେ ନରହିବା ଉଚିତ୍ । ଏଥିରେ କୌଣସି ବନ୍ଧନକାରୀ ବଳ ନାହିଁ । ମୁଁ ଏହି କଥାରେ ଏକମତ ଯେ, ଏହିପରି ଧାରାର ଯଦି କିଛି ନିଶ୍ଚୟାତ୍ମକ ଆଦେଶ ନରୁହେ, ଏହି ଧାରା ମଧ୍ୟରେ ରଖାଯାଇଥିବା ଯାହାକିଛି ନିଶ୍ଚୟାତ୍ମକ ଆଦେଶ ଅଛି ତାହା ଏପଟ ସେପଟ ହୋଇଯିବାର ଅନୁଭୂତ ହୁଏ । ମୋର ବିଚାର ଅନୁସାରେ ତାହାର ଉଚିତ୍ ବ୍ୟବସ୍ଥା ତୃତୀୟ (କ) ତଥା ଚତୁର୍ଥ ଅନୁସୂଚିରେ ଅଛି । ଏହାହିଁ ରାଷ୍ଟ୍ରପତି ତଥା ରାଜ୍ୟପାଳଙ୍କ ପାଇଁ ନିର୍ଦ୍ଦେଶିତ । ଯାହା ମୁଁ କହିଲି ତାହା ବାସ୍ତବରେ ଶାସକବର୍ଗଙ୍କ ପାଇଁ ତଥା ବିଧାନ ନିର୍ମାଣ ସଭା ପାଇଁ ନିର୍ଦ୍ଦେଶ । ଯେଉଁଥିରେ ନିଜର ଆବଶ୍ୟକୀୟ ଅଧିକାରଗୁଡ଼ିକୁ କୌଣସି ପ୍ରକାରେ କାର୍ଯ୍ୟରେ ଲଗାଇବା ଉଚିତ୍ ।

କେତେକ ଆଲୋଚକ କହନ୍ତି କେନ୍ଦ୍ରକୁ ବହୁତ ଶକ୍ତିଶାଳୀ କରିବାର ଥିଲା । ଏଠା ସମ୍ବିଧାନରେ ମଧ୍ୟମ ମାର୍ଗ ଗ୍ରହଣ କରାଯାଇଛି । ଆପଣ କେନ୍ଦ୍ରକୁ କ୍ଷମତାରୁ ବଞ୍ଚିତ କରିବାକୁ ଚାହାନ୍ତି, ତାହାହେଲେ କେନ୍ଦ୍ରକୁ ଶକ୍ତିଶାଳୀ ନହେବାକୁ ଦେବା ଉଚିତ୍ । ଆଧୁନିକ ଦୁନିଆର ପରିସ୍ଥିତି ଏପରି ହୋଇଛି, ଯେଉଁଥିରେ ଅନିବାର୍ଯ୍ୟ ରୂପେ ଶକ୍ତିର ବିକେନ୍ଦ୍ରୀକରଣ କରିବା ଉଚିତ୍ । ଯଦି ଆମେ ଯୁକ୍ତରାଷ୍ଟ୍ର ଆମେରିକାର ସଂଘୀୟ ସରକାରର ବିକାଶ ଉପରେ ବିଚାର କରିବା ତାହାହେଲେ ଆମେ ଦେଖିବା ଯଦିଓ ସମ୍ବିଧାନରେ ଅପେକ୍ଷାକୃତ ଭାବେ ବହୁପରିମାଣରେ ସୀମିତ ଅଧିକାର ଦିଆଯାଇଛି । ମାତ୍ର ଏହାର ଆରମ୍ଭରୁ ବହୁ ପରିମାଣରେ ବିସ୍ତାରିତଭାବେ ଥିଲା । କିନ୍ତୁ ରାଜ୍ୟସରକାର ଉପରେ ଏହା ବିସ୍ତୃତ ଆକାରରେ ଥିଲା । ବର୍ତ୍ତମାନର ପରିସ୍ଥିତି ହିଁ ଆଜିର ଏହି ସୀମିତ ଶକ୍ତିର କାରଣ ଅଟେ । ଏହି ପରିସ୍ଥିତି ଭାରତୀୟ ସରକାରର ହେବ । ଏହା ଅପେକ୍ଷା ଶକ୍ତିଶାଳୀ କରିବା ପାଇଁ କେହି

ବାଧା ଦେଇପାରିବ ନାହିଁ । କିନ୍ତୁ ଅନ୍ୟ ଦିଗରୁ ବିଚାର କଲେ ଆମେ ଏହି ଅଧିକ ଶକ୍ତିଶାଳୀ ହେବାର ପ୍ରବୃତ୍ତିକୁ ରୋକିବା ଉଚିତ୍ । ଯେତିକି ହଜମ କରିପାରିବ ସେତିକି ଖାଇବା ଉଚିତ୍ । ତାହା ଅପେକ୍ଷା ଅଧିକ ଖାଇବା ସେପରି ଉଚିତ ନୁହେଁ । ଭାରତୀୟ ସରକାର ଯେତିକି ବହନ କରିପାରିବ ତାହାଠାରୁ ଅଧିକ କ୍ଷମତା ତାହା ଉପରେ ନ୍ୟସ୍ତ କରିବା ମଧ୍ୟ ସେହିପରି ଅନୁଚିତ୍ । ଏହା ମୂର୍ଖତା ହେବ, ଯଦି ଆମ୍ଭେ ଏହାକୁ ବର୍ତ୍ତମାନ ପରିସ୍ଥିତିରେ ଅଧିକ କ୍ଷମତା ଦେଇ ଦିଅନ୍ତି, ଯାହାକୁ ବହନ କରି ନପାରି ନିଜେ ଭାଙ୍ଗିଯିବ ।

ଏଠା ସମ୍ବିଧାନରେ ଏହି ବିଷୟ ଉପରେ ଆଲୋଚନା ମଧ୍ୟ ହୋଇଛି । ଏଥିରେ କେନ୍ଦ୍ର ଓ କେନ୍ଦ୍ର ଶାସିତ ଅଞ୍ଚଳ ଗୁଡ଼ିକର ବୈଧାନିକ ସମ୍ବନ୍ଧ ଏକ ପ୍ରକାର ହୋଇରହିବ । ଭାରତୀୟ ସମ୍ବିଧାନର ବିଶେଷ ସୂଚୀରେ ଯେଉଁଗୁଡ଼ିକ ବିଷୟ, ୟୁନିଅନ ସରକାରର ବିଷୟ ବୋଲି ରହିଛି, ସେହି ସବୁ ବିଷୟ ଗୁଡ଼ିକୁ ରାଜ୍ୟ ସରକାରମାନେ ସ୍ୱୀକାର କରିବାପାଇଁ ବାଧ୍ୟନୁହନ୍ତି । ସେମାନେ ନିଜ ନିଜ ବିଧାନ ନିର୍ମାଣସଭା ଗଠନକରି ନିଜ ନିଜର ବିଧାନ ନିର୍ମାଣପାଇଁ ସକ୍ଷମ ଅଟନ୍ତି । ଏହି ସମସ୍ତ ସ୍ଥିତି ଏପରି ଦୁର୍ଭାଗ୍ୟ ଜନକ, ଯାହା କୌଣସି ମତେ ସମର୍ଥନ କରାଯାଇ ନପାରେ । ଯାହା ସବୁଠାରୁ ଖରାପ କଥା, ତାହା ହେଉଛି ଏଠା ସମ୍ବିଧାନ ଅନୁଯାୟୀ ଭାରତୀୟ ରାଜ୍ୟମାନଙ୍କର ନିଜ ନିଜର ସୈନ୍ୟ ରଖିବାପାଇଁ ସ୍ୱାତନ୍ତ୍ର୍ୟ ଲାଭ କରିବା । ମୁଁ ଏହାକୁ ବହୁତ ମାରାତ୍ମକ କଥାବୋଲି ଭାବୁଛି । ଏହାଦ୍ୱାରା ଭାରତର ଏକତା ଭାଙ୍ଗିଯିବ ଓ କେନ୍ଦ୍ର ସରକାର ଖଣ୍ଡ ବିଖଣ୍ଡ ହୋଇଯିବ । ଯଦିଓ ଏଠା ଡ୍ରାଫ୍ଟିଂକାରୀ କମିଟିର ସମସ୍ତ କଥାକୁ ଭ୍ରାନ୍ତ-ପୂର୍ଣ୍ଣବୋଲି ବ୍ୟକ୍ତ କରିପାରୁ ନାହିଁ, ତେବେ କହିବାକୁ ଚାହୁଁଛି, ଏଠା କମିଟି ଏହି ବିଷୟକୁ ନେଇ ମନ ମଧ୍ୟରେ ଖୁବ ଦୁଃଖିତ । କମିଟିର ଇଚ୍ଛାଥିଲା କେନ୍ଦ୍ର ସହିତ ପ୍ରାନ୍ତୀୟ ଶାସନ ଗୁଡ଼ିକର ଯେଉଁପରି ବୈଧାନିକ ସମ୍ବନ୍ଧ ଅଛି, କେନ୍ଦ୍ରର ରାଜ୍ୟମାନଙ୍କ ସହିତ ଠିକ୍ ସେହିପରି ସମ୍ବନ୍ଧ ରହିବା ଉଚିତ । କିନ୍ତୁ ଦୁର୍ଭାଗ୍ୟର ଏହି ସମସ୍ୟା ପାଇଁ କମିଟିର ହାତଗୋଡ଼ ବନ୍ଧାଯାଇଛି । ଏଠା ସମିତି ବିଧାନ ନିର୍ମାଣ ସଭାର ନିର୍ଦ୍ଦେଶ ପାଖରେ ଆବଦ୍ଧ । ଓ ବିଧାନ ନିର୍ମାଣ ସଭା ସେହି ପ୍ରକାରର ଶୃଙ୍ଖଳା ଓ ନିର୍ଦ୍ଦେଶ ପାଖରେ ଆବଦ୍ଧ । ଯାହା ଆଲୋଚନା କରୁଥିବା ଦୁଇ କମିଟି ମଧ୍ୟରେ ରହିଛି ।

କିନ୍ତୁ ଜର୍ମାନର ଇତିହାସ ଦିଗକୁ ଦୃଷ୍ଟିପାତ କରି ମୁଁ ନିଜର ସାହସିକ ଭାବନାକୁ ନିୟନ୍ତ୍ରିତ କରି ରଖିଛି । ୧୮୭୦ ମସିହାରେ ଯେଉଁ ଜର୍ମାନ ସାମ୍ରାଜ୍ୟକୁ ବିସ୍ମାର୍କ ସ୍ଥାପିତ କରିପାରିଥିଲେ, ତାହା ଏକ ବୈଚିତ୍ର୍ୟ ରାଜ୍ୟଥିଲା ।

ସେଥିରେ ୨୫ଟି "ଇକାଇ" ମିଳିତ ଥିଲେ। ଏହି ୨୫ଟି ଇକାଇ ମଧ୍ୟରେ ୨୨ଟି ଇକାଇ ରାଜା ମାନଙ୍କର ଅଧିକାରରେ ଥିଲା। କେବଳ ୩ଟି ପ୍ରଜାତନ୍ତ୍ରାତ୍ମକ ନଗର ରାଜ୍ୟଥିଲା। ଆପଣମାନେ ଜାଣନ୍ତି ସମୟକ୍ରମେ ଏହି ବିଭେଦ ଉଭେଇଗଲା ଓ ଜର୍ମାନ ଗୋଟିଏ ରାଜ୍ୟରେ ପରିଣତ ହୋଇଗଲା। ସେଥିରେ କୌଣସି ସମ୍ବିଧାନକୁ ମାନୁଥିବା ଗୋଟିଏ ଜାତି, ଯାହାକି ଜର୍ମାନଜାତି ନାମରେ ବସବାସ କଲେ। ରାଜ୍ୟଗୁଡ଼ିକର, ଭାରତୀୟ ୟୁନିଅନରେ ମିଳିତ ହେବାକାର୍ଯ୍ୟ. ଜର୍ମାନ ଅପେକ୍ଷା ଅଧିକ ଅଳ୍ପ ସମୟ ମଧ୍ୟରେ ହୋଇଯିବ। ୧୫ ଅଗଷ୍ଟ ୧୯୪୭କୁ ଆମ୍ଭମାନଙ୍କର ଏଠାରେ ୬୦୦ରାଜ୍ୟ ଥିଲା। ଆଜି ସେହି ରାଜ୍ୟଗୁଡ଼ିକ ଆପୋଷରେ ପ୍ରାନ୍ତୀୟ ଶାସନକିମ୍ବା କେନ୍ଦ୍ରୀୟ ଶାସନସହ ମିଳିତ ହୋଇଯିବା ଦ୍ୱାରା ବର୍ତ୍ତମାନ କେବଳ ୨୦/୩୦ଟି ରାଜ୍ୟ ତିଷ୍ଠି ରହିଛି। ଏହି କାର୍ଯ୍ୟକ୍ରମର ପ୍ରଗତି ଖୁବ୍ ଶୀଘ୍ର ହୋଇପାରିଛି।

ଯେଉଁ ରାଜ୍ୟଗୁଡ଼ିକ ଭାରତୀୟ ପ୍ରାନ୍ତୀୟ ଶାସନରେ ମିଳିତ ହୋଇ ଭାରତୀୟ ୟୁନିଅନ ସହିତ ସମ୍ପୂର୍ଣ୍ଣଭାବେ ଏକତା ନରଖୁଛନ୍ତି, ମୁଁ ସେମାନଙ୍କୁ ଅନୁରୋଧ କରୁଛି, ସେମାନେ ମିଳିତହେଲେ ଭାରତୀୟ ୟୁନିଅନକୁ ଆବଶ୍ୟକ ଶକ୍ତି ଓ ସାମର୍ଥ୍ୟ ମିଳିପାରିବ। ସେମାନଙ୍କୁ ନିଜ ନିଜ ବିଧାନ ନିର୍ମାଣ ଗଠନକରି ତାହାଦ୍ୱାରା ନିଜନିଜ ସମ୍ବିଧାନ ରଚନା କରିବାର ମୁଣ୍ଡବ୍ୟଥା ଭୋଗିବାକୁ ପଡ଼ିବ ନାହିଁ। ସେମାନଙ୍କର ଏହାଦ୍ୱାରା ସେପରି କୌଣସି ମୂଲ୍ୟବାନ ବସ୍ତୁର କ୍ଷତି ସହିବାକୁ ପଡ଼ିବନାହିଁ। ମୋର ଆଶା ମୋର ଆବେଦନ ବେକାର ହୋଇଯିବ ନାହିଁ। ଏହି ସମ୍ବିଧାନ ମୁଦ୍ରିତହେବା ପୂର୍ବରୁ ହିଁ ମୁଁ ପ୍ରାନ୍ତୀୟ ଓ ଭାରତୀୟ ରାଜ୍ୟଗୁଡ଼ିକର ଭେଦଭାବ ଗୁଡ଼ିକୁ ସମାପ୍ତ କରିବାକୁ ସମର୍ଥ ହୋଇପାରିବ।

କେତେକ ଆଲୋଚକ ଆପତ୍ତି କରନ୍ତି ଯେ, ଏଠା ସମ୍ବିଧାନର ପ୍ରଥମ ଧାରାରେ ଯେଉଁ "ୟୁନିଅନ ଅଫ ଷ୍ଟେଟ୍ସ" କୁହାଗଲା ଏହା ଠିକ୍ ନୁହେଁ। ଏହାର ଠିକ୍ ନାମ "ଫେଡେରେସନ୍ ଅଫ ଷ୍ଟେଟ୍ସ" (ରାଜ୍ୟ ଗୁଡ଼ିକର ସଙ୍ଘ) ହେବା ଉଚିତ୍। ଏହା ସତ୍ୟଯେ ଦକ୍ଷିଣ ଆଫ୍ରିକାକୁ ଏକ ୟୁନିଅନ କୁହାଯାଇଛି। କାରଣ ଏହା ଏକ ଐକ୍ୟବଦ୍ଧ ରାଜ୍ୟ। କିନ୍ତୁ କାନାଡ଼ା ଗୋଟିଏ ଫେଡ଼ରାଲ ଷ୍ଟେଟ ହେଲେମଧ୍ୟ ଏହାକୁ ୟୁନିଅନ କୁହାଯାଇଛି। ଏହି କାରଣରୁ ଯଦିଓ ଭାରତର ସମ୍ବିଧାନ ସଙ୍ଘୀୟ, ତଥାପି ଏହାକୁ ୟୁନିଅନ କହିବା କୌଣସି ବ୍ୟବହାର ବିରୋଧୀ କଥା ନୁହେଁ। କିନ୍ତୁ ମହତ୍ତ୍ୱପୂର୍ଣ୍ଣ କଥା ହେଉଛି ୟୁନିଅନ ଶବ୍ଦଟିକୁ ଜାଣି ବୁଝିକରି କରାଯାଇଛି। ମୁଁ ଜାଣେନାହିଁ କାନାଡ଼ାର ସମ୍ବିଧାନରେ କାହିଁକି ୟୁନିଅନ ଶବ୍ଦର ପ୍ରୟୋଗ କରାଯାଇଛି। ମୁଁ ଆପଣଙ୍କୁ ଏହା କହିପାରେ ଯେ, ଏଠା ସମିତି

ଏହି ଧେର ବ୍ୟବସ୍ଥାର କାହିଁକି କରନ୍ତି? ତଠା ସମିତ ଏହି କଥାକୁ ସ୍ପଷ୍ଟ କହିଦେବାକୁ ଚାହିଁଥିଲେ ଯେ, ଯଦି ଭାରତକୁ ଏକ ସଂଘରୂପେ ଗଠନ କରାଯିବ, ତେବେ ମଧ୍ୟ ଏହି ସଂଘ ଭିନ୍ନ ଭିନ୍ନ ରାଜ୍ୟ ଆକାରରେ ସଂଘଠିତ ହୋଇରହିବ। ସେହି ଅନୁସାରେ ରାଜ୍ୟଗୁଡ଼ିକ ସଙ୍ଗଠନର ସଦସ୍ୟ ହେବାର ସ୍ୱୀକୃତ ପାଇବେ। ଏହା ବ୍ୟତୀତ ଫେଡ଼େରେସନର କୌଣସି ରାଜ୍ୟକୁ ଏଥିରୁ ପୃଥକ ହେବାକୁ ଦିଆଯିବନାହିଁ। ଫେଡ଼େରେସନ ବା ସଂଘ ଏହି କାରଣରୁ ଏକ ୟୁନିଅନ ଅଟେ, କାରଣ ଏହି ଅବିଭାଜ୍ୟ ଶାସନର ସୁବିଧାପାଇଁ ଦେଶ ଓ ତାର ଅଧିବାସୀମାନଙ୍କୁ କେତେକ ରାଜ୍ୟ ଅଧିକାରରେ ଅଲଗା ଅଲଗା କରି ଦିଆଯାଇଛି। କିନ୍ତୁ ସାରାଦେଶ ମୁଖ୍ୟତଃ ଏକ ଓ ସମଗ୍ର ଜାତି ଏକ। ଏଗୁଡ଼ିକ, ଗୋଟିଏ କେନ୍ଦ୍ରରୁ ପାଇଥିବା ରାଜ୍ୟାଧିକାର ଅଧୀନରେ ରହିବେ। ଆମେରିକାର ଲୋକଙ୍କୁ ଏହି ସ୍ଥିତି ମଧ୍ୟକୁ ଆଣିବାପାଇଁ ରାଜ୍ୟଗୁଡ଼ିକ ପୃଥକ ହେବାର ଅଧିକାର ପାଇନାହାନ୍ତି। ସେମାନଙ୍କର ଫେଡ଼େରେସନ ଅବିଭାଜ୍ୟ ଓ ଚିରସ୍ଥାୟୀ। ଏଥିପାଇଁ ବହୁସମୟରେ ଗୃହଯୁଦ୍ଧ ଲାଗିଯାଏ। ତଠା ସମିତ ଭାବଲେ, ଏହିକଥାକୁ କାହାରି କଳ୍ପନା ବା ଝଗଡ଼ା ଦ୍ୱାରା ନିର୍ଣ୍ଣୟ କରିବା ପୂର୍ବରୁ ସ୍ପଷ୍ଟକରି ନେବା ଠିକ୍‌ହେବ।

ତଠା ସମିତ, ସମ୍ବିଧାନର ସଂଶୋଧନର ସମ୍ବନ୍ଧରେ ଯେଉଁ ନିୟମ ଧାର୍ଯ୍ୟ କରିଛନ୍ତି, ଆଲୋଚକଗଣ ଏହାକୁ ମଧ୍ୟ କଡ଼ା ସମାଲୋଚନା କରିଛନ୍ତି। କୁହନ୍ତି ଯେ, ଏହି ନିୟମ ଅନୁସାରେ ସମ୍ବିଧାନରେ କୌଣସି ପ୍ରକାରର ପରିବର୍ତ୍ତନ ଆଣିବା ବ୍ୟବସ୍ଥାକୁ କଠିନ କରି ଦିଆଯାଇଛି। ଏହା ଧାର୍ଯ୍ୟ କରାଯାଇଛି ଯେ, ଅତି କମ୍‌ରେ ଛଅବର୍ଷ ପାଇଁ ସମ୍ବିଧାନରେ ଅଳ୍ପ ବହୁତ କିଛି ସଂଶୋଧନ କରିପାରିବା ସମ୍ଭବ ହେବ ନାହିଁ। ତର୍କ ଖୁବ୍ ପୁଷ୍ଟ ଅଟେ। ମାତ୍ର ବୁଝି ଓ ବିଗ୍ଭର କରି ଏହା କରାଯାଇଛି। କୁହାଯାଇଛି ବିଧାନ ନିର୍ମାଣ ସଭା, ବୟସ୍କ ମତାଧିକାରର ଆଧାର ଉପରେ ନିର୍ବାଚିତ ହୋଇନାହିଁ। କିନ୍ତୁ ଭବିଷ୍ୟତର ପାର୍ଲିଆମେଣ୍ଟ, ବୟସ୍କ ମତାଧିକାରର ଆଧାର ଉପରେ ନିର୍ବାଚିତ ହେବ। ଏହା ହେବା ଦ୍ୱାରା ମଧ୍ୟ ବର୍ତ୍ତମାନର ବିଧାନ ନିର୍ମାଣ ସଭାକୁ ଅଳ୍ପବହୁତ କରିଥିବା କ୍ଷମତା ଉପରେ ହିଁ ସମ୍ବିଧାନକୁ ଏପାଖ ସେପାଖ କରିବାର ଅଧିକାର ଦେଇଦିଆଯାଇ-ଅଛି। କିନ୍ତୁ ଭବିଷ୍ୟତର ପାର୍ଲିଆମେଣ୍ଟକୁ ସେହି ଅଧିକାରରୁ ବଞ୍ଚିତ କରାଯାଇଛି। ଏହି କଥାକୁ ତଠା ସମ୍ବିଧାନରେ "ବେହୁଦା" ଧାର୍ଯ୍ୟ ଦ୍ୱାରା ଗୋଟିଏ "ବେହୁଦା ଧାର୍ଯ୍ୟ" ନମୁନାର ପ୍ରକାର ଉପସ୍ଥାପନ କରାଯାଇଛି। ତୋସମିତକୁ ଏହି ନିରାଧାର ଆକ୍ଷେପର ମଧ୍ୟ ଖଣ୍ଡନ କରିବାକୁ ପଡ଼ିବ।

ଏହାକୁ ବୁଝିବା ପାଇଁ ସମ୍ବିଧାନର ସଂଶୋଧନ ବିଷୟରେ ଚଠା କମିଟି ଦ୍ୱାରା ଧାର୍ଯ୍ୟ କରାଯାଇଥିବା ନିୟମ ସରଳ । ଅମେରିକା ତଥା ଅଷ୍ଟ୍ରେଲିଆର ସମ୍ବିଧାନରେ ସଂଶୋଧନ କରିବାର ଯାହା ନିୟମ ଅଛି, ତା'ର ଅନୁସୃତ କରିବାର ଦରକାର । ତାହାର ତୁଳନାରେ ଚଠାସମିତିର ଧାର୍ଯ୍ୟ ନିୟମ ଅତି ସରଳ । ଚଠା ସମ୍ବିଧାନରେ ଏକ ବିଶେଷ ଅଧିବେଶନ ବା ବିଶେଷ ସଂଖ୍ୟକ ମତ ଗ୍ରହଣ ଦ୍ୱାରା ନିର୍ଣ୍ଣୟ କରିବା ପାଇଁ ଲମ୍ବା ଚୌଡ଼ା ତଥା କଠିନ ପଦ୍ଧତିର ପରିତ୍ୟାଗ କରି ଦିଆଯାଇଛି । ସଂଶୋଧନ କାର୍ଯ୍ୟ କେନ୍ଦ୍ରୀୟ ତଥା ପ୍ରାନ୍ତୀୟ ବିଧାନସଭାର ହାତରେ ରହିବା ପାଇଁ କରାଯାଇଛି । କୌଣସି ବିଶେଷ କଥାରେ ସଂଶୋଧନ କରିବା ପାଇଁ ଦ୍ୱିଜ୍ୟ ବିଧାନସଭା ମାନଙ୍କର ଏକ ନିର୍ଦ୍ଦିଷ୍ଟ ପରିମାଣର ସଂଖ୍ୟାଧିକ ସମର୍ଥନର ଆବଶ୍ୟକତା ରକ୍ଷା କରାଯାଇଛି । ସମ୍ବିଧାନର ଶେଷ ଅଂଶର ସବୁ ଧାରାଗୁଡ଼ିକର ସଂଶୋଧନ ପାର୍ଲିଆମେଣ୍ଟର ଦାୟିତ୍ୱ । କେବଳ ଏତିକ ପ୍ରତିବନ୍ଧକ ରଖାଯାଇଛି ଯେ, କୌଣସି ସଂଶୋଧନ ସେତିକିବେଳେ ସ୍ୱୀକୃତ ପାଇବ ଯେତେବେଳେ ତାହାଉପରେ ଦୁଇଗୃହର ଉପସ୍ଥିତ ମତଦାନ କରିବା ସଦସ୍ୟମାନଙ୍କର ୨/୩ ଅଂଶ ବହୁମତ ଲାଭ କରିପାରିବ । ଓ ଦୁଇଗୃହର ସଦସ୍ୟମାନଙ୍କର ବହୁମତ ମଧ୍ୟ ଲାଭ କରିବ । ସମ୍ବିଧାନର ସଂଶୋଧନ ପାଇଁ ଏହାଠାରୁ ଅଧିକ ସରଳ ପଦ୍ଧତିର କଳ୍ପନା କରିବା କଠିନ ବ୍ୟାପାର ଅଟେ ।

ଯେଉଁମାନଙ୍କ ଦ୍ୱାରା ସଂଶୋଧନ ପଦ୍ଧତିକୁ "ବେହୁଦର୍ଶୀ" ଅଚଳ (Razid) କୁହାଯାଇଛି, ସେମାନଙ୍କର ଏହି ନିର୍ମାଣ ସଭା ତଥା ସମ୍ବିଧାନ ଦ୍ୱାରା ବନ୍ଧାଯାଇଥିବା ଭାବି ପାର୍ଲିଆମେଣ୍ଟର ସ୍ଥିତି ବିଷୟରେ ଥିବା ମିଥ୍ୟା ଧାରଣା ଉପରେ ଆଶ୍ରିତ ଅଛି । ସମ୍ବିଧାନ ନିର୍ଣ୍ଣୟ ସମୟରେ ସମ୍ବିଧାନ ନିର୍ମାଣ ସଭା ଆଗରେ କୌଣସି ପକ୍ଷ ବିଶେଷର ସ୍ୱାର୍ଥ ରହିବ ନାହିଁ । ଏପରି ସମ୍ବିଧାନ ନିର୍ମାଣ କରିବାର ଏକମାତ୍ର ଉଦ୍ଦେଶ୍ୟ ହୋଇଛି, ଯାହା ସମସ୍ତ ଭାରତବାସୀଙ୍କ ପାଇଁ ହିତକର ହେବ ଓ ତାହା ସହଜରେ କାର୍ଯ୍ୟକାରୀ ହୋଇ ପାରିବ । ଏହା ବ୍ୟତୀତ ଅନ୍ୟ କୌଣସି ସ୍ୱାର୍ଥ ନାହିଁ । ସମ୍ବିଧାନର ଧାରାଗୁଡ଼ିକ ଉପରେ ବିଚାର କରିବା ସମୟରେ କାହାର ନିଜର କୌଣସି ବିଶେଷ ଧାରାକୁ ପାସ୍ କରିନେବା ଉପରେ କୌଣସି ସନ୍ଦେହ ରହିବ ନାହିଁ । ବିଧାନ ନିର୍ମାଣ ସଭା ଦ୍ୱାରା ପ୍ରଦତ୍ତ କ୍ଷମତା ଅନୁଯାୟୀ ଭାବି ପାର୍ଲିଆମେଣ୍ଟ କୌଣସି ଏକ ବିଧାନର ସଂଶୋଧନ କରିବା ପାଇଁ ବସେ, ତାହାହେଲେ ତାହାର ସଦସ୍ୟପକ୍ଷର ସମର୍ଥକଙ୍କ କ୍ଷମତା ଅନୁଯାୟୀ ବସିବ । ତାଙ୍କର ଇଚ୍ଛା ହେବ ଯେ, ଏପରି ସଂଶୋଧନ ଉପସ୍ଥାପିତ କରାଯିବ, ଯେଉଁ ସଂଶୋଧନ ପ୍ରସ୍ତାବକୁ ସେମାନେ ନିଜ ପକ୍ଷରୁ ସହଜରେ ପାସ୍ କରିଦେଇ ପାରିବେ । ଯାହା ପାସ୍ ହେବା ଦ୍ୱାରା ସମ୍ବିଧାନର ଅନ୍ୟ କୌଣସି ଧାରା ବିଶେଷ,

ବାଧା ବିରହିତ ହେବ ଓ ପାର୍ଲିଆମେଣ୍ଟର ନିଜ ସ୍ୱାର୍ଥ ରକ୍ଷା କରାଯାଇ ପାରିବ । ବିଧାନ ନିର୍ମାଣ ସଭା ସ୍ୱାର୍ଥବିହୀନ ଅଟେ । ବିଧାନ ନିର୍ମାଣ ସଭା ଓ ଭାବି ପାର୍ଲିଆମେଣ୍ଟ ମଧ୍ୟରେ ଏହାହିଁ ପାର୍ଥକ୍ୟ । ଏହା ଦ୍ୱାରା ଏହି କଥା ବ୍ୟାଖ୍ୟା ହୋଇଥାଏ ଯେ, କାହିଁକି ସେହି ବିଧାନ ନିର୍ମାଣ ସଭା ଉପରେ, ଯାହା କେବଳ ସିମୀତ ମତଦାନର ପରିଣାମ, ତାହାର ସାମାନ୍ୟ ବହୁମତ ଦ୍ୱାରା ସମ୍ବିଧାନ ପାସ୍ କରିବା ସଂପର୍କରେ ଭରସା କରାଯାଇ ପାରେ ? କାହିଁକି ଏହି ପାର୍ଲିଆମେଣ୍ଟ ଉପରେ, ତାହାର ନିର୍ବାଚନ, 'ବୟସ୍କ' ମତଦାନର ଆଧାର ଉପରେ ନ୍ୟସ୍ତ ? ଏହି ସାମାନ୍ୟ ବହୁମତ ଦ୍ୱାରା ସମ୍ବିଧାନର ସଂଶୋଧନ କରିବା ବିଷୟରେ ବିଶ୍ୱାସ କରାଯାଇ ପାରିବ ନାହିଁ । ମୋର ବିଶ୍ୱାସ, ଡ୍ରାଫ୍ଟ କମିଟି ଦ୍ୱାରା ଉପସ୍ଥାପିତ କରାଯାଇଥିବା ଡ୍ରାଫ୍ଟ ସମ୍ବିଧାନର ଯେତେ ପରିମାଣର ପ୍ରତିକୂଳ ଆଲୋଚନା ହେଲା, ମୁଁ ସେସବୁର ଉତ୍ତର ଦେଇଦେଇଛି । ଅତୀତର ଆଠ ମାସ ପର୍ଯ୍ୟନ୍ତ ଏହି ସମ୍ବିଧାନ ଜନତା ସମ୍ମୁଖରେ ରଖାଯାଇଛି । ଏହା ଉପରେ ଯେକୌଣସି ମହତ୍ୱପୂର୍ଣ୍ଣ ଆଲୋଚନା ହୋଇଛି, ତାହାର ସବୁ କଥା ଉପରେ ମୋର ଏହି ବିଶ୍ଳେଷଣାତ୍ମକ ତଥ୍ୟ, ତାହା ସ୍ଥିର କରିବ । ଏହି ଡ୍ରାଫ୍ଟ କମିଟି ଦ୍ୱାରା ପ୍ରସ୍ତାବିତ ସମ୍ବିଧାନକୁ ଏହି ପ୍ରକାର ଗ୍ରହଣ କରିବେ ବା ପାସ କରିବା ପୂର୍ବରୁ କିଛି ପରିବର୍ତ୍ତନ କରିବାକୁ ଆବଶ୍ୟକ କରିବେ, ତାହା ସମିତିର ବିଚାର ଉପରେ ନିର୍ଭର କରେ ।

କିନ୍ତୁ ଗୋଟିଏ କଥା, ମୁଁ କହିବାକୁ ଚାହୁଁଛି, ଏହି ସମ୍ବିଧାନ ଉପରେ ଭାରତର କିଛି ପ୍ରାନ୍ତୀୟ ଧାରା ବିଭିନ୍ନ ରାଜ୍ୟଗୁଡ଼ିକର ସଭାରେ ମଧ୍ୟ ବିଚାର ହୋଇସାରିଛି । ଏହା ଉପରେ ବମ୍ବେ, ମଧ୍ୟପ୍ରଦେଶ, ପଶ୍ଚିମବଙ୍ଗ, ବିହାର, ମାଡ୍ରାସ ତଥା ପୂର୍ବପଞ୍ଜାବରେ ବିଚାର ବିନିମୟ ହୋଇଛି । ଏହା ସତ୍ୟ ଯେ ସମ୍ବିଧାନର କିଛି ପ୍ରାନ୍ତୀୟ ଧାରାର ବ୍ୟବସ୍ଥା ପାଇଁ ସଭାମାନଙ୍କରେ ପ୍ରସ୍ତାବ କରାଯାଇଛି । ଆର୍ଥିକ ବ୍ୟବସ୍ଥାକୁ ବିଚାର କରିବା ବେଳେ ଏକ ଗମ୍ଭୀର ଆପତ୍ତି ଉଠାଯାଇଛି । ଏପରିକି ୨୨୬ (ବ) ଧାରାକୁ ନେଇ ମାଡ୍ରାସ୍ ଧାରା ସଭାରେ କଠୋର ସମାଲୋଚନା କରାଯାଇଛି । କେବଳ ଗୋଟିଏ ଅପବାଦକୁ ଛାଡ଼ିଦେଲେ ପ୍ରାନ୍ତୀୟ ଧାରା ସଭାମାନଙ୍କରେ ସମ୍ବିଧାନ ଦ୍ୱାରା ଉପସ୍ଥାପିତ କରାଯାଇଥିବା ଧାରା ଗୁଡ଼ିକୁ ନେଇ କୌଣସି ଗମ୍ଭୀର ଆପତ୍ତି ଉଠାଯାଇନାହିଁ । କୌଣସି ବିଧାନ, ସର୍ବଗୁଣସମ୍ପନ୍ନ ନୁହେଁ ଏବଂ ସ୍ୱୟଂ ଡ୍ରାଫ୍ଟ କମିଟି ଦ୍ୱାରା ମଧ୍ୟ ଏହି ସମ୍ବିଧାନକୁ ଆହୁରି ଭଲ କରିବା ପାଇଁ କିଛି ପ୍ରସ୍ତାବ ଉପସ୍ଥାପନ କରାଯାଇଛି । କିନ୍ତୁ ପ୍ରାନ୍ତୀୟ ଧାରା ସଭାମାନଙ୍କରେ ଯେଉଁ ବାଦ ବିବାଦ ହେଲା, ସେଥିରୁ ମୋତେ ଏହା କହିବାକୁ ସାହସ ହେଉଛି ଯେ ଡ୍ରାଫ୍ଟ କମିଟି ଦ୍ୱାରା ଉପସ୍ଥାପିତ କରାଯାଇଥିବା ସମ୍ବିଧାନ ନିଶ୍ଚିତ ଭାବେ ଭଲ । ଏହି ଦେଶରେ ଏହିପରି ସମ୍ବିଧାନକୁ ସ୍ୱୀକାର କରି ନିଆଯାଇପାରେ ।

ମୋର ବିଶ୍ୱାସ ହୁଏ ଏହି ସମ୍ବିଧାନ ଅନୁସାରେ କାର୍ଯ୍ୟ ହୋଇପାରିବ । ଏହା ପରିବର୍ତ୍ତନ ଶୀଳ । ଏହା ଏପରି ମଜଭୁତ ଯେ ଏହା - ଶାନ୍ତି ଓ ଯୁଦ୍ଧ ସମୟରେ ଦେଶକୁ ଏକ କରି ରଖିପାରିବ । ଯଦି ଆପଣମାନେ ମୋତେ କହିବାକୁ ଅନୁମତି ଦିଅନ୍ତି, ତାହାହେଲେ ମୁଁ କହିବାକୁ ଚାହେଁ ଯଦି ଏହି ନୂଆ ସମ୍ବିଧାନ ଅନୁସାରେ କାର୍ଯ୍ୟ କଲପରେ ମନ୍ଦ କଥା ବାହାରିପଡ଼ିବ, ତାହାହେଲେ ଏହାର କାରଣ ନୁହେଁ ଯେ ଆମ୍ଭମାନଙ୍କର ସମ୍ବିଧାନ ଖରାପ ହୋଇଯିବ । ମୋତେ ଏହା କହିବାକୁ ପଡ଼ିବ ଯେ କୌଣସି ବ୍ୟକ୍ତି ଦୋଷମୁକ୍ତ ନୁହେଁ ।

ମହାଶୟ ମୁଁ ଏହି ବକ୍ତବ୍ୟ ସହିତ ସମ୍ବିଧାନକୁ ପାସ କରିବା ପାଇଁ ସବୁ ସମକ୍ଷରେ ଉପସ୍ଥାପନ କରୁଛି ।

—o—

# ମନ୍ତ୍ରୀମଣ୍ଡଳରୁ ତ୍ୟାଗପତ୍ର ଦେବା ସମ୍ବନ୍ଧରେ-ବକ୍ତବ୍ୟ

(ମନ୍ତ୍ରୀମଣ୍ଡଳରୁ ତ୍ୟାଗପତ୍ର ଉପରେ ବାବାସାହେବଙ୍କର ଏହା ଏକ ବେଦନାପୂର୍ଣ୍ଣ ବକ୍ତବ୍ୟ । ଏହା ହେଉଛି ଦେଶ ପରିସ୍ଥିତିର ନମୁନା, ଯାହା ତଥାକଥିତ ଉଚ୍ଚ ଜାତିର ହିନ୍ଦୁଗଣ ଓ ନିଷ୍ପେଷିତ ପଛୁଆ ଜାତି ମାନଙ୍କର ସମସ୍ୟା । ଏହି ଜାତିର ଜାଗ୍ରତ ଲୋକେ ଭାରତ ସରକାରକୁ "ବ୍ରାହ୍ମଣବାଦୀ" ବା "ବ୍ରାହ୍ମଣ ସାଧୁ ବାହୁମତ" ମନେକରୁଥିଲେ । ନିଷ୍ପେଷିତ ପଛୁଆ ଜାତି ମାନଙ୍କର ଉନ୍ନତି "ହିନ୍ଦୁ ଖୋଲପାଧାରୀ" ମାନଙ୍କର ସହ୍ୟ ହେଉ ନଥିଲା ହିନ୍ଦୁ ପୃଥିବୀର ଅନ୍ୟ ସମସ୍ତ ଜାତିମାନଙ୍କ ମଧ୍ୟରେ ନିଜ ପାଇଁ ସମତା ଚାହେଁ, କିନ୍ତୁ ନିଜ ଗୋଷ୍ଠୀ ମଧ୍ୟରେ ଥିବା ହିନ୍ଦୁ ଭାରତୀୟ ଜନ ସମାଜକୁ ହିନ୍ଦୁମାନେ ଯେଉଁଭଳି ନିଜେ ନିଷ୍ପେଷିତ କରି ରଖିଛନ୍ତି ସେମାନଙ୍କ ମଧ୍ୟରେ ଏହି ସମତା ରଖିବାକୁ ଚାହୁଁ ନାହାନ୍ତି । ଭାରତୀୟ ସମ୍ବିଧାନର ନିର୍ମାତା, ଯୁଗପୁରୁଷ, ବିଦ୍ୱାନ ଓ ବିଶୁଦ୍ଧ ବିଷ୍ଣୁବାଦୀ ବାବାସାହେବଙ୍କ ପ୍ରତି ଯେଉଁ ଅନ୍ୟାୟପୂର୍ଣ୍ଣ ବ୍ୟବହାର ମହାସ୍ୱାର୍ଥୀ ଓ ଅହଂକାରୀ ହିନ୍ଦୁମାନଙ୍କ ଦ୍ୱାରା କରାଗଲା, ତାହା ଏହି ଦେଶପାଇଁ ଲଜ୍ଜାର କଥା । ସମ୍ବିଧାନକୁ ସମର୍ପିତ କରିବା ସମୟରେ ବାବାସାହେବ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ବକ୍ତବ୍ୟ ପ୍ରଦାନ କରିଥିଲେ ତାହା ବ୍ୟତୀତ, ତ୍ୟାଗପତ୍ର ଦେବା ସମୟରେ ଏହି ବକ୍ତବ୍ୟ ପ୍ରତି କେଉଁ ସହୃଦୟ ପୁରୁଷର ହୃଦୟ ବିଦୀର୍ଣ୍ଣ ନହେବ । ଏହା କେତେ ଲଜ୍ଜାର କଥା ଯେଉଁ ସମ୍ବିଧାନକୁ ପୃଥିବୀର ସବୁଠାରୁ ଉତ୍ତମ ସମ୍ବିଧାନ ବୋଲି ମତବ୍ୟକ୍ତ କରି ତାହାର ନିର୍ମାତା ବାବାହାହେବ ଆମ୍ବେଦକରଙ୍କୁ "ଏଲ୍ ଏଲ୍ ଡ଼ି" ଉପାଧିରେ ସମ୍ମାନିତ କରିଥିଲେ ସେହି ସମ୍ବିଧାନ ଉପରେ ଭାରତର କୌଣସି ବିଶ୍ୱବିଦ୍ୟାଳୟ ବା ବିଦ୍ୱାନ ସଂସ୍ଥା ପଦେ ହେଲେ ମତବ୍ୟକ୍ତ କଲେ ନାହିଁ । "ଏହା କେବଳ ହିଂସା ଓ ବିଦ୍ୱେଷ ମାତ୍ର । ଏହା ବାସ୍ତବିକ କୁହାଯାଏ । "ଅପୂଜ୍ୟାଃ ଯତ୍ର ପୂଜ୍ୟନ୍ତେ ପୂଜ୍ୟଂଶ୍ଚୈବ ନିରାଦରଃ; ତ୍ରିଣିତେ ଭବିଷ୍ୟନ୍ତି ଦୁର୍ଭିକ୍ଷଂ ମରଣଂ ଭୟମ୍" । ଆଜି ତାହା ପ୍ରତ୍ୟେକ୍ଷ । ବୁଦ୍ଧିମାନ ପାଠକଗଣ ବାବାସାହେବଙ୍କର ଏହି ତ୍ୟାଗପତ୍ର ସମ୍ବନ୍ଧୀୟ ବକ୍ତବ୍ୟକୁ ଧୈର୍ଯ୍ୟର ସହିତ ପାଠ କରନ୍ତୁ । ବାରମ୍ବାର ପଢ଼ି ଓ ବିନ୍ଦୁ ହୃଦୟର ମହିମାକୁ ବୁଝନ୍ତୁ ।)

## ତ୍ୟାଗପତ୍ର ସମ୍ବନ୍ଧୀୟ ବକ୍ତବ୍ୟର ଯଥାର୍ଥତା

ଲୋକସଭାର ସଦସ୍ୟ ମହୋଦୟଙ୍କୁ ଏହି କଥା ଜଣାଉଛି ଯେ, ମୁଁ ବର୍ତ୍ତମାନ ମନ୍ତ୍ରୀମଣ୍ଡଳର ସଦସ୍ୟ ନୁହେଁ । ମୁଁ ନିଜର ତ୍ୟାଗପତ୍ର ସେପ୍ଟେମ୍ବର

୨୭ ତାରିଖ ଦିନହିଁ ପ୍ରଧାନମନ୍ତ୍ରୀଙ୍କ ଅଫିସରେ ଉପସ୍ଥାପିତ କରିଥିଲି, ଓ ଅନୁରୋଧ କରିଥିଲି ଯେ ମୋତେ ତୁରନ୍ତ ମୁକ୍ତ କରିଦିଆଯାଉ । ପ୍ରଧାନମନ୍ତ୍ରୀ ତାର ପର ଦିନ କୃପା କରି ତାହା ଗ୍ରହଣ କରିଛନ୍ତି । ଯଦିଓ ୨୮ ସେପ୍ଟେମ୍ବର ପରେ ମଧ୍ୟ ମୁଁ ମନ୍ତ୍ରୀମଣ୍ଡଳର ସଦସ୍ୟ ଅଛି । ତାହାର କାରଣ ପ୍ରଧାନମନ୍ତ୍ରୀ ମୋତେ ଏହି ଲୋକସଭାର ଅଧିବେଶନର ଶେଷ ପର୍ଯ୍ୟନ୍ତ ଏହି ଦାୟିତ୍ୱ ସମ୍ଭାଳିବା ପାଇଁ ଅନୁରୋଧ କରିଥିଲେ । ଏହା ଏକ ଏପରି ଅନୁରୋଧ, ଯାହା ଲୋକସଭାର ଆଚାର, ମର୍ଯ୍ୟାଦା ଅନୁଯାୟୀ ତାହା ପାଳନ କରିବା ବିଧେୟ ।

ଲୋକସଭାର କାର୍ଯ୍ୟ ପଦ୍ଧତିର ନିୟମ ଅନୁଯାୟୀ ଯଦି କୌଣସି ମନ୍ତ୍ରୀ ତ୍ୟାଗ ପତ୍ର ଦେଇଥାନ୍ତି ତାହାହେଲେ ତାଙ୍କର ଏଥିପାଇଁ ଅବସର ଥାଏ ଯେ ଏହି ତ୍ୟାଗ ପତ୍ର ଦେବା ସମୟରେ ନିଜର ତ୍ୟାଗପତ୍ର ସମ୍ବନ୍ଧରେ ନିଜର ବକ୍ତବ୍ୟ ଦେଇ ପାରନ୍ତି । ମୋର କାର୍ଯ୍ୟକାଳ ମଧ୍ୟରେ ଅନେକ ମନ୍ତ୍ରୀ ତ୍ୟାଗ ପତ୍ର ଦେଇଛନ୍ତି । କିନ୍ତୁ ତ୍ୟାଗପତ୍ର ଦାନକାରୀ ଗଣଙ୍କର ବକ୍ତବ୍ୟ ସମ୍ବନ୍ଧୀୟ ମତାମତ ମଧ୍ୟରେ ଏକ ରୂପତା ରହିନାହିଁ । କେତେକ ଯିବା ପୂର୍ବରୁ ନିଜର ବକ୍ତବ୍ୟ ଦେଇଥାନ୍ତି, ଓ କେତେକ ବିନା ବକ୍ତବ୍ୟରେ ମଧ୍ୟ ଚାଲି ଯାଇଛନ୍ତି । ମୁଁ ମଧ୍ୟ କିଛି ଦିନ ପର୍ଯ୍ୟନ୍ତ ସ୍ଥିର କରିପାରିନଥିଲି ମୋର କଣ କରିବା ଉଚିତ୍ । କିନ୍ତୁ ସାରା ପରିସ୍ଥିତି ମଧ୍ୟରେ ବିଚାର କରିସାରିବା ପରେ ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଲି, ଯେ ବକ୍ତବ୍ୟ ଦେବାଟା କେବଳ ଆବଶ୍ୟକ ନୁହେଁ, ବରଂ ତ୍ୟାଗପତ୍ର ଦେଉଥିବା ମନ୍ତ୍ରୀର ଲୋକସଭା ପ୍ରତି ଏକ ଆବଶ୍ୟକ କର୍ତ୍ତବ୍ୟ ଅଟେ । ଯାହାକୁ ପାଳନ କରିବା ଉଚିତ୍ ।

ଲୋକସଭାର ସାଧାରଣ ସଦସ୍ୟମାନଙ୍କୁ ଏହିକଥା ମାଲୁମ ନଥାଏ । ମନ୍ତ୍ରୀମଣ୍ଡଳର ଭିତରି କାରବାର କିପରି ଚାଲିଛି ? ମନ୍ତ୍ରୀମଣ୍ଡଳର କାର୍ଯ୍ୟ ଠିକ୍ ଭାବେ ଚାଲିଛି ଅଥବା ଭିତରେ କିଛି ବାଦାନୁବାଦ ମଧ୍ୟ ରହିଛି ? ଏହାର ସରଳ କାରଣ ମନ୍ତ୍ରୀମଣ୍ଡଳର ଗଠନ ସାମୋହିକ ଉତ୍ତର ଦାୟିତ୍ୱର ସିଦ୍ଧାନ୍ତ ଉପରେ ହୋଇଥାଏ । ଯେଉଁ ମନ୍ତ୍ରୀଙ୍କ ସହିତ ବହୁମତ ନାହିଁ ତାହାଙ୍କର ଏଥିପାଇଁ ଅଧିକାର ନଥାଏ । ଅନ୍ୟ ମନ୍ତ୍ରୀଙ୍କ ସହ ତାଙ୍କର ଯେଉଁ ମତଭେଦ ହୁଏ, ତାହା ସାର୍ବଜନୀନ ତରଜୁରେ ପ୍ରମାଣିତ ହୁଏ । ଏହି କାରଣରୁ ଲୋକସଭାର ସଦସ୍ୟମାନେ ମନ୍ତ୍ରୀମଣ୍ଡଳରେ ଆଭ୍ୟନ୍ତରୀଣ ମତଭେଦ ରହିଲେ ମଧ୍ୟ ଏହା ବୁଝାଯାଏ ଯେ କୌଣସି ବିବାଦ ନାହିଁ । ଏହି କାରଣରୁ ଯେଉଁ ମନ୍ତ୍ରୀ ବିଦାୟ ନିଏ ତାହାର କର୍ତ୍ତବ୍ୟ ହେଉଛି ସେ ବିଦାୟ ନେବା ପୂର୍ବରୁ ଏକ ବକ୍ତବ୍ୟ ଦେବ, ଯାହାଦ୍ୱାରା ଲୋକସଭାର ସଦସ୍ୟମାନେ ବୁଝିବେ, ସେ କାହିଁକି ବିଦାୟ ନେବାକୁ ଚାହୁଁଛନ୍ତି ଓ ସେ ଭବିଷ୍ୟତରେ କାହିଁକି ସାମୋହିକ ଦାୟିତ୍ୱ ନିର୍ବାହ କରିବା ପାଇଁ ଅସମର୍ଥ ଅଟନ୍ତି ।

ଦ୍ୱିତୀୟ କଥା ଏହାଯେ, ଯଦି କୌଣସି ମନ୍ତ୍ରୀ ବନା ବକ୍ତବ୍ୟରେ ଚାଲିଯାନ୍ତି ତାହାହେଲେ ଲୋକେ ସନ୍ଦେହ କରନ୍ତି ଯେ ତାଙ୍କର ବ୍ୟକ୍ତିଗତ ଅପାରଗତା ସାର୍ବଜନୀକ ଆଚରଣରେ କୌଣସି ପ୍ରକାରର ଗଣ୍ଡଗୋଳ ରହିଛି । ମୋ ମତରେ କୌଣସି ମନ୍ତ୍ରୀ ଏହି ପ୍ରକାରର ସନ୍ଦେହ ପାଇଁ ସୁଯୋଗ ଦେବା ଉଚିତ୍ ନୁହେଁ ।

ତୃତୀୟ କଥା ଅମ୍ଭମାନଙ୍କର ସମାଚାର ପତ୍ର, ଯାହା, ସବୁବେଳେ, କାହାର ସପକ୍ଷରେ ତ କାହାର ବିପକ୍ଷରେ ଥାନ୍ତି । ଏବେ ଖୁବ୍ କମ୍ ସମାଚାର ପତ୍ର ଦେଖିବାକୁ ମିଳେ ଯେଉଁମାନଙ୍କ ଦ୍ୱାରା ପ୍ରକାଶିତ ଦୋଷ ଗୁଣଗୁଡ଼ିକ ପ୍ରକୃତ ପରୀକ୍ଷା ଉପରେ ନିର୍ଭର କରିଥାଏ । ସେମାନଙ୍କ ମଧ୍ୟରୁ କେତେକ ଯେତେବେଳେ ନିଜର ଖାଲି ପୃଷ୍ଠାଗୁଡ଼ିକୁ ପୂରଣ କରିବାକୁ ଚାହାନ୍ତି, ସେତେବେଳେ ତ୍ୟାଗ ପତ୍ର କାହାକୁ କିଛି ନ ପଚାରି ସ୍ୱେଚ୍ଛାରେ କାରଣ ଗୁଡ଼ିକୁ ଏପରି ଲେଖିଥାନ୍ତି ଯାହାର କୌଣସି ଯଥାର୍ଥତା ନଥାଏ । ଏହାର ପରିଣାମ ଏହା ହୁଏ ଯେ, ସେଗୁଡ଼ିକ ଯେଉଁ ବ୍ୟକ୍ତିଙ୍କ ସପକ୍ଷରେ ଥାଆନ୍ତି ସେମାନଙ୍କୁ ଏପରି ଢଙ୍ଗରେ ଚିତ୍ରିତ କରନ୍ତି ଯେଉଁଥିରେ ସେମାନେ ଜନତା ସମ୍ମୁଖରେ ଉତ୍ତମରୂପେ ପ୍ରଦର୍ଶିତ ହୁଅନ୍ତି । ଯେଉଁମାନଙ୍କର ଏମାନେ ବିରୁଦ୍ଧରେ ଥାନ୍ତି, ସେମାନଙ୍କୁ ଏପରି ଭାବରେ ଚିତ୍ରିତ କରନ୍ତି ଯେଉଁଥିରେ ସେମାନେ ଜନତା ସମ୍ମୁଖରେ ଦୂଷିତ ରୂପେ ପ୍ରକାଶିତ ହୁଅନ୍ତି । ମୁଁ ଦେଖୁଛି ମୋ ନିଜ ବିଷୟରେ ପ୍ରାୟ ଏହି ପ୍ରକାର ହୋଇଛି ।

ଏହି ସବୁ କାରଣରୁ ମୁଁ ଆପଣଙ୍କଠାରୁ ବିଦାୟ ନେବା ପୂର୍ବରୁ ମୋର ବକ୍ତବ୍ୟ ଦେବାକୁ ସ୍ଥିର କରିଛି । ଏଥିପାଇଁ ମୁଁ ୪ ବର୍ଷ ୧ ମାସ ୨୭ ଦିନ ଲାଗିଥିଲି । ଯେତେବେଳେ ମୋତେ ପ୍ରଧାନ ମନ୍ତ୍ରୀ ଆଇନ ମନ୍ତ୍ରୀ ପଦ ସମ୍ଭାଳିବାକୁ କହିଲେ ଏହି ପ୍ରସ୍ତାବରେ ମୁଁ ବଡ ଆଶ୍ଚର୍ଯ୍ୟ ହୋଇଯାଇଥିଲି । କାରଣ ମୁଁ ବିରୋଧୀ ଦଳରେ ଥିଲି । ଯେତେବେଳେ ୧୯୪୬ ମସିହା ଅଗଷ୍ଟ ୧୫ ତାରିଖରେ ମଧ୍ୟବର୍ତ୍ତୀ ସରକାର ଗଠନ କରାଗଲା, ସେତେବେଳେ କୌଣସି ହେଲେ ପଦପାଇଁ ମୁଁ ଅଯୋଗ୍ୟ ବୋଲି ଘୋଷଣା କରି ଦିଆଯାଇଥିଲା । ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟିକୋଣ ବା ବ୍ୟବହାର କାହିଁକି ପରିବର୍ତ୍ତିତ ହେଲା, ଏହି ବିଷୟରେ ମୁଁ କିଛିହେଲେ କଳ୍ପନା କରି ପାରିନଥିଲି । ମୋ ମନରେ ସନ୍ଦେହ ଭରି ରହିଥିଲା । ମୁଁ ବୁଝି ପାରିନଥିଲି ଯେ ଯେଉଁ ଲୋକମାନେ ମୋର ମିତ୍ର ନଥିଲେ, ସେମାନଙ୍କଠାରୁ ମୋର କଣ ସାର୍ଥକତା ଥିଲା । ମୋର ଏଥିରେ ମଧ୍ୟ ସନ୍ଦେହ ଥିଲାଯେ ଯେଉଁଲୋକ ତାଙ୍କର କଥା ଅନୁଯାୟୀ, ନଚଲେ; ସେ ଏହି ମନ୍ତ୍ରୀ ପଦର ଅନୁରୂପ କାର୍ଯ୍ୟ କରିବ କି ନାହିଁ ନଜାଣି ମୋତେ ପ୍ରଥମେ କାହିଁକି ଭାରତୀୟ ସରକାରରେ ଆଇନମନ୍ତ୍ରୀ କରିଥିଲେ । କିନ୍ତୁ ମୁଁ ମୋର ସନ୍ଦେହକୁ ଦମନ କରି ପ୍ରଧାନମନ୍ତ୍ରୀଙ୍କ ପ୍ରସ୍ତାବକୁ କେବଳ ଏହି କାରଣରୁ ସ୍ୱୀକାର

କରି ନେଇଥିଲି, ସେହେତୁ ମୋତେ ରାଷ୍ଟ୍ର ଗଠନ କାର୍ଯ୍ୟରେ କିଛି ସହଯୋଗ କରିବାକୁ କୁହାଯାଇଛି, ଅନ୍ତତଃ ସେହି ଦୃଷ୍ଟିରୁ ମୋର ଅଧିକାର କରିବା ଉଚିତ୍ ନୁହେଁ । ଫଳତଃ ମନ୍ତ୍ରୀମଣ୍ଡଳର ସଦସ୍ୟ ଓ ଆଇନ ମନ୍ତ୍ରୀର କ୍ଷମତାରେ ନୈବେଦନ ରହି ମୁଁ ଯାହା କରିଛି ତାହାର ମୂଲ୍ୟାଙ୍କନ ଅନ୍ୟମାନଙ୍କର କାର୍ଯ୍ୟ ।

## ପଦତ୍ୟାଗର ପ୍ରଥମ କାରଣ

ବର୍ତ୍ତମାନ ମୁଁ ସେହି କଥା କହିବାକୁ ଚାହୁଁଛି, ଯେଉଁ କାରଣରୁ ମୋତେ ନିଜର ସାଥୀମାନଙ୍କଠାରୁ ସମସ୍ତ ସମ୍ବନ୍ଧ ଛିନ୍ନ କରିବାକୁ ପଡ଼ିଲା । ସେହି ସବୁ କାରଣ ଯୋଗୁଁ ଏଥିରୁ ବିଦାୟ ନେବା ପାଇଁ ମୋ ମନକୁ ବହୁତ ସମୟରୁ ପିଡ଼ୀତ କରି ଆସୁଥିଲା ।

ସର୍ବପ୍ରଥମେ ମୁଁ କିଛି ବ୍ୟକ୍ତିଗତ କାରଣର ଆଲୋଚନା କରିବି, ଯାହାକି ମୋର ତ୍ୟାଗପତ୍ର ଦେବାର ଏକ ସବୁଠାରୁ ଶ୍ରେଷ୍ଠ କାରଣ ଅଟେ । ପୂର୍ବରୁ ମୁଁ ଭାଇସରାଏଙ୍କ କାର୍ଯ୍ୟ କାରିଣୀ ସଭାର ସଦସ୍ୟ ଥିଲି । ଏଥିପାଇଁ ମୁଁ ଜାଣେ ଯେ, ଶାସନ ବ୍ୟବସ୍ଥାର ପ୍ରତିନିଧିତ୍ୱ ଦୃଷ୍ଟିରୁ, ଆଇନ ମନ୍ତ୍ରୀର ପଦଟି ସମ୍ପୂର୍ଣ୍ଣ ନଗଣ୍ୟ ଅଟେ । ଏହି ପଦଦ୍ୱାରା, ଭାରତୀୟ ସରକାରଙ୍କର ନୀତି ନିର୍ଦ୍ଧାରଣ କରିବା କାର୍ଯ୍ୟରେ ଅଂଶ ଗ୍ରହଣ କରିବାରେ, କୌଣସି ଅବସର ନାହିଁ । ମୁଁ ଏହାକୁ ପୁରୁଣା ଓକିଲମାନଙ୍କର ଖେଳିବା ଯୋଗ୍ୟ, "ଖାଲୁନର ଖାଲଭର୍ତ୍ତା" ବୋଲି କହୁଥିଲି ଯେତେବେଳେ ପ୍ରଧାନମନ୍ତ୍ରୀ ମୋ ଆଗରେ ଆଇନ ମନ୍ତ୍ରୀର ପ୍ରସ୍ତାବ ରଖିଲେ, ସେତେବେଳେ ମୁଁ କହିଥିଲି "ନିଜେ ଶିକ୍ଷା ଓ ଅନୁଭବ ଶକ୍ତିରେ ଓକିଲ ହେବାଠାରୁ ଅଧିକ ଶାସନ ସମ୍ବନ୍ଧୀୟ ଯେକୌଣସି ବିଭାଗ ଚଳାଇବା ପାଇଁ ମୋର ଯୋଗ୍ୟତା ଅଛି । ଭାଇସରାଏଙ୍କର ପୁରୁଣା କାର୍ଯ୍ୟକାରିଣୀ ସଭାରେ ମୋ ଅଧୀନରେ ଦୁଇଟି ଶାସକୀୟ ବିଭାଗ ଥିଲା । ତାହା ହେଲା ଶ୍ରମ ବିଭାଗ ଓ ସେଣ୍ଟ୍ରାଲ ପବ୍ଲିକ ଓ୍ୱାର୍କସ୍ ବିଭାଗ । ଏହି ବିଭାଗ ଦ୍ୱୟରେ ଅଧିବୀତ ହେବାର କ୍ଷମତାରେ ମୋର ସମ୍ବନ୍ଧ ଓ ଯୋଜନା ପ୍ରସ୍ତୁତ କରିବା ପାଇଁ ବହୁତ କିଛି କାର୍ଯ୍ୟ ଥିଲା । ତେଣୁ ମୁଁ ଚାହୁଁଛି, ମୋତେ କୌଣସି ଶାସକୀୟ ବିଭାଗ ମଧ୍ୟ ଦିଆଯାଉ । ପ୍ରଧାନମନ୍ତ୍ରୀ ଏକମତ ହେଲେ । ସେ କହିଲେ ଆଇନ ମନ୍ତ୍ରୀ ପଦ ସହିତ ମୋତେ ଯୋଜନା ନିର୍ମାଣ ବିଭାଗ ମଧ୍ୟ ଦିଆଯିବ, ଯାହାକି ମୁଁ ଚାହୁଁଥିଲି । ଦୁର୍ଭାଗ୍ୟକୁ ଯୋଜନା ନିର୍ମାଣ ବିଭାଗ ବହୁ ଡେରିରେ କରାଗଲା ଓ ଯେତେବେଳେ ଏହା ହେଲା, ସେତେବେଳେ ମୋତେ ସମ୍ପୂର୍ଣ୍ଣ ଭୁଲି ଗଲେ । ମୋର କାର୍ଯ୍ୟକାଳ ମଧ୍ୟରେ ବହୁତ ମନ୍ତ୍ରୀଙ୍କର ବିଭାଗ ଅଦଳ ବଦଳ ହୋଇଛି । ଅନେକ ଗୋଟିଏ ବିଭାଗ କୌଣସି ମନ୍ତ୍ରୀଙ୍କ ହାତରେ

ଅନ୍ତତଃ କାଲି ଆଉ ଜଣଙ୍କ ହାତରେ । ମୁଁ ମଧ୍ୟ ଭାବିଥିଲି ମୁଁ ଏହି ବିଭାଗଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏ ପାଇବା ପାଇଁ ଯୋଗ୍ୟ ବିବେଚିତ ହେବି । କିନ୍ତୁ ମୋ ଆଡ଼କୁ କେହି କେବେହେଲେ ନଜର ଦେଲେନାହିଁ । କେତେକ ମନ୍ତ୍ରୀଙ୍କୁ ୨/୩ଟା କରି ବିଭାଗ ଦିଆଗଲା । ସେମାନେ କାର୍ଯ୍ୟ ଭାରରେ ପ୍ରାଣାନ୍ତକ ହୋଇଯାଉଥିଲେ । କିନ୍ତୁ ମୋ ଭଳି ଜଣେ ମନ୍ତ୍ରୀ, ଅଧିକ କାର୍ଯ୍ୟ ଚାହିଁଲେ ମଧ୍ୟ ଦିଆଗଲାନାହିଁ । ଯେତେବେଳେ କୌଣସି ମନ୍ତ୍ରୀ କିଛିଦିନ ପାଇଁ ବିଦେଶ ଯାଆନ୍ତି, ସେତେବେଳେ ମଧ୍ୟ, ତାଙ୍କର ଅନୁପସ୍ଥିତିରେ ତାଙ୍କର କାର୍ଯ୍ୟଭାର ସମ୍ଭାଳିବାପାଇଁ ଯୋଗ୍ୟ ବୋଲି ମୋତେ ବିବେଚନା କରାହେଲା ନାହିଁ । ଏହା ବୁଝିବା କଷ୍ଟକର ଯେ ପ୍ରଧାନମନ୍ତ୍ରୀ ନିଜର ମନ୍ତ୍ରୀମାନଙ୍କ ମଧ୍ୟରେ ସରକାରୀ କାର୍ଯ୍ୟ ବଣ୍ଟନ କରିବା ସମୟରେ କେଉଁ ସିଦ୍ଧାନ୍ତକୁ ଅନୁସରଣ କରନ୍ତି ? ତାହା କି, ତାଙ୍କର ସାମର୍ଥ୍ୟ ଉପରେ ବିଚାର କରାଯାଏ ? ଏହା କଣ କୌଣସି ବିଶ୍ୱାସ ସମ୍ବନ୍ଧୀୟ ପ୍ରଶ୍ନ ଅଟେ, ନା, ବନ୍ଧୁତ୍ୱ କ୍ଷୁଣ୍ଣ ହେବାର ଆଶଙ୍କାକୁ ନେଇ କରାଯାଏ । ଏହା କଣ କୌଣସି ବିଶେଷ ଦିଗକୁ ଝୁଙ୍କି ପଡ଼ିବାର ପରିଣାମକୁ ଏଡ଼ାଇ ନେବାପାଇଁ କରାଯାଇଥାଏ ? ମୋତେ କୌଣସି ବିଦେଶୀ ମାମଲାର କମିଟି ବା ସଂରକ୍ଷଣ କମିଟି ପରି ମହତ୍ତ୍ୱପୂର୍ଣ୍ଣ କମିଟିଗୁଡ଼ିକର ସଦସ୍ୟ କରାଗଲାନାହିଁ । ଯେତେବେଳେ ଆର୍ଥିକ ମାମଲା କମିଟିର ରଚନା ହେଲା ମୁଁ ଭାବିଲି ସମ୍ଭବତଃ ଏହି କମିଟିରେ ମୋତେ ନିଆଯିବ । କାରଣ ମୁଁ ମୂଳତଃ ଅର୍ଥଶାସ୍ତ୍ରର ହିଁ ବିଦ୍ୟାର୍ଥୀ ଥିଲି । କିନ୍ତୁ ମୋତେ ନିଆଗଲାନାହିଁ । ଯେତେବେଳେ ପ୍ରଧାନମନ୍ତ୍ରୀ ଇଂଲଣ୍ଡରୁ ଫେରି ଆସିଲେ, ସେତେବେଳେ ନିଜର ମନ୍ତ୍ରୀମଣ୍ଡଳର ନୂତନ ଗଠନ କରିବା ସମୟରେ ମଧ୍ୟ ଭୁଲିଗଲେ । ପରେ ଯେତେବେଳେ ପୁନର୍ବାର କମିଟିର ଗଠନ କରାଗଲା ସେତେବେଳେ ମୋର ନାମ ଅଙ୍ଗୀକାର କରାଗଲା । କିନ୍ତୁ ଏହା ମୋର ବିରୋଧିତା ପ୍ରକାଶ କରିବାର ପରିଣାମ ଥିଲା । ମୋର ବିଶ୍ୱାସ ହୁଏ ପ୍ରଧାନମନ୍ତ୍ରୀ ମୋର ଏହି କଥା ସ୍ୱୀକାର କରିବେ । ମୁଁ କେବେ ତାଙ୍କୁ ଏହି ବିଷୟରେ ଅନୁରୋଧ କରିନାହିଁ । ମନ୍ତ୍ରୀମଣ୍ଡଳ ମଧ୍ୟରେ ରାଜନୈତିକ ଶକ୍ତିପାଇଁ ଟଣାଓଟରାର ଯେଉଁ ଖେଳ ଚାଲିଛି ସେଥିରେ ମଧ୍ୟ ମୁଁ କେବେହେଲେ ଯୋଗ ଦେଇନାହିଁ ଓ ଯେତେବେଳେ କୌଣସି ବିଭାଗ ଖାଲି ହୁଏ, ତାହାହେଲେ ତାକୁ ଅକ୍ତିଆର କରିବା ପାଇଁ କୌଣସି ଚେଷ୍ଟା କରିନାହିଁ । ମୁଁ ସେହି କାମକୁ ସେବା ଭାବରେ କରିବାକୁ ବିଶ୍ୱାସ କରିଛି ଯାହାଫଳରେ ରାଜ୍ୟର ମୁଖିଆ ହେବାର କ୍ଷମତା ପାଇଁ ପ୍ରଧାନମନ୍ତ୍ରୀ ମୋତେ ଯୋଗ୍ୟ ବିଚାର କରି ଦେଇଥାନ୍ତେ, କିନ୍ତୁ ମୋ ପ୍ରତି ଯେଉଁ ଅନୁଚିତ ବ୍ୟବହାର ହୋଇ ଆସୁଥିଲା ତାହା ଅନୁଭବ ନ କରିବାଟା ମଧ୍ୟ ମୋ ପକ୍ଷରେ ଅମଣିଷ ପଣିଆ ହୋଇଥାନ୍ତା ।

**ତ୍ୟାଗପତ୍ରର ଦ୍ୱିତୀୟ କାରଣ :—**

ବର୍ତ୍ତମାନ ମୁଁ ଅନ୍ୟ କଥାର ଉପସ୍ଥାପନ କରୁଅଛି । ଯେଉଁଥିରେ ମୋ ମନରେ ସରକାର ପ୍ରତି ଅସନ୍ତୋଷ ସୃଷ୍ଟି ହୋଇଥିଲା । ଏହାର ସମ୍ବନ୍ଧ ସେହି ବ୍ୟବହାରରୁ ସୃଷ୍ଟି ଯାହା ନିକ୍ଷେପିତ ପଛୁଆ ତଥା ଅଛୁଆଁ ଜାତିମାନଙ୍କ ପ୍ରତି କରାଯାଉଥିଲା । ମୋର ଏଥିପାଇଁ ବଡ଼ ଅବଶୋଷ ହେଲା ଯେ, ସମ୍ବିଧାନରେ ପଛୁଆ ଜାତିମାନଙ୍କ ପାଇଁ କୌଣସି ସଂରକ୍ଷଣରେ ବ୍ୟବସ୍ଥା ରହିନାହିଁ । ଏହି କାର୍ଯ୍ୟ ସରକାରଙ୍କର ପ୍ରଶାସନିକ ବିଚାର ପାଇଁ ଛାଡ଼ି ଦିଆଗଲା । ରାଷ୍ଟ୍ରପତିଙ୍କ ଦ୍ୱାରା ଏଥିପାଇଁ ଯେଉଁ କମିସନ ନିଯୁକ୍ତ ହେବ, ତାହା କାର୍ଯ୍ୟକାରୀ କରିବେ । ଆମ୍ଭମାନଙ୍କ ପକ୍ଷେ, ଆମ୍ଭର ସମ୍ବିଧାନକୁ ସ୍ୱୀକୃତ ଦେବାର ଏକ ବର୍ଷରୁ ଅଧିକ ସମୟ ହୋଇଗଲା । କିନ୍ତୁ ସରକାର ଆଜି ପର୍ଯ୍ୟନ୍ତ କମିଶନ ନିଯୁକ୍ତ କରିବା ପାଇଁ ବିଚାର କରିନାହାନ୍ତି । ୧୯୪୬ରେ ଯେତେବେଳେ ମୋ ଉପରେ କୌଣସି ସରକାରୀ ବିଭାଗର ଦାୟିତ୍ୱ ନଥିଲା, ମୁଁ, ତଥା ପଛୁଆ ଜାତିଙ୍କ ନେତାମାନେ, ଅତ୍ୟଧିକ ଚିନ୍ତିତ ଥିଲୁ । ଅଛୁଆଁ ଜାତିମାନଙ୍କ ପାଇଁ ବିଧାନରେ ସଂରକ୍ଷଣରେ ବ୍ୟବସ୍ଥା କରିବା ପାଇଁ ବ୍ରିଟିଶ ସରକାର ଯେଉଁ ଜବାବ ଦେଇଥିଲେ ତାହା ଏମାନେ ଭୁଲିଯାଇଅଛନ୍ତି । ପଛୁଆ ଜାତିମାନେ ଜାଣନ୍ତିନାହିଁ, ଯେ ଏହି ବିଷୟରେ ବିଧାନ ନିର୍ମାଣ ସଭା କଣ କରିବେ ଓ କଣ କରିବେ ନାହିଁ । ଏହି ଚିନ୍ତିତ ଅବସ୍ଥାରେ ମୁଁ ସଂଯୁକ୍ତ ରାଷ୍ଟ୍ର ସଙ୍ଘର ସମ୍ମୁଖରେ ଉପସ୍ଥିତ କରିବା ପାଇଁ ଅଛୁଆଁ ଜାତିମାନଙ୍କ ସ୍ଥିତି ବିଷୟରେ ଏକ ରିପୋର୍ଟ ତିଆରି କରିଥିଲି । କିନ୍ତୁ ମୁଁ କେବେହେଲେ ଏହାକୁ ଉପସ୍ଥାପିତ କରିନାହିଁ । ମୁଁ ଭାବିଲି ଏହା ହେବ, ଯଦି ମୁଁ କିଛି ଅଧିକ ଦିନ ଅପେକ୍ଷା କରିବି, ଏବଂ ଦେଖିବି ବିଧାନ ନିର୍ମାଣ ସଭା ଓ ଦେଶର ଲୋକସଭା ଏହି ବିଷୟରେ କଣ କରୁଛି, ବିଧାନରେ ଅଛୁଆଁ ଜାତିଙ୍କ ପାଇଁ ଯେଉଁ ସଂରକ୍ଷଣରେ ବ୍ୟବସ୍ଥା କରାଯାଇଛି ତା ମୋପାଇଁ ସନ୍ତୋଷପ୍ରଦ ନଥିଲା । ତଥାପି ମଧ୍ୟ ଯାହା କିଛି ଭଲମନ୍ଦ ଏଥିରେ ଅଛି ମୁଁ ତାକୁ ସ୍ୱୀକାର କରିନେଲି । ମୋର ଭରସା ଥିଲା ଯେ, ସରକାର ସେଥିପ୍ରତି ସୁଭବୋପାଦକ ପଦ ନିର୍ଣ୍ଣୟ କଲାବେଳେ କିଛି ପାଦ ଅଗ୍ରସର ହେବେ, କିନ୍ତୁ ଆଜି ମଧ୍ୟ ଅଛୁଆଁ ଜାତିମାନଙ୍କର ସ୍ଥିତି କେଉଁଠାରେ ? ଯେତେଦୂର ମୁଁ ଦେଖି ପାରୁଛି, ଯାହା ପ୍ରଥମରେ ଥିଲା ତାହା ବର୍ତ୍ତମାନ ମଧ୍ୟ ଅଛି । ପୁରୁଣା ଅତ୍ୟାଚାର, ପୁରୁଣା ନିର୍ଯ୍ୟାତନା, ପୁରୁଣା ଭେଦଭାବ ଯେପରି ପ୍ରଥମେ ଥିଲା; ସେହିପରି ଆଜି ମଧ୍ୟ ଅଛି । ଏପରିକି ଅବସ୍ଥା କିଛି ଅଧିକ ବିଗିଡ଼ି ଯାଇଛି । ମୁଁ ଏହିପରି ଶତାଧିକ ଉଦାହରଣ ଦେଇପାରିବି ଯାହାକି ଏହି ଦିଲ୍ଲୀ ଓ ଏହାର ଆଖପାଖ ଅଞ୍ଚଳର ଅଛୁଆଁ ଲୋକେ ମୋ ପାଖକୁ ଆସି ସବର୍ଣ୍ଣମାନଙ୍କ ଦ୍ୱାରା ଅତ୍ୟାଚାରିତ ହେଉଥିବାର କରୁଣ କାହାଣୀ ଶୁଣାଇ ଅଛନ୍ତି ।

ସେମାନେ ଯେତେବେଳେ ପୁଲିସ୍ ପାଖରେ ରିପୋର୍ଟ୍ ଦେବାକୁ ପହଞ୍ଚନ୍ତି, ପୁଲିସ ମଧ୍ୟ କୌଣସି ପ୍ରକାରେ ସେମାନଙ୍କୁ ପାଖେ ପୂରାଇ ଦେଇ ନାହାନ୍ତି । ମୁଁ ଭାବୁଛି ଯେ ପୃଥିବୀରେ ଅନ୍ୟ କୌଣସି ଉଦାହରଣ ନାହିଁ ଯାହାର ତୁଳନା ଭାରତରେ ଅଛୁଆଁମାନଙ୍କ ଅବସ୍ଥା ସହିତ ତୁଳନା କରାଯାଇ ପାରିବ । ଏଠାରେ କାହିଁକି ଅଛୁଆଁମାନଙ୍କୁ କୌଣସି ସୁବିଧା ସୁଯୋଗ ଦିଆଗଲା ନାହିଁ ? ମୁସଲମାନଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ରଖାଯାଉ, ଏଥିପାଇଁ ସରକାରଙ୍କୁ ଅତ୍ୟଧିକ ଚିନ୍ତା କରିବାକୁ ପଡୁଛି । ଆପଣମାନେ ଏ ଦୁଇଟି ମଧ୍ୟରେ ତୁଳନା କରି ଦେଖନ୍ତୁ । ଆପଣମାନଙ୍କର ପ୍ରଧାନମନ୍ତ୍ରୀଙ୍କ ସବୁ ସମୟ ଓ ଧ୍ୟାନ ମୁସଲମାନଙ୍କ ପାଇଁ ସଂରକ୍ଷଣର ଚିନ୍ତା କରିବାରେ କଟି ଯାଉଛି । ଭାରତରେ ମୁସଲମାନଙ୍କୁ ଯେତେବେଳେ ଓ ଯେଉଁଠାରେ ସଂରକ୍ଷଣର ଆବଶ୍ୟକତା ଅଛି, ତାହା ତାଙ୍କୁ ତୁରନ୍ତ ମିଳିବା ଉଚିତ୍ । ଏ ବିଷୟରେ ମୁଁ ପ୍ରଧାନମନ୍ତ୍ରୀଙ୍କଠାରୁ କୌଣସି ପ୍ରକାରେ ପଛରେ ନାହିଁ । କିନ୍ତୁ ମୁଁ ଜାଣିବାକୁ ଚାହୁଁଛି ଯେ କେବଳ କଣ ମୁସଲମାନଙ୍କ ପାଇଁ 'ସଂରକ୍ଷଣ' ପ୍ରଯୁଜ୍ୟ ? ଅଛୁଆଁ ଜାତି ତଥା ଅଛୁଆଁ ଭାରତୀୟଙ୍କ ପାଇଁ କଣ ସଂରକ୍ଷଣର ଆବଶ୍ୟକତା ନାହିଁ ? ଏହି ଲୋକମାନଙ୍କ ପାଇଁ ମୁସଲମାନମାନଙ୍କ ଅପେକ୍ଷା ଅଧିକ ସଂରକ୍ଷଣର ଆବଶ୍ୟକତା ରହିଥିଲେ ମଧ୍ୟ ସେମାନଙ୍କ ପାଇଁ ଆମର ପ୍ରଧାନମନ୍ତ୍ରୀ କେତେ ଚିନ୍ତା କରୁଛନ୍ତି ? ସରକାର ଅଛୁଆଁ ଜାତି ପ୍ରତି ଯେଉଁ ଉଦାସୀନ ଜନକ କାର୍ଯ୍ୟ କରୁଛନ୍ତି, ସେଥିରେ ମୋର କ୍ଷୋଭ ହେଉଛି, ଓ ସେଥିରେ ମୁଁ ନିଜକୁ ସୀମିତ ରଖି ପାରୁନାହିଁ । ମୁଁ ଅଛୁଆଁ ଜାତିଙ୍କ ଗୋଟିଏ ସଭାରେ ମୋର ଭାବନାକୁ ପ୍ରକାଶ କରିଥିଲି ।

ମାନନୀୟ ଗୃହମନ୍ତ୍ରୀଙ୍କ ତରଫରୁ ଗୋଟିଏ ପ୍ରଶ୍ନ ପଚରା ଯାଇଥିଲା, ମୋର ଏହି ଆକ୍ଷେପ ଯେ ଅଛୁଆଁ ଜାତିକୁ ୧୨ ପରେସେଣ୍ଟ ପ୍ରତିନିଧିତ୍ୱ ଦେଉଥିବା ନିୟମରେ କୌଣସି ଲାଭନାହିଁ ? ମୋର ସେହି ଆକ୍ଷେପର ଉତ୍ତର ସ୍ୱୟଂ ଗୃହମନ୍ତ୍ରୀ ହିଁ ଦେଇଥିଲେ । ଯେଉଁଥିରେ ସେ ମୋର ଆକ୍ଷେପକୁ ନିରାଧାର ବୋଲି ସ୍ୱୀକାର କରିଥିଲେ । ମୋର ଆକ୍ଷେପର ଉତ୍ତର ଦେବା ପାଇଁ, ତଥା ନିଜର ସ୍ପଷ୍ଟବୋଧ ହେବା ପାଇଁ, ମନ୍ତ୍ରୀ ମହୋଦୟ ସବୁ ସରକାରୀ ବିଭାଗକୁ ଏକ ଅର୍ଦ୍ଧ ସରକାରୀ ଚିଠି ପଠାଇଥିଲେ । ସେଥିରେ ଗତବର୍ଷ ମାନଙ୍କରେ କେତେ ଅଛୁଆଁ ଜାତିଙ୍କୁ ସରକାରୀ ଚାକିରୀରେ ନିଆଯାଇଛି ତାହା ଜଣାଇବା ପାଇଁ ନିର୍ଦ୍ଦେଶ ଦିଆଗଲା । ମୁଁ ଅନୁସନ୍ଧାନ କରି ବାହାର କଲି, ଅଧିକାଂଶ ବିଭାଗ ତରଫରୁ ଏହାର ଉତ୍ତର କେବଳ କେହିନାହିଁ ବା କେହିନାହିଁ ଆସିଲା । ଯଦି ମୋର ବୁଝିବା ଠିକ୍ ହୁଏ ତାହାହେଲେ ଗୃହମନ୍ତ୍ରୀଙ୍କ ଦ୍ୱାରା ଦିଆଯାଇଥିବା ଉତ୍ତର ଉପରେ ଅଧିକ ପର୍ଯ୍ୟାଲୋଚନା କରିବାର କୌଣସି ଆବଶ୍ୟକତା ନାହିଁ ।

ନିଜର ବାଲ୍ୟ କାଳରୁ ହିଁ ମୁଁ ନିଜକୁ ସେହି ଅଛୁଆଁ ଜାତିର ଉଦ୍ଧାର କାର୍ଯ୍ୟରେ ଲଗାଇ ଦେଇଛି । ସେଥିରେ ମୁଁ ନିଜେ ସ୍ୱସ୍ତି ଅନୁଭବ କରୁଛି । ମୋ ପଥରେ କୌଣସି ପ୍ରଲୋଭନ ବାଧା ଦେଇନାହିଁ, ଏତିକି ନୁହେଁ, ମାତ୍ର ମୁଁ କେବଳ ମୋର ସ୍ୱାର୍ଥ ଚିନ୍ତା କରିନାହିଁ । ଯଦି ତାହା କରିଥାନ୍ତି ମୁଁ ଯାହା ଚାହିଁଥାନ୍ତି ତାହା ହୋଇ ପାରିଥାନ୍ତି । ମୁଁ ଯଦି କଂଗ୍ରେସରେ ସମ୍ମିଳିତ ହୋଇଯାଇ ଥାନ୍ତି, ତାହାହେଲେ ମୁଁ ସେହି ସଂଗଠନର ଉଚ୍ଚରୁ ଉଚ୍ଚତର ପଦଲାଭ କରିପାରି ଥାନ୍ତି । ତାହାପାଇଁ ଯେତେ କୁହାଗଲା ମୁଁ ନାସ୍ତି କରିଦେଇଛି । ମୁଁ ନିଜେ ମୋର ଉଦ୍ଦେଶ୍ୟ ଆପଣମାନଙ୍କୁ କହି ଦେଇଛି ଯେ, ମୁଁ ଅଛୁଆଁ ଜାତିମାନଙ୍କର ଉଦ୍ଧାର ପାଇଁ ନିଜକୁ ଉତ୍ସର୍ଗ କରିଦେଇଛି । ଯଦି ଆପଣ ଉତ୍ସାହ ପୂର୍ବକ କୌଣସି ଉଦ୍ଦେଶ୍ୟ ପାଇଁ କାର୍ଯ୍ୟ କରିବାକୁ ଚାହାନ୍ତି, ତାହାହେଲେ ଆପଣଙ୍କୁ କଟ୍ଟର ଅନୁଚର ହୋଇ ରହିବାକୁ ପଡ଼ିବ । ଏହି କାରଣରୁ ଆପଣ ଅନୁମାନ କରିପାରନ୍ତି, ଯେତେବେଳେ ମୁଁ ଦେଖୁଛି ଯେ, ଅଛୁଆଁ ଲୋକମାନଙ୍କ ଉପକାରକୁ ପ୍ରତ୍ୟକ୍ଷ ଭାବରେ ଉପେକ୍ଷା କରାଯାଉଛି, ତାହାହେଲେ ଏହିକଥା ମୋପାଇଁ କେତେଦୂର କଷ୍ଟପ୍ରଦ ନହେବ ।

## ପଦତ୍ୟାଗର ତୃତୀୟ କାରଣ

ତୃତୀୟ ଘଟଣାଟିଏ କେବଳ ମୋର ଅସନ୍ତୋଷର କାରଣ ତାହାନୁହେଁ ସେଥିପାଇଁ ମୁଁ ପ୍ରକୃତରେ ଚିନ୍ତିତ ହୋଇ ପଡ଼ିଥିଲି, ତାହା ହେଉଛି ଦେଶର ବୈଦେଶିକ ନୀତି । ଯାହା ତାହା ଭାବେ ମଧ୍ୟ ଆମର ବୈଦେଶିକତା ପ୍ରତି ଧ୍ୟାନ ଦିଆଯିବା ଉଚିତ୍ ନୁହେଁ । ଭାରତ ଭଳି ଅନ୍ୟ ଦେଶମାନଙ୍କର ଯାହା ଭାବନା, ତାର ଅଧ୍ୟୟନ କରାଯିବ । ସେଥିରେ ଆମ ଦେଶ ପ୍ରତି ଅନ୍ୟ ଦେଶମାନଙ୍କ ବ୍ୟବହାରରେ ଯେଉଁ ଆକସ୍ମିକ ପରିବର୍ତ୍ତନ ହୋଇଗଲା ତାର ବାସ୍ତବ କାରଣ କୁହି ପ୍ରତିକାର ନିର୍ଦ୍ଧାରଣ କରିବା ଆବଶ୍ୟକ । ୧୫ ଅଗଷ୍ଟ ୧୯୪୭ରେ ଯେତେବେଳେ ଆମ୍ଭେମାନେ ସ୍ୱତନ୍ତ୍ରତା ଲାଭକଲେ, ଏପରି ଗୋଟିଏ ହେଲେ ଦେଶ ନଥିଲା ଯେ କି ଆମ୍ଭମାନଙ୍କ ଅହିତ ଚାହୁଁଥିଲେ । ପୃଥିବୀରେ ପ୍ରତ୍ୟେକ ଦେଶ ଆମ୍ଭମାନଙ୍କ ମିତ୍ର ଥିଲେ । ଏବେ ଚାରିବର୍ଷ ପରେ ଆମର ସବୁ ମିତ୍ର ରାଷ୍ଟ୍ରଗଣ ଆମଠାରୁ ଦୂରେଇ ଯାଇଛନ୍ତି । ଆମର ବର୍ତ୍ତମାନ କୌଣସି ମିତ୍ର ନାହିଁ । ଆମ୍ଭେମାନେ ନିଜେ ସମସ୍ତଙ୍କଠାରୁ ଅଲଗା କରିନେଇଛୁଁ । ଆମ୍ଭେ ଏକୁଟିଆ ଆମ୍ଭମାନଙ୍କର ନୌକା ବାହିଚାଲିଛୁ । ଆମ୍ଭମାନଙ୍କୁ ମିଳିତ ରାଷ୍ଟ୍ରସଂଘରେ ଆମର କୌଣସି ପ୍ରସ୍ତାବକୁ ସମର୍ଥନ କରିବାକୁ କେହି ନାହାନ୍ତି । ଯେତେବେଳେ ମୁଁ ନିଜର ବୈଦେଶିକ ନୀତି କଥା ବିଚାର କରୁଥିଲି, ସେତେବେଳେ ମୋର ବିସମାର୍କ

ଓ ବାର୍ଣ୍ଣାର୍ଡଶାଙ୍କ କଥା ମନକୁ ଆସୁଥିଲା । ବିସମାର୍କ କହୁଥିଲେ ରାଜନୀତି, କୌଣସି ଆଦର୍ଶର ସାକ୍ଷାତ୍କାର କରିବାର ଖେଳନୁହେଁ, ଏହାଦ୍ୱାରା ଯାହା ସମ୍ଭବ, ତାହା ସାକ୍ଷାତ୍ କରିବାର ଖେଳ । କିଛିଦିନ ପରେ ବର୍ଣ୍ଣାର୍ଡଶା କହିଲେ ଉତ୍ତମ ଆଦର୍ଶହିଁ ଉତ୍ତମ, କିନ୍ତୁ ଆମ୍ଭେମାନେ ଏହା ମଧ୍ୟ ମନେ ରଖିବା ଉଚିତ୍, ଅତି ଅଧିକ ଭଲ ହେବା ବହୁତ ସମୟରେ ବିପଦର କାରଣ ହୋଇଥାଏ । ଆମ୍ଭମାନଙ୍କର ବୈଦେଶିକ ନୀତି ପୃଥିବୀର ଏହି ଦୁଇ ମହାନ ବ୍ୟକ୍ତିଙ୍କ ଦ୍ୱାରା ଦିଆଯାଇଥିବା ବୁଦ୍ଧିମତ୍ତାପୂର୍ଣ୍ଣ ଉପଦେଶର ବିରୁଦ୍ଧରେ ଯାଉଛି । ଏହି ଅସମ୍ଭବକୁ ସମ୍ଭବ କରିବା, ତଥା ଅତ୍ୟଧିକ ଭଲ ହେବାର ନୀତି,ଆମ୍ଭମାନଙ୍କ ପାଇଁ କେତେଦୂର ବିପଦପୂର୍ଣ୍ଣ ହୋଇଛି, ତାହା ଏଥିରୁହିଁ ସ୍ପଷ୍ଟ ହୋଇଯାଏ ଯେ, ଆଜି ଆମ୍ଭମାନଙ୍କର ଉତ୍ପାଦନର ଏତେ ଅଧିକ ଅଂଶ ସୈନ୍ୟମାନଙ୍କ ପାଇଁ ବ୍ୟୟ କରାଯାଉଛି, ହୁଏତ ନିଜର କୋଟି କୋଟି ଜନତା ଭୋକରେ ମରୁଥିଲେ ମଧ୍ୟ ସେମାନଙ୍କ ପାଇଁ ଖାଦ୍ୟ ଯୋଗାଇବାକୁ କଠିନ ହୋଇ ପଡୁଛି । ନିଜ ଦେଶର କଲକାରଖାନାର ଉନ୍ନତି ପାଇଁ ମୁସ୍କିଲ ହୋଇପଡୁଛି ।

ନିଜଦେଶର ଅନ୍ୟୂନ ସାଢେ ତିନି ଅରବ ଟଙ୍କାର ଆୟ ମଧ୍ୟରୁ ଏକ ଅରବ ଅଶୀକୋଟି ଟଙ୍କା ଆମେ ସେନାବାହିନୀ ପଛରେ ଖର୍ଚ୍ଚ କରିଦେଉଛୁ । ଏହା ଏତେ ଅଧିକ ଚକିତ ଖର୍ଚ୍ଚ, ଯାହାର କୌଣସି ତୁଳନା ନାହିଁ । ଏହି ଭୟାନକ ଖର୍ଚ୍ଚ ଆମ୍ଭମାନଙ୍କର ବୈଦେଶିକ ନୀତିର ପରିଣାମ ଅଟେ । ଆମ୍ଭେ ଅସ୍ତ୍ରର ପ୍ରତିଯୋଗିତାର ସମସ୍ତ ଖର୍ଚ୍ଚ ନିଜକୁ ହିଁ ବହନ କରିବାକୁ ପଡୁଛି । କାରଣ ଗୋଟିଏ ହେଲେ ମିତ୍ର ରାଷ୍ଟ୍ର ନାହିଁ ଯେଉଁ ଆକସ୍ମିକ ବିପତ୍ତି ସମୟରେ ଆମର କୌଣସି କାର୍ଯ୍ୟରେ ଆସି ପାରିବ । ମୁଁ ଭାବୁଛି ଆମର ବିଦେଶ ନୀତି କଣ ଏହିପରି ହେବା ଉଚିତ୍ ?

ଆମ୍ଭମାନଙ୍କର ପାକିସ୍ଥାନ ସହିତ ଯେଉଁ ବିବାଦ ତାହା ଆମର ବୈଦେଶିକ ନୀତିର ମଧ୍ୟ ଏକ ଅଙ୍ଗ । ମୁଁ ଅତ୍ୟଧିକ ଅସନ୍ତୁଷ୍ଟ । ପାକିସ୍ଥାନ ସହିତ ଯେଉଁ ସମ୍ବନ୍ଧ ନେଇ ଆମ୍ଭମାନଙ୍କର ବିଗିଡ଼ି ଯାଇଛି ତାହାର ମୂଳରେ ଦୁଇଟି କାରଣ ରହିଛି । ଗୋଟିଏ ତ କାଶ୍ମୀର ପ୍ରଶ୍ନ ଅନ୍ୟଟି ପୂର୍ବବଙ୍ଗରେ ନିଜ ଲୋକମାନଙ୍କର ସ୍ଥିତି । ମୋତେ ଏହା ଜଣାଯାଇଛି, ପୂର୍ବବଙ୍ଗରେ ଯେଉଁ ନିଜର ଲୋକ ଅଛନ୍ତି ତାହା ସବୁ ପତ୍ରମାନଙ୍କର ସୂଚନା ଅନୁଯାୟୀ ଆଜି ପର୍ଯ୍ୟନ୍ତ ଅସହ୍ୟ ସ୍ଥିତି ମଧ୍ୟରେ ରହି ଆସିଛି । କାଶ୍ମୀର ଅପେକ୍ଷା ସେହି ଲୋକଙ୍କ ଆଡକୁ ଅଧିକ ଧ୍ୟାନଦେବା ଦରକାର । ଏହାକୁ ଖାତିର ନକରି ଆମ୍ଭେମାନେ କାଶ୍ମୀର ପ୍ରଶ୍ନ ଉପରେ ନିଜର ସର୍ବସ୍ୱକୁ ବାଜି ରଖିଛନ୍ତି । ଏହା ହେବାଦ୍ୱାରା ମୋତେ ମନେ ହୁଏ ଆମ୍ଭେମାନେ ଏକ

ଅଯଥାର୍ଥ କଥା ଉପରେ ଝଗଡା କରି ଆସୁଅଛନ୍ତି । ମୋର ଝଗଡାର ମୂଳାଧାର ହେଉଛି, ଆମେ ଏହାକୁ ଧାର୍ଯ୍ୟ କରିବା ଉଚିତ୍ ଯେ, କାହାର ପକ୍ଷ ନ୍ୟାୟର ପକ୍ଷ ଅଟେ ଓ କେଉଁ ପକ୍ଷରେ ଅନ୍ୟାୟ । ମୋର ବୁଝିବା ଅନୁଯାୟୀ ପ୍ରଶ୍ନ, ଏହା ନହେଁ ଯେ, କାହାର କଥା ଠିକ୍ । କିନ୍ତୁ କେଉଁଟା ବାସ୍ତବରେ ଠିକ୍ ? ଯଦି ମୁଁ ଏହି ପ୍ରଶ୍ନକୁ ମୁଖ୍ୟ ପ୍ରଶ୍ନ ବୋଲି ସ୍ୱୀକାର କରିନେବି, ତାହାହେଲେ ମୋର ଧାରଣାରେ ଏହିମତ ଯେ, କାଶ୍ମୀରର ସର୍ବଶ୍ରେଷ୍ଠ ସମାଧାନ ହେଉଛି ସମଗ୍ର କାଶ୍ମୀରକୁ ଦୁଇଭାଗ କରିଦେବା । କାଶ୍ମୀରର ହିନ୍ଦୁ ଓ ବୌଦ୍ଧଅଂଶ ଭାରତକୁ ଓ ମୁସଲିମ ଅଂଶ ପାକିସ୍ଥାନକୁ ଦେଇଦିଆଯାଇ ପାରେ । ଠିକ୍ ଏହିପରି ଆମ୍ଭେମାନେ ଭାରତକୁ ନେଇକରି ଅଛନ୍ତି । ବାସ୍ତବରେ କାଶ୍ମୀରରେ ଯେଉଁ ମୁସଲମାନ ଅଂଶ ଅଛି ସେଥିରେ ଆମ୍ଭମାନଙ୍କ ପକ୍ଷରେ କିଛିହେଲେ ଦେବାକୁ ନାହିଁ । ଏହା କାଶ୍ମୀରର ମୁସଲମାନ ଓ ପାକିସ୍ଥାନର ମୁସଲମାନ ମାନଙ୍କ ମଧ୍ୟରେ ଆପୋଷରେ ଧାର୍ଯ୍ୟ କରିବାର କଥା । ସେମାନେ ଯେପରି ଚାହାଁନ୍ତି ତାହା ସେମାନେ ସ୍ଥିର କରିବା ଉଚିତ୍ । ଏହା ଯଦି ଆପଣ ଚାହାଁନ୍ତି ତାହାହେଲେ କାଶ୍ମୀରକୁ ତିନିଭାଗରେ ହିସାବ କରି ସ୍ଥିର କରାଯାଇ ପାରେ । (୧) ଯୁଦ୍ଧବିରାମ ସନ୍ଧିକ୍ଷେତ୍ର (୨) କାଶ୍ମୀରର ଉପତ୍ୟକା ଅଞ୍ଚଳ (୩) ଜାମ୍ମୁ ଓ ଲଦାଖ କ୍ଷେତ୍ର । କେବଳ କାଶ୍ମୀରର ଉପତ୍ୟକାରେ ଜନମତ ନିଆ-ଯାଇପାରେ । ଏହାର ବିରୁଦ୍ଧରେ ଯେଉଁ ସମସ୍ତ ମତାମତ, ଗଣନା ଦ୍ୱାରା ଧାର୍ଯ୍ୟ କରିବାର କଥା କହୁଛି, ମୋର ଭୟହୁଏ, କାଶ୍ମୀରର ହିନ୍ଦୁ ତଥା ବୌଦ୍ଧ ନିଜ ଇଚ୍ଛା ବିରୁଦ୍ଧରେ କେବେହେଲେ ପାକିସ୍ଥାନରେ ମିଳିତ ହେବାକୁ ଚାହିଁବେ ନାହିଁ । ଏବଂ ଯେଉଁ ସମସ୍ୟା ବର୍ତ୍ତମାନ ଆମ ପାଖରେ ପୂର୍ବବଙ୍ଗକୁ ନେଇ ଉପସ୍ଥିତ, ଏହି ସମସ୍ୟା କାଶ୍ମୀରକୁ ନେଇ ମଧ୍ୟ ସୃଷ୍ଟି ହୋଇଛି ।

## ତ୍ୟାଗପତ୍ରର ଚତୁର୍ଥ କାରଣ

ବର୍ତ୍ତମାନ ମୁଁ ମୋର ୪ର୍ଥ କଥା ପ୍ରତି ଆପଣଙ୍କର ଧ୍ୟାନ ଆକର୍ଷଣ କରିବାକୁ ଚାହୁଁଛି । ଯାହାକି ମୋର ତ୍ୟାଗପତ୍ର ଦେବା ସହିତ ସମ୍ପୃକ୍ତ ଅଟେ । ମନ୍ତ୍ରୀମଣ୍ଡଳର କାର୍ଯ୍ୟ ସେହି ସିଦ୍ଧାନ୍ତକୁ ନେଇ ପରିଚାଳିତ ହୁଏ, ଯାହା ସେ ସମ୍ପର୍କୀୟ ଏକ କମିଟି ଦ୍ୱାରା ଧାର୍ଯ୍ୟ ହୋଇଥାଏ । କେବଳ ରେଜଷ୍ଟ୍ରି ଭୁକ୍ତ କରିବା ବା ରେକର୍ଡ କରିବା କାମ ବାକି ରହିଥାଏ । ଏହି କାରଣରୁ ମନ୍ତ୍ରୀମଣ୍ଡଳ, ସମିତି ମାଧ୍ୟମରେ ହିଁ କାର୍ଯ୍ୟ କରିଥାଏ । ଗୋଟିଏ ସୁରକ୍ଷା ସମିତି ଅଛି ଓ ଗୋଟିଏ ବିଦେଶ ସମିତି ଅଛି । ସୁରକ୍ଷା ସମ୍ବନ୍ଧରେ ଯେତେଗୁଡ଼ିଏ ମହତ୍ୱପୂର୍ଣ୍ଣ କଥା ଅଛି, ତାହା ସୁରକ୍ଷା ସମିତି ଦ୍ୱାରା ସ୍ଥିର କରିହୁଏ । ବିଦେଶ ସମ୍ବନ୍ଧରେ ଯେତେଗୁଡ଼ିଏ ମହତ୍ୱପୂର୍ଣ୍ଣ କଥା ଅଛି, ତାହା ବିଦେଶ ସମିତି ଦ୍ୱାରା ସ୍ଥିର

କରାଯାଏ । ମନ୍ତ୍ରୀମଣ୍ଡଳର ଗୋଟିଏ ମାତ୍ର ସଦସ୍ୟ ଏହି କମିଟିର ସଦସ୍ୟ ହୋଇଥାନ୍ତି । ମୁଁ ଏ ଦୁଇଟି ମଧ୍ୟରୁ କୌଣସି ଗୋଟିକର ସଦସ୍ୟ ନୁହେଁ । କମିଟି ଗୁଡ଼ିକ ଏକ ଲୌହ ପରଦାର ଅନ୍ତରାଳରେ କାର୍ଯ୍ୟ କରେ । ଯେଉଁ ଲୋକ ଏହି କମିଟିମାନଙ୍କରେ ସଦସ୍ୟ ନୁହଁନ୍ତି, ସେମାନଙ୍କୁ, ଏମାନଙ୍କର ସିଦ୍ଧାନ୍ତ ପାଇଁ ସାମୋହିକ ଭାବେ ଦାୟୀ ହେବାକୁ ପଡ଼େ, ଯାହା କରିବାରେ ତାଙ୍କର କୌଣସି ହାତ ନଥାଏ । ଏହା ଏକ ଅସହନୀୟ ପରିସ୍ଥିତି ।

**ତ୍ୟାଗପତ୍ରର ପଞ୍ଚମ କାରଣ :—**

ବର୍ତ୍ତମାନ ମୁଁ ସେହି କଥାର ଆଲୋଚନା କରିବି, ଯେଉଁଥିପାଇଁ ମୋତେ ଶେଷୋକ୍ତ ଭାବେ ତ୍ୟାଗପତ୍ର ଦେବାର ନିଷ୍ପତ୍ତି ନେଇ ଧାର୍ଯ୍ୟ କରିବାକୁ ପଡ଼ିଲା ଓ ମୁଁ ସ୍ଥିର ନିଶ୍ଚିତ ହେଲି । ଏହା ହେଉଛି ହିନ୍ଦୁ କୋଡ୍ ବିଲ ପ୍ରତି କରାଯାଇଥିବା ବ୍ୟବହାର । ୧୧ ଏପ୍ରିଲ ୧୯୪୭ରେ ସର୍ବପ୍ରଥମେ ଏହାକୁ ଏକ ବିଲ୍ ଆକାରରେ ଏହି ଲୋକସଭାରେ ଉପସ୍ଥାପିତ କରାଯାଇଥିଲା । ଏହି ଦୀର୍ଘ ଚାରିବର୍ଷ ପର୍ଯ୍ୟନ୍ତ ତାକୁ ଜୀବିତ ଅବସ୍ଥାରେ ରଖି ରଖି ଶେଷରେ ଜୀବନରୁ ମାରି ଦିଆଗଲା । ଏହାର ମୃତ୍ୟୁ ପାଇଁ କେହି ବନ୍ଧୁଏ ହେଲେ ଲୁହ ଗଡ଼ାଇଲେ ନାହିଁ । ଏହାର ମାତ୍ର ୦ଟି ଧାରା ପାସ କରାଯାଇ ପାରିଥିଲା । ଯେତେଦିନ ଏହି ବିଲ୍, ଲୋକସଭାର ସମ୍ମୁଖରେ ଉପସ୍ଥିତ ଥିଲା, ସେତେଦିନ ପର୍ଯ୍ୟନ୍ତ ଏହା ଯନ୍ତ୍ରଣା ଖାଇ ଖାଇ ବଞ୍ଚିରହିଥିଲା । ପୂରା ଗୋଟିଏ ବର୍ଷ ପର୍ଯ୍ୟନ୍ତ ସରକାର ଏହି କଥାର ଆବଶ୍ୟକତା ହୃଦୟଙ୍ଗମ କଲେନାହିଁ । ଏଥିପାଇଁ କୌଣସି ସିଲେକ୍ଟ କମିଟି ମଧ୍ୟ ନିଯୁକ୍ତ କରାଗଲାନାହିଁ । ୯ ଏପ୍ରିଲ ୧୯୪୮ରେ ଗୋଟିଏ ସିଲେକ୍ଟ କମିଟି ଗଠନ କରାଗଲା । ୧୨ ଅଗଷ୍ଟ ୧୯୪୮କୁ ଲୋକସଭା ସମ୍ମୁଖରେ ରିପୋର୍ଟ ପଠାଗଲା । ୩୧ ଅଗଷ୍ଟ ୧୯୪୮ରେ ମୁଁ ସେହି ରିପୋର୍ଟ ଉପରେ ବିଚାର କରିବାକୁ ପ୍ରସ୍ତାବ ଉପସ୍ଥାପନ କଲି । କେବଳ ପ୍ରସ୍ତାବ କରିଥିବା ଯୋଗୁଁ ବିଲ୍ଟିକୁ କାର୍ଯ୍ୟକ୍ରମରେ ସାମିଲ କରାଗଲା । ୧୯୪୯ ଫେବ୍ରୁଆରୀର ଶେଷ ନ ହେବା ଯାଏ ସେହି ପ୍ରସ୍ତାବ ଉପରେ ବିଚାର କରିବାର ଅନୁମତି ଦିଆଗଲା ନାହିଁ । ଯେତେବେଳେ ଅନୁମତି ଦିଆଗଲା, ସେତେବେଳେ ମଧ୍ୟ ଏହା ଉପରେ ଲଗାଲଗି ଆଲୋଚନା କରିବାକୁ ଦିଆଗଲା ନାହିଁ । ଏହି ଆଲୋଚନା ୧୦ମାସ ପର୍ଯ୍ୟନ୍ତ ଚାଲିଲା । ଫେବୃଆରୀରେ ୪ଦିନ, ମାର୍ଚ୍ଚରେ ୧ଦିନ, ଏପ୍ରିଲରେ ୨ଦିନ ଓ ଡିସେମ୍ବର ୧ଦିନ । ୧୯୪୯ ଡିସେମ୍ବରକୁ ଲୋକସଭାରେ ମୋର ଏହି ପ୍ରସ୍ତାବକୁ ସ୍ୱୀକାର କରାଗଲା ଯେ, ଯେଉଁ ରୂପରେ ବିଲ୍ଟି ସିଲେକ୍ଟ କମିଟି ଦ୍ୱାରା ରିପୋର୍ଟ କରାଗଲା ସେହି ରୂପରେ ତାହା ଉପରେ ବିଚାର କରାଯିବ ।

୧୯୫୦ର ସାରାବର୍ଷ ମଧ୍ୟରେ ଏହି ବିଲ୍ ଟିକୁ କୌଣସି ସମୟ ଦିଆଗଲା ନାହିଁ । ଏବେ ଅଲଗା ଥର, ୫ ଫେବ୍ରୁୟାରୀ ୧୯୫୧କୁ ବିଲ୍ ପୁଣି ଭବନର ଆଗକୁ ଆସିଲା । ଯେତେବେଳେ ଏହାର ଗୋଟିଏ ଗୋଟିଏ ଧାରା ଉପରେ ପୃଥକ ପୃଥକ ଆଲୋଚନା ବିଚାର କରାଗଲା, ସେତେବେଳେ ମାତ୍ର ୫, ୬, ୭ ଫେବ୍ରୁୟାରୀ ତିନିଦିନ, ବିଲ୍ ପାଇଁ ଦିଆଗଲା ; ଏହା ବାଦ୍ ତ ପୁଣି ସେହି ଅନ୍ଧକାର ମଧ୍ୟରେ ପଡିବା ପାଇଁ ପକାଇ ଦିଆଗଲା ।

କେବଳ ଏହି ପାର୍ଲିଆମେଣ୍ଟର ଏହା ଶେଷ ବୈଠକ ଥିଲା । ଏଣୁ ଏହି କଥା ଉପରେ ବିଚାର ହେଲା ଯେ "ହିନ୍ଦୁ କୋଡ୍ ବିଲ୍ ଉପରେ ଏହି ପାର୍ଲିଆମେଣ୍ଟର ଶେଷରେ ପୂର୍ବର ସଂଖ୍ୟାନୁସଂଖ ଆଲୋଚନାକୁ ବିଚାରକୁ ନେଇ ସେଥିରେ ଆଇନର ସ୍ୱରୂପ ଦେଇଦେବାକୁ ହେବ । କିମ୍ବା ତାହାକୁ ଆଗାମୀ ନୂଆ ପାର୍ଲିଆମେଣ୍ଟକୁ ସମର୍ପଣ କରି ଦିଆଯିବ । ମନ୍ତ୍ରୀମଣ୍ଡଳ ଦ୍ୱାରା ଗୋଟିଏ ମତରେ ସ୍ୱୀକାର କରାଗଲା ଯେ, ଏହାକୁ ଏହି ପାର୍ଲିଆମେଣ୍ଟ ଦ୍ୱାରା ମେଣ୍ଟାଇ ଦିଆଯିବା ଠିକ୍ ହେବ । ଏଣୁ ବିଲ୍ ପୁଣି ୧୭ ସେପ୍ଟେମ୍ବର ୧୯୫୧ କାର୍ଯ୍ୟକ୍ରମରେ ଦିଆଗଲା ଓ ଏହାର ଧାରାଗୁଡ଼ିକ ଉପରେ ଗୋଟି ଗୋଟି କରି ବିଚାର କରିବା ଆରମ୍ଭ ହେଲା । ଯେତେବେଳେ ଆଲୋଚନା ଚାଲୁଥିଲା, ପ୍ରଧାନମନ୍ତ୍ରୀ ଏକ ନୂତନ ପ୍ରସ୍ତାବ ଉପସ୍ଥାପନ କଲେ । ସେ କହିଲେ ଏଥିରେ ଏକ ସମ୍ଭାବନା ଅଛି ଯେ ଯେତିକି ସମୟ ଆମ ହାତରେ ଅଛି ସେହି ସମୟ ମଧ୍ୟରେ ଆମେ ପୁରାବିଲ୍ ଟିକୁ ପାସ୍ କରିପାରିବା ନାହିଁ । ଏଣୁ ସମ୍ପୂର୍ଣ୍ଣ ବିଲ୍ ଟି ବେକାର ହୋଇଯିବାରୁ ରକ୍ଷା କରିବା ପାଇଁ ଏହା ଠିକ୍ ହେବ, ଯେ କମରେ ଏହାର ଗୋଟିଏ ଅଂଶକୁ ଆଇନର ରୂପ ଦିଆଯାଇ ପାରିବ । ଏକଥା ଶୁଣି ମୋର ବହୁତ ଦୁଃଖ ହେଲା କାରଣ ଯେତେବେଳେ ଏହି ନୀତି ଅନୁଯାୟୀ କରାଗଲା, ସେତେବେଳେ ସର୍ବନାଶ ହେବାର ଦେଖାଯାଏ ସେତେବେଳେ ପଣ୍ଡିତମାନେ ଅଧା ଛାଡ଼ି ଦିଅନ୍ତି । ମୁଁ ବାଧ୍ୟ ହୋଇ ଏକମତ ହୋଇଗଲି । ପ୍ରଧାନମନ୍ତ୍ରୀ ବୁଝାଇଦେଲେ ଯେ ଆମ୍ଭମାନଙ୍କ ଦ୍ୱାରା ବିଲ୍ ର ବିବାହ ଓ ବିଚ୍ଛେଦ ଅଂଶଟିକୁ ଆଇନର ରୂପ ଦେଇ ଦିଆଯାଉ । ବର୍ତ୍ତମାନ ବିଲ୍ ଉପରେ ଏହି କାଟଛାଣ୍ଟ-ଅର୍ଥାତ୍ ଧାରା ଉପରେହିଁ ଆଲୋଚନା ଚାଲିଲା । ପୁରା ଉନ୍ନତ ବିଲ୍ ଉପରେ ବିଚାର ହୋଇଥିଲା । ପ୍ରଧାନମନ୍ତ୍ରୀ ଆଉଥରେ ଗୋଟିଏ ପ୍ରସ୍ତାବ ଦେଲେ । ଏଥର ତାଙ୍କର ପ୍ରସ୍ତାବ ଥିଲା ଯେ ସମ୍ପୂର୍ଣ୍ଣରୂପେ ବିଲ୍ କୁ ଛାଡ଼ି ଦିଆଯାଉ, ଏପରିକି ବିବାହ ଓ ବିଚ୍ଛେଦ ଥିବା ଅଂଶକୁ ମଧ୍ୟ । ଏହା ମୋ ପାଇଁ ବଜ୍ରପାତ ପରି ହେଲା । ମୁଁ ଦୁଃଖରେ ମ୍ରିୟମାଣ ହୋଇଗଲି ଓ କିଛି କହିପାରିଲି ନାହିଁ । ମୁଁ ଏହାକୁ ମାନିନେବାକୁ ପ୍ରସ୍ତୁତ ନଥିଲି । ସମୟାଭାବ ଯୋଗୁଁ ଏହି କାଟଛାଣ୍ଟ ବିଲ୍ କୁ ମଧ୍ୟ

ବିଚ୍ଛେଦ କରି ଦିଆଗଲା । ମୁଁ ବୁଝିଲି ଯେ ଏହାକୁ ଏହି କାରଣରୁ ସମାପ୍ତ କରି ଦିଆଗଲା, କାରଣ ମନ୍ତ୍ରୀମଣ୍ଡଳର ଅନ୍ୟ ଅଧିକ ପ୍ରଭାବଶାଳୀ ଶକ୍ତିଶାଳୀ ସଦସ୍ୟ ନିଜ ନିଜ ବିଲ୍ ପାଇଁ ପ୍ରାଥମିକତା ଚାହୁଁ ଥିଲେ । ମୁଁ ଏହା ବୁଝିପାରିଲି ନାହିଁ ଯେ, ବନାରସ ବିଶ୍ୱବିଦ୍ୟାଳୟ ତଥା ଅଲିଗଡ ବିଶ୍ୱବିଦ୍ୟାଳୟର ବିଲ୍‌କୁ ତଥା ପ୍ରେସ୍ ବିଲ୍‌କୁ ହିନ୍ଦୁ କୋଡ୍ ବିଲ୍ ଉପରେ କପରି ଅଗ୍ରାଧିକାର ଦିଆଗଲା ? ଏପରି କଥା ନଥିଲା ଯେ ବନାରସ ବିଶ୍ୱବିଦ୍ୟାଳୟ ବା ଆଲିଗଡ଼ ବିଶ୍ୱବିଦ୍ୟାଳୟର ଅନୁଶାସନ ପାଇଁ ଆଇନ ବହିରେ କୌଣସି ଆଇନ ନଥିଲା । ଏପରି କଥା ନଥିଲା ଯେ, ଯଦି ପାର୍ଲିଆମେଣ୍ଟର ଏହି ବୈଠକରେ ତାହା ବିଷୟରେ କୌଣସି ଆଇନ ପାସ୍ ନ ହୁଏ ତାହାହେଲେ ଏହି ଦୁଇ ବିଶ୍ୱବିଦ୍ୟାଳୟ ଧୂଳିରେ ମିଶିଯିବ ? ପ୍ରେସ୍ ବିଲ୍‌ର ମଧ୍ୟ ତତ୍କାଳୀନ ଆବଶ୍ୟକତା ନଥିଲା । ଆଇନ ବହିରେ ପ୍ରଥମେ ଗୋଟିଏ ଆଇନ ବିଦ୍ୟମାନ ଅଛି । ପ୍ରେସ୍ ବିଲ୍ ମଧ୍ୟ ବର୍ତ୍ତମାନ ପାଇଁ କିଛି ସମୟ ପ୍ରତୀକ୍ଷା କରିପାରେ । ମୋ ଉପରେ ଏପରି ପ୍ରଭାବ ପଡ଼ିଲା, ମୁଁ ହୃଦୟଙ୍ଗମ କଲି, ଯଦିଓ ପ୍ରଧାନମନ୍ତ୍ରୀ ପ୍ରକୃତରେ ଠିକ୍ ଅଟନ୍ତି, ମାତ୍ର ହିନ୍ଦୁ କୋଡ୍ ବିଲ୍‌କୁ ପାସ୍ କରିବା ପାଇଁ ଆବଶ୍ୟକ ଆକାଂକ୍ଷା ଓ ତାହାପାଇଁ ଦୃଢ଼ ନିଶ୍ଚିତ କରିବାର ଶକ୍ତି ତାଙ୍କର ନଥିଲା । ଏହି ବିଲ୍‌କୁ ନେଇ ମୋତେ ଅଧିକରୁ ଅଧିକ ମାନସିକ ଯାତନା ସହିବାକୁ ପଡିଲା । ପାର୍ଟି ମେସିନ ଦ୍ୱାରା ମୋତେ ଯେଉଁ ସହଯୋଗ ମିଳିଥିଲା ତାହାର ସୁଯୋଗ ଦିଆଗଲା ନାହିଁ । ପ୍ରଧାନମନ୍ତ୍ରୀ ପାର୍ଟିର ସବୁ ସଦସ୍ୟଙ୍କୁ ନିଜ ନିଜ ଇଚ୍ଛା ଅନୁଯାୟୀ ମତ ପ୍ରଦାନ କରିବାର ସ୍ୱତନ୍ତ୍ରତା ଦେଇଦେଲେ, ଯାହା ପାର୍ଟିର ଇତିହାସରେ ଏକ ଅସାଧାରଣ କଥା ଥିଲା । ମୁଁ ଏହାର ଚିନ୍ତା କଲିନାହିଁ, ମାତ୍ର ମୋର ଦୁଇଟି କଥାରେ ଆଶା ଥିଲା ମୁଁ ଚାହିଁଥିଲି ପାର୍ଟି ତରଫରୁ ଲମ୍ବା ଲମ୍ବା ଭାଷଣ ଉପରେ ପ୍ରତିବନ୍ଧକ ଲଗାଇ ଦିଆଯିବ । ଯେପାର୍ଟି ମେସିନକୁ ଚଳାଉଛନ୍ତି ସେ ଜଣେ ନିଶ୍ଚିତ ଭାବରେ ମୁଖ୍ୟବ୍ୟକ୍ତି ଅଟନ୍ତି । ଏହି କଥା ଉପରେ ସେତେବେଳେ ବୁଝିଲି ଯେ, ବହୁତ ଆଲୋଚନା ହୋଇଯାଇଛି, ସେ ଆଦେଶ ଦେଲେ ଯେ ଏହି ଆଲୋଚନାକୁ ବନ୍ଦ କରିଦିଆଯାଉ । ଯଦି ଭାଷଣ ସମ୍ବନ୍ଧରେ ଠିକ୍ ସମୟରେ ଭାଷଣ ଉପରେ ପ୍ରତିବନ୍ଧକ ଲଗାଯାଇ ପାରିଥାନ୍ତା, ତାହା ଅନ୍ୟଏକ ରୂପ ନେଇଥାନ୍ତା । ଯେହେତୁ ମତଦାନ ସମ୍ବନ୍ଧରେ ସମସ୍ତଙ୍କୁ ସ୍ୱତନ୍ତ୍ରତା ଦେଇଦିଆ ଯାଇଛି, ସେତେବେଳେ ଭାଷଣଗୁଡ଼ିକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ସମାପ୍ତ କରିବାର ପ୍ରତିବନ୍ଧକ ଲଗୁକରିବାରେ କାହାର କୌଣସି ଆପତ୍ତି ହୋଇପାରି ନଥାନ୍ତା କିନ୍ତୁ ଏହି ପ୍ରତିବନ୍ଧ ଲଗା ଗଲା ନାହିଁ । ପାର୍ଲିଆମେଣ୍ଟାରି ବିଭାଗ ମନ୍ତ୍ରୀ ଯେ ହିନ୍ଦୁ କୋଡ୍ ବିଲ୍ ସମ୍ବନ୍ଧରେ ପାର୍ଟିର ମୁଖ୍ୟ ଉପସ୍ଥାପକ ତାଙ୍କର ବ୍ୟବହାର ଅସାଧାରଣ ଦେଖାଗଲା । ସେ ହିନ୍ଦୁ କୋଡ୍ ବିଲ୍‌ର ପ୍ରବଳତର ଶତ୍ରୁ ହୋଇ ଠିଆହେଲେ । ସେ "ଚର୍ଚ୍ଚା ବନ୍ଦକର"

ଟୋଲ ପ୍ରସ୍ତାବଦେଇ ମୋତେ ଉତ୍ତେଳମ୍ବାଇ ସହାୟତା କଲେ ନାହିଁ । ଘଣ୍ଟାଘଣ୍ଟା ଧରି ଦିନପରେ ଦିନ ବିଲର ଗୋଟିଏ ଗୋଟିଏ ଧାରା ଉପରେ ଚାଲିରୁ ତାଳ ବାହାର କରାଯାଉଥିଲା । କିନ୍ତୁ ପାର୍ଟିର ମୁଖ୍ୟ ପ୍ରେରକ ଯାହାର ଏହା କର୍ତ୍ତବ୍ୟ ଯେ, ସରକାରଙ୍କର ସମର୍ଥକଙ୍କୁ ବଞ୍ଚାଇବା ଓ ସରକାରୀ କାର୍ଯ୍ୟକୁ ଅଗ୍ରସର କରାଇବା ପାଇଁ ଚେଷ୍ଟା କରିବା, ସେ ହିନ୍ଦୁ କୋଡ ବିଲ୍ ଗୃହରେ ଉପସ୍ଥାପନ କଲାସମୟରେ ଅନୁପସ୍ଥିତ ରହିଲେ । ମୁଁ ଆଜିପର୍ଯ୍ୟନ୍ତ ଦେଖିନାହିଁ ଯେ, ମୁଖ୍ୟ ପ୍ରେରକ ଦଳର ପ୍ରଧାନମନ୍ତ୍ରୀଙ୍କ ପ୍ରତି ଏତେ କମ ଅନୁରକ୍ତ ହୋଇପାରନ୍ତି ଓ ଜଣେ ପ୍ରଧାନମନ୍ତ୍ରୀ ନିଜର ଏକ ଅନାଜ୍ଞାକାରୀ ମନ୍ତ୍ରୀଙ୍କ ପ୍ରତି ଏତେ ଅଧିକ ଅନୁରକ୍ତ ହୋଇପାରନ୍ତି । ଏହି ଅବୈଧାନିକ ବ୍ୟବହାରର କାରଣ ମୁଖ୍ୟ ପ୍ରେରକ ପ୍ରଧାନମନ୍ତ୍ରୀଙ୍କର ସ୍ନେହ ଭାଜନ ଅଟନ୍ତି । ଏହି ଅନ୍ତରଙ୍ଗ ଘନିଷ୍ଠତା କାରଣରୁ ପାର୍ଟି ସଙ୍ଗଠନରେ ତାହାଙ୍କୁ ବାଦ ଦିଆଗଲା । ଏପରିସ୍ଥିତିରେ କୌଣସିହେଲେ କାମ କରିପାରିବା ଅସମ୍ଭବ ।

ଏହା କୁହାଗଲା ଯେ, ବିରୋଧିପକ୍ଷ ପ୍ରବଳ ହେବାଯୋଗୁ "ବିଲ୍"ଟିକୁ ଛାଡ଼ି ଦେବାକୁ ହେଲା । ବିରୋଧିପକ୍ଷ କେତେ ପ୍ରବଳଥିଲା ? ଏହି ବିଲ୍ ଉପରେ ପାର୍ଟିର ବହୁତ କିଛି ବିଚାର ହୋଇଥିଲା ଏବଂ ବିରୋଧିମାନେ ଏହା ଉପରେ ମତ ଗଣନା ମଧ୍ୟ କରିଥିଲେ । କିନ୍ତୁ ପ୍ରତ୍ୟେକଥର ବିରୋଧିମାନଙ୍କର ମୁହଁ ବନ୍ଦହୋଇ ଯାଇଥିଲା । ପଛଥର ଯେତେବେଳେ ପାର୍ଟି ବୈଠକରେ ଏହି ବିଲ୍ ଉପରେ ଆଲୋଚନା ହେଲା; ସେତେବେଳେ ୧୨୦ ସଦସ୍ୟଙ୍କ ମଧ୍ୟରୁ କେବଳ ୨୦ଜଣ ଏହାର ବିରୋଧୀଥିଲେ । ଯେତେବେଳେ ପାର୍ଟି ମଧ୍ୟରେ ଏହାରେ ଖୋଲାଖୋଲି ଆଲୋଚନା ହେଲା, ସେତେବେଳେ ୩୦ଘଣ୍ଟା ମଧ୍ୟରେ ଏହାର ୦୪ଟି ଧାରା ପାସ କରାଯାଇ ସାରିଥିଲା । ଏଥିରୁ ଏହା ସ୍ପଷ୍ଟ ହୋଇ ଯାଇଥିଲା ଯେ ପାର୍ଟି ମଧ୍ୟରେ ବିଲ୍‌ପାଇଁ କେତେଦୂର ବିରୋଧଥିଲା । ସ୍ୱୟଂ ଗୃହରେ ମଧ୍ୟ ବିଲ୍‌ର ଅନ୍ୟଧାରା ତଥା ୪ର୍ଥ ଧାରା ଉପରେ ମତ ଗଣନା ହୋଇଥିଲା । ପ୍ରତ୍ୟେକଥର ଏକ ସଂଖ୍ୟା ଗରିଷ୍ଠ ମତରେ ବିଲ୍‌ର ସମର୍ଥନ କରାଯାଇଥିଲା । ଏପରିକି ୪ର୍ଥ ଧାରା, ଯାହା କି ହିନ୍ଦୁ କୋଡ ବିଲ୍‌ର ଆତ୍ମା ଅଟେ ତାକୁ ମଧ୍ୟ ସମର୍ଥନ କରାଯାଇଥିଲା ।

ଏହି କାରଣରୁ 'ସମୟାଭାବ' କାରଣ ଯୋଗୁ ବିଲ୍‌କୁ ଛାଡ଼ି ଦେବାକୁ ପଡ଼ିଲା ବୋଲି ପ୍ରଧାନମନ୍ତ୍ରୀଙ୍କର ଯେଉଁ ଉକ୍ତି ତାହା ମୋ ପକ୍ଷରେ ଅଗ୍ରହଣୀୟ ହୋଇପଡ଼ିଲା ।

## ବହୁତ ଓ ଡେରି ହେବାର କାରଣ

ମୁଁ ନିଜର ତ୍ୟାଗପତ୍ର ସମ୍ବନ୍ଧରେ ପ୍ରତ୍ୟେକ କଥାକୁ ଏଭଳି ବିସ୍ତୃତଭାବେ କହିବାର କାରଣ ହେଉଛି, କେତେକ ପ୍ରଚାର କଲେ ଯେ, ମୋର ସ୍ୱାସ୍ଥ୍ୟ ଠିକ୍

ନିରହୁ ଥିବାଯୋଗୁ ତ୍ୟାଗପତ୍ର ଦେଇଅଛୁ । ଜଣାଇ ଦେବାକୁ ଚାହେଁ ଯେ, ମୁଁ ଏପରି ଲୋକ ନୁହେଁ ଯେକି ନିଜର ସ୍ୱାସ୍ଥ୍ୟର ଚିନ୍ତାରେ ନିଜର କର୍ତ୍ତବ୍ୟକୁ ଭୁଲିଯିବ ।

କୁହାଯାଇ ପାରେ ମୁଁ ତ୍ୟାଗପତ୍ର ଦେବାପାଇଁ ଯେଉଁ ସମୟ ବାଛିଲି ତାହା ଠିକ ସମୟ ନୁହେଁ । ଯଦି ମୁଁ ସରକାରଙ୍କ ବୈଦେଶିକ ନୀତି ଓ ପଛୁଆ ଜାତି; ତଥା ଅଛୁଆଁ ଜାତିମାନଙ୍କ ପ୍ରତି, ସେମାନଙ୍କର ଯାହା ବ୍ୟବହାର ସେଥିରେ ମୁଁ ଅସନ୍ତୁଷ୍ଟ ଥିଲିବୋଲି ବସ୍ତୁରୁ ଥାନ୍ତି, ତାହାହେଲେ ମୁଁ ଏହା ପୂର୍ବରୁ ମଧ୍ୟ ତ୍ୟାଗପତ୍ର ଦେଇ ପାରିଥାନ୍ତି । ଏହି ଆକ୍ଷେପ କେତେକ ପରିମାଣରେ ସତ୍ୟହେଲାପରି ପ୍ରତୀତ ହୋଇପାରେ । କିନ୍ତୁ ଏପର୍ଯ୍ୟନ୍ତ ଚୁକ୍ତି ରହିବାର କିଛି ସ୍ୱତନ୍ତ୍ର କାରଣ ଥିଲା । ପ୍ରଥମ କାରଣ ହେଉଛି ଯେତେବେଳେ ମୁଁ ମନ୍ତ୍ରିମଣ୍ଡଳର ସଦସ୍ୟ ହେଲି, ସେତେବେଳେ ଭାରତୀୟ ସମ୍ବିଧାନ ତିଆରି କରିବାରେ ଅଧିକଭାବେ ବ୍ୟସ୍ତଥିଲି । ୨୬ ଜାନୁୟାରୀ ୧୯୫୦ ପର୍ଯ୍ୟନ୍ତ ମୋର ସମସ୍ତ ଧ୍ୟାନ ଏହିଥିରେ ନିବଦ୍ଧଥିଲା । ତାହାପରେ ମୋତେ ଜନତାର ପ୍ରତିନିଧିତ୍ୱ ବିଲପାଇଁ ବ୍ୟସ୍ତ ରହିବାକୁ ପଡ଼ିଲା । ଏହାପରେ ଦେଶର ବୈଦେଶିକ ସମସ୍ୟା ଆଡ଼କୁ ଧ୍ୟାନ ଦେବାପାଇଁ ମୋ ପାଖରେ ଖୁବ୍ ଅଳ୍ପ ସମୟ ଥିଲା । ମୋ ପକ୍ଷରେ ଏହା ଉଚିତ୍ ମନେ ହେଲାନାହିଁ ଯେ, ଏହି କାମକୁ ଅସମ୍ପୂର୍ଣ୍ଣ ଭାବେ ଛାଡ଼ି ଚାଲିଯିବି ।

ଦ୍ୱିତୀୟ କାରଣ ହେଲା, ମୁଁ ହିନ୍ଦୁ କୋଡ ବିଲ୍‌ର ହିତପାଇଁ ମନ୍ତ୍ରିମଣ୍ଡଳର ସଦସ୍ୟ ହୋଇ ରହିବାକୁ ଆବଶ୍ୟକ ମନେ କରିଥିଲି । କେତେକ ଲୋକ କହି-ପାରନ୍ତି, ହିନ୍ଦୁ କୋର୍ଡ ବିଲ୍‌ର ଖିଆଲରେ ମନ୍ତ୍ରିମଣ୍ଡଳର ସଦସ୍ୟ ହୋଇ ରହିବା ମୋ ପକ୍ଷରେ ଉଚିତ୍ ନଥିଲା । ମୋର ଦୃଷ୍ଟି ଭିନ୍ନ ଥିଲା । ବିଧାନସଭାଗୁଡ଼ିକ ଯେଉଁ "ହିନ୍ଦୁ କୋର୍ଡ ବିଲ୍" ଉପରେ ବିଚାର କରିବା ପାଇଁ ସ୍ଥିର କରିଥିଲେ, ତାହା ଏହି ଦେଶର ବିଧାନସଭା ଦ୍ୱାରା ବିଚାର କରିବା ବାଲା ହିନ୍ଦୁ "ସାମାଜିକ ସୁଧାର" ସମ୍ବନ୍ଧୀୟ ସବୁଠାରୁ ବଡ଼ ଆଇନ ଥିଲା । ଆଜିପର୍ଯ୍ୟନ୍ତ ବିଧାନସଭାମାନଙ୍କରେ ଏଭଳି ମହତ୍ତ୍ୱପୂର୍ଣ୍ଣ ଆଇନ ଉପରେ ଏହା ପୂର୍ବରୁ ବିଚାର କରାଯାଇ ନଥିଲା । ଏବଂ ଭବିଷ୍ୟତରେ ଏହାଠାରୁ ଏପରି କୌଣସି ଆଇନ ଉପରେ ବିଚାର କରାଯିବାର ସମ୍ଭାବନା ମଧ୍ୟ ନଥିଲା । ଶ୍ରେଣୀ ଓ ଶ୍ରେଣୀ ମଧ୍ୟରେ ଚାଲିଆସୁଥିବା ଅସମାନତା ତଥା ସ୍ତ୍ରୀ ପୁରୁଷମାନଙ୍କ ମଧ୍ୟରେ ଥିବା ଅସମାନତା ଉପରେ ଯେଉଁ ହିନ୍ଦୁ ସମାଜର ସ୍ଥିତି-ତାହା ଉପରେ ହସ୍ତକ୍ଷେପ କରି ଆର୍ଥିକ ସମସ୍ୟାକୁ ସୁଧାରିବା ପାଇଁ ଆଇନ ପାସ୍ କରିବାକୁ ଯିବା, ନିଜର ସମ୍ବିଧାନର ଗୋଟିଏ ସାନ୍ତ୍ର ତିଆରି କରିବାପରି ଅଟେ ।

ଏତାଦୃଶ ପ୍ରସ୍ତାବକୁ ଗୋଟିଏ ଗୋବର ଗଦା ଉପରେ ସୌଧ ନିର୍ମାଣ କରିବାର ପ୍ରସ୍ତାବ ବୋଲି କୁହାଯାଉଥିଲା । ମୁଁ ହିନ୍ଦୁ କୋର୍ଡ ବିଲ୍‌କୁ ଏପରି ମହତ୍ତ୍ୱପୂର୍ଣ୍ଣ ବୋଲି ଭାବିଆସୁଥିଲି ଯେ, ନିଜର ସମସ୍ତ ପ୍ରକାର ମତଭେଦ ସତ୍ତ୍ୱେ ଏହି ବିଲ୍‌ର ହିତପାଇଁ ମନ୍ତ୍ରିମଣ୍ଡଳରେ ରହିଥିଲି । ଏଥିପାଇଁ ଯଦି ମୋର କିଛି ଅଧପତନ ହୋଇଥାଏ ତାହାହେଲେ ତା'ର ମୂଳ କାରଣ ଏହି "ବିଲ୍" ପାଇଁ ଉତ୍କୃଷ୍ଟ ହେବା ଦ୍ୱାରା ହିଁ ହୋଇଥିଲା । ମୁଁ କିଣ ଏହି ଆଶା କରିପାରି ନଥାନ୍ତି ଯେ ଏହି କାର୍ଯ୍ୟରେ ଲୋକମାନେ ଯେଉଁଭଳି ବିଭିନ୍ନ ପ୍ରକାରର ଯୁକ୍ତି ବାଢ଼ିଥିଲେ, ସେହି ଯୁକ୍ତିଗୁଡ଼ିକରେ ମୁଁ ସଫଳତା ଲାଭ କରି ପାରିବି । ଏହି ବିଷୟରେ ମୁଁ ନିଜର ପ୍ରଧାନମନ୍ତ୍ରୀଙ୍କର ତିନୋଟି ଏହି ପ୍ରକାର ବକ୍ତବ୍ୟ ପ୍ରତି ଆପଣଙ୍କର ଧ୍ୟାନ ଆକର୍ଷଣ କରିବାକୁ ଚାହୁଁଛି । ଯାହା ସେ ଗୃହରେ ପ୍ରଦାନ କରିଥିଲି ।

୨୮ ନଭେମ୍ବର ୧୯୪୮ କୁ ପ୍ରଧାନମନ୍ତ୍ରୀ ନିମ୍ନଲିଖିତ ଆଶ୍ୱାସନାଦେଇ କହିଲେ, "ଏହା ବଡ଼କଥା ଯେ, ସରକାର ଏହି ବିଲ୍‌କୁ ପାସ୍ କରିବା ପାଇଁ ବଚନବଦ୍ଧ ଅଟନ୍ତି । ସରକାର ଏହାକୁ ପାସ୍ କରିବାକୁ ଚାହୁଁଛନ୍ତି" । "ସରକାର ଏହି ବିଲ୍‌କୁ ନେଇ ଆଗେଇ ଆସିବେ । ଏହା ଏହି ଗୃହର କାର୍ଯ୍ୟ ଯେ, ତାହାକୁ ଆଇନ୍ ରୂପରେ ସ୍ୱୀକାର କରିବ । କିନ୍ତୁ ଯଦି କୌଣସି ଏକ ମହତ୍ତ୍ୱପୂର୍ଣ୍ଣ ଆଇନ କରିବାକୁ ଚାହାନ୍ତି ଏବଂ ଗୃହ ତାହା ସ୍ୱୀକାର କରୁନାହିଁ ତାହାହେଲେ ଗୃହ ବା ଲୋକସଭା ସେହି ଆଇନ ସହିତ ସରକାରଙ୍କୁ ମଧ୍ୟ ଅସ୍ୱୀକାର କରିଥାଏ । ଏହି ଅବସ୍ଥାରେ ସେ ସରକାରଙ୍କୁ ତ୍ୟାଗପତ୍ର ଦେଇ ଦେବାକୁ ପଡ଼ିଥାଏ । ସେହି ସ୍ଥାନରେ ଅନ୍ୟ ନୂଆ ସରକାର ଆସିବ । ଏହି କଥାରୁ ସ୍ପଷ୍ଟଭାବେ ବୁଝିବା ଉଚିତ୍ ଯେ, ଏହା ସେହି ମହତ୍ତ୍ୱପୂର୍ଣ୍ଣ ଆଇନଗୁଡ଼ିକ ମଧ୍ୟରୁ ଗୋଟିଏ, ଯାହାର ପାସ୍ ହେବା ଉପରେ ହିଁ ସରକାରଙ୍କର ସ୍ଥିତି ରହିବା ବା ନରହିବା ନିର୍ଭର କରେ" ।

ପୁଣି ୧୯ ଡିସେମ୍ବର ୧୯୪୯ ରେ ପ୍ରଧାନମନ୍ତ୍ରୀ କହିଲେ, "ମୁଁ ଚାହେଁ ନାହିଁ ଯେ, ଏହି ଗୃହର ସଦସ୍ୟ ଭୁଲ୍‌ରେ ମଧ୍ୟ ଏହା ନବୁଝନ୍ତୁ ଯେ, ଆମ୍ଭେମାନେ ଏହି ଆଇନକୁ ମହତ୍ତ୍ୱପୂର୍ଣ୍ଣ ବୋଲି ବିଚାର କରୁନାହୁଁ । ଏହି ଆଇନକୁ ସବୁଠାରୁ ଅଧିକ ମହତ୍ତ୍ୱ ଦେଉଅଛୁଁ । ଯାହା ମୁଁ ପ୍ରଥମେ କହିସାରିଛି, ତାହା ଏହି କାନୁନ୍‌ର କୌଣସି ଏଣୁତେଣୁ ଧାରାର କାରଣ ନୁହେଁ । ବରଂ ସେହି ମୌଳିକ ଦୃଷ୍ଟି ଯୋଗୁ ନିଜ ଆର୍ଥିକ ତଥା ସାମାଜିକ ସମସ୍ୟାଗୁଡ଼ିକୁ ସମାଧାନ କରିବାପାଇଁ ଏହି ଆଇନ୍‌ରେ ବ୍ୟବସ୍ଥା ହୋଇଅଛି । ଆମ୍ଭେମାନେ ଏହି ଦେଶରେ ରାଜନୀତିକ ସ୍ୱାଧୀନତା ଲାଭ କରିଛନ୍ତି । ରାଜନୈତିକ ମୁକ୍ତି ତ ଆମ୍ଭମାନଙ୍କର ଆନ୍ଦୋଳନର

ପ୍ରଥମ ପାହାଚ ଅଟେ । ଯଦି ସମାଜକୁ ଉନ୍ନତ କରିବାକୁ ହେବ, ତାହାହେଲେ ସେହି ଗୁଣଟି ଦିଗରୁ ଅଗ୍ରସର ହେବାକୁ ପଡ଼ିବ ।''

ପୁଣି ୨୩ ସେପ୍ଟେମ୍ବର ୧୯୫୧ରେ ପ୍ରଧାନମନ୍ତ୍ରୀ କହିଲେ—ମୋ ପାଇଁ ଏହା ଆବଶ୍ୟକ ନାହିଁ ଯେ, ମୁଁ ଏହି ଗୃହକୁ ଏହି କଥାର ଜବାବ ଦେଉଛୁ, ଯେତେଦୂର ସମ୍ଭବ ହେବ, ମୁଁ ଏହି ବିଲ୍‌କୁ ଆଇନ୍‌ର ରୂପ ଦେବାକୁ ଇଚ୍ଛୁକ । କିନ୍ତୁ ବର୍ତ୍ତମାନ ଯେଉଁ ପର୍ଯ୍ୟନ୍ତ ଆମ୍ଭମାନଙ୍କର କଟାକ୍ ସମସ୍ତେ ହୃଦୟଙ୍ଗମ ନକରିଛନ୍ତି ସେହି ପର୍ଯ୍ୟନ୍ତ ସ୍ଥଗିତକରି ରଖିଛୁ କିମ୍ବା ଯେଉଁ ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ଏହା ଉପରେ ବିଚାର କରିବାକୁ ଅବସର ନମିଳିଛି, ମୁଁ ଆଶା କରୁଛୁ ଯେ, ଏହି ପାର୍ଲିଆମେଣ୍ଟରେ ସେହି ଅବସର ଆସିବ ।

ଏହା ପ୍ରଧାନମନ୍ତ୍ରୀଙ୍କର ସେହି ସମୟର କଥା ଯେତେବେଳେ ସେମାନେ ବିଲ୍‌କୁ ବାତିଲକରି ରଖିବାକୁ ହିଁ କହିଥିଲେ । ପ୍ରଧାନମନ୍ତ୍ରୀଙ୍କ ଏହି ଘୋଷଣା କାହାରି ବିଶ୍ୱାସ ହୋଇପାରି ନଥିଲା । ଯଦି ମୁଁ ଏହା ବୁଝିନଥାନ୍ତି ଯେ, ପ୍ରଧାନମନ୍ତ୍ରୀଙ୍କର ମଧ୍ୟ କହିବା ଓ କରିବା ମଧ୍ୟରେ ପାର୍ଥକ୍ୟ ରହିପାରେ, ତାହାହେଲେ ଏହା ନିଶ୍ଚୟଭାବେ ମୋର ଅପରାଧ ନୁହେଁ । ହୋଇପାରେ ଯେ, ଦେଶରେ, ମୋର ମନ୍ତ୍ରୀ ପଦରୁ ତ୍ୟାଗପତ୍ର ଦେବାଦ୍ୱାରା କାହାରି ଉପରେ କୌଣସି ପ୍ରଭାବ ମଧ୍ୟ ପଡ଼ିବ ନାହିଁ, କାହାରିକୁ ମଧ୍ୟ ଏହାର କୌଣସି ହେଲେ ଚିନ୍ତା କରିବାକୁ ପଡ଼ିବ ନାହିଁ । କିନ୍ତୁ ମୋ ପକ୍ଷରୁ ନିଜ ପ୍ରତି ମହତ୍ତ୍ୱବାନ ରହିବା ଉଚିତ୍ ଓ ଏହା କେବଳ ତ୍ୟାଗପତ୍ର ଦେଇଦେବା ଦ୍ୱାରା ହିଁ ସମ୍ଭବ ହେବ ।

ଶେଷରେ ମୁଁ ମନ୍ତ୍ରିମଣ୍ଡଳରୁ ନିଜର ସମସ୍ତ ସାଥୀ ସଦସ୍ୟମାନଙ୍କ ପାଇଁ ସେମାନଙ୍କ ସେହି ସୌଜନ୍ୟପୂର୍ଣ୍ଣ ବ୍ୟବହାର ପାଇଁ କୃତଜ୍ଞତା ପ୍ରକାଶ କରୁଛୁ,ଯାହା ସେମାନେ ମୋର ମନ୍ତ୍ରୀ ହୋଇ ରହିବା ସମୟରେ ମୋ ପ୍ରତି ଦେଖାଇଥିଲେ । କେବଳ ମୁଁ ପାର୍ଲିଆମେଣ୍ଟରୁ ମାତ୍ର ତ୍ୟାଗପତ୍ର ଦେଉନାହିଁ । ଏଥିପାଇଁ ମୁଁ ନିଜର ପାର୍ଲିଆମେଣ୍ଟର ସଦସ୍ୟଙ୍କ ପ୍ରତି ମଧ୍ୟ ନିଜର କୃତଜ୍ଞତା ଜଣାଇବାକୁ ଚାହୁଁଛୁ । କାରଣ ସେମାନେ ମୋ ପ୍ରତି ବହୁ ପରିମାଣରେ ସହନଶୀଳତା ଦେଖାଇଅଛନ୍ତି ।

—*—

# ପାର୍ଲିଆମେଣ୍ଟାରୀ ପ୍ରଜାତନ୍ତ୍ରବାଦର ଭବିଷ୍ୟତ

(ସମ୍ବିଧାନର ଶେଷ ଉପସ୍ଥାପନ କରିବା ସମୟରେ, ବାବାସାହେବ ୪ ନଭେମ୍ବର ୧୯୪୮ରେ ଏକ ବିସ୍ତୃତ ବକ୍ତବ୍ୟ ଦେଇଥିଲେ, ଯେଉଁଥିରେ ସମ୍ବିଧାନର ତ୍ରୁଟି ତଥା ତାହାଉପରେ କରାଯାଇଥିବା ଆପତ୍ତିଗୁଡ଼ିକର ଆଲୋଚନାତ୍ମକ ସମାଧାନ କାରକ ଉତ୍ତରଥିଲା । ଏହା ବ୍ୟତୀତ ୧୭ ସେପ୍ଟେମ୍ବର ୧୯୫୧ରେ ବାବାସାହେବ ମନ୍ତ୍ରିମଣ୍ଡଳରୁ ତ୍ୟାଗପତ୍ର ଦେଇଦେଲେ ଓ ୧୦ ଅକ୍ଟୋବର ୧୯୫୧ରେ ତ୍ୟାଗପତ୍ର ସମ୍ବନ୍ଧରେ ନିଜର ବେଦନା ପୂର୍ଣ୍ଣ ବକ୍ତବ୍ୟ ମଧ୍ୟ ଦେଇଥିଲେ । ଏହି ବକ୍ତବ୍ୟର ୧୯ଦିନ ତା ୨୮-୧୦-୧୯୫୧ରେ ଆର୍ଯ୍ୟ ସମାଜର ନିମନ୍ତ୍ରଣ ସ୍ୱୀକାର କରି ବାବା ସାହେବ ଦୟାନନ୍ଦ ଏଙ୍ଗ୍ଲୋ- ବୈଦିକ କଲେଜ, ଜଳନ୍ଧର ଠାରେ ଆର୍ଯ୍ୟ ପ୍ରତିନିଧି ସଭାର ବିଶେଷ ଅଧିବେଶନରେ ପାର୍ଲିଆମେଣ୍ଟାରୀ ପ୍ରଜାତନ୍ତ୍ରବାଦ ଉପରେ ନିମ୍ନଲିଖିତ ବ୍ୟାଖ୍ୟାନ ଦେଇଥିଲେ । ଏହି ବ୍ୟାଖ୍ୟାନରେ ବାବାସାହେବ, ପ୍ରଜାତନ୍ତ୍ରୀୟ ଶାସନ ପଦ୍ଧତିର ମର୍ମ ଓ ତଥ୍ୟ ଗୁଡ଼ିକ ସ୍ପଷ୍ଟଭାବରେ ବୁଝାଇଥିଲେ । କଂଗ୍ରେସ ଦ୍ୱାରା ତାଙ୍କର ଯେଉଁ ଅବାଞ୍ଛନୀୟ ଦୁରୁପ ଯୋଗ ହୋଇଥିଲା, ତାହା ମଧ୍ୟ ସେଥିରେ ପ୍ରତିଫଳିତ ହୋଇଥିଲା । ବାବା ସାହେବଙ୍କର ଏହି ବହୁମୂଲ୍ୟ ବ୍ୟାଖ୍ୟାନ, ପ୍ରତିଫଳିତ ରାଜନୀତିର ପ୍ରତ୍ୟେକ ବିଦ୍ୟାର୍ଥୀଙ୍କପାଇଁ ଏକ ଦର୍ପଣ ଓ ପ୍ରଦୀପ ସଦୃଶ । ଉପରୋକ୍ତ ଦୁଇଟିଯାକ ବକ୍ତବ୍ୟ ଓ ବ୍ୟାଖ୍ୟାନ, ବାବା ସାହେବ କାହିଁକି କଂଗ୍ରେସ ରାଜନୀତିକୁ ପରିତ୍ୟାଗ କଲେ, ତାର ଯଥାର୍ଥତା ପ୍ରତିପାଦନ କରୁଅଛି ।)

ମାନନୀୟ, ସଭାପତି/ଅଧ୍ୟକ୍ଷ, ମହୋଦୟ,

ମୁଁ ବାସ୍ତବତଃ ଆପଣମାନଙ୍କ ପାଖରେ କୃତଜ୍ଞ ଯେ, ଆପଣମାନେ ନିଜେ ପ୍ରତିନିଧିତ୍ୱ ସଭାର ଏକ ବିଶେଷ ଅଧିବେଶନରେ ବ୍ୟାଖ୍ୟାନ ଦେବାପାଇଁ ମୋତେ ନିମନ୍ତ୍ରିତ କରି ସମ୍ମାନିତ କରିଅଛନ୍ତି । ନିଜ ସମ୍ବନ୍ଧରେ ମୋର କହିବାର କଥା, ମୁଁ ନିଜେ ସାରା ଜୀବନ ଗୋଟିଏ ବିଷୟରୁ ଅନ୍ୟ ବିଷୟ, ଗୋଟିଏ କ୍ଷେତ୍ରରୁ ଅନ୍ୟ କ୍ଷେତ୍ର ରୂପୀ ଡାଳମାନଙ୍କ ଉପରେ ଘୂରି ବୁଲୁଛି । ଇଂଲଣ୍ଡରୁ ଫେରିବାପରେ ମୁଁ ୧୯୧୯ରେ ବମ୍ବେର ଗଭର୍ଣ୍ଣମେଣ୍ଟ କମର୍ସ କଲେଜରେ ପଲିଟିକାଲ ଇକୋ-ନୋମିକସ ପଢ଼ାଇବାର କାର୍ଯ୍ୟକଲି । କିନ୍ତୁ ମୋର ଖିଆଲ ହେଉଛି, ଯେଉଁ ଲୋକକୁ ଜନତାର ସେବା କରିବାକୁ ହେବ, ତାହାପାଇଁ ସରକାରୀ ଚାକିରି ଉପଯୁକ୍ତ ନୁହେଁ । ସରକାରୀ ଚାକିରିଆ ଚାକିରିର ଆଇନ ମଧ୍ୟରେ ବନ୍ଧାହୋଇ ରହିଥାଏ । ଜନତାର କାର୍ଯ୍ୟକରିବା ସମୟରେ ତା ଆଗରେ, ପ୍ରତି ପଦକ୍ଷେପରେ

ବାଧା ଆସି ଉପସ୍ଥିତ ହୁଏ । ମୁଁ, ପୁଣି ଇଂଲଣ୍ଡ ଚାଲିଗଲି ଓ ବାରିଷ୍ଟରୀ ପରୀକ୍ଷାରେ ପାସ୍ କଲି । ସେଠାରୁ ଫେରି, ମୁଁ କିଛି ସମୟ ପାଇଁ ଓକିଲାତି କଲି ଓ ପୁଣି ମୁଁ ବମ୍ବେର ସରକାରୀ ଲଅ କଲେଜର ପ୍ରିନସିପାଲ ହେବାକୁ ରାଜିହେଲି । ମୁଁ ପୁଣି ଅଧ୍ୟାପକର ପେଶା ଗ୍ରହଣ କଲି । ୫ ବର୍ଷ ପର୍ଯ୍ୟନ୍ତ ମୁଁ ଲଅ କଲେଜର ପ୍ରିନସିପାଲ ହୋଇ ରହିଲି । ୧୯୩୫ରେ ଯେତେବେଳେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ପାସ ହେଲା, ସେତେବେଳେ ତାହାର ଅନୁଯାୟୀ ସର୍ବପ୍ରଥମ ଲୋକ ପ୍ରତିନିଧି ବିଧାନର ଅସ୍ତିତ୍ୱ ମଧ୍ୟକୁ ଆସିଲା । ସେହି ସମୟରେ ମୋର ଖିଆଲ ହେଲା ମୁଁ ମଧ୍ୟ ରାଜନୀତି ମଧ୍ୟକୁ ଝାମ୍ପ ଦେବି । ମୁଁ ଗୃହକାର୍ଯ୍ୟ ଛାଡ଼ିଲି ଓ ରାଜନୀତିର ଦଣ୍ଡ ଧରିଲି । ସେତେବେଳେ ମଧ୍ୟ ମୁଁ ଓକିଲାତି କରୁଥିଲି । କେବେ କେବେ ଜନତାର ସେବା କରୁଥିଲି । ଓକିଲାତି ଓ ଜନସେବା ମୋ ଜୀବନରେ ଗୋଟିଏ ପରେ ଗୋଟିଏ ବଦଳୁଥିବାର ଦୁଇଟି ଧାରା ରୂପେ ଥିଲା । ମୁଁ ଜାଣି ନଥିଲି ମୋ ଜୀବନ ଧାରା କେଉଁ ବିଦ୍ୟୁତ ସ୍ରୋତ ମଧ୍ୟରେ ଶେଷ ହେବ । ତାହା ଏ.ସି – ନା – ଡି.ସି.

ମୋର ପଢ଼ାଇବାର ପେଷା ଅତ୍ୟନ୍ତ ପ୍ରିୟ । ମୋତେ ବିଦ୍ୟାର୍ଥୀ ମାନଙ୍କୁ ମଧ୍ୟ ଖୁବ୍ ଭଲ ଲାଗୁଥିଲା । ମୁଁ ସେମାନଙ୍କୁ ବହୁ ସମୟରେ, ବିନା ବେତନରେ ପଢ଼ାଉଥିଲି । ମୁଁ ସେମାନଙ୍କ ପାଇଁ ବହୁତ ବ୍ୟାଖ୍ୟାନ ଦେଉଥିଲି । କିନ୍ତୁ ମନ୍ତ୍ରୀ ମଣ୍ଡଳରୁ ତ୍ୟାଗପତ୍ର ଦେବା ପରେ ଆଜି, ଏହା ପ୍ରଥମ ଅବସର, ଯେତେବେଳେ କି, ମୁଁ ବିଦ୍ୟାର୍ଥୀ ମାନଙ୍କ ଆଗରେ କିଛି କହିବାର ସୁଯୋଗ ପାଇଛି । ଦେଶର ଭବିଷ୍ୟତ ପ୍ରାୟତଃ ଦେଶର ବିଦ୍ୟାର୍ଥୀମାନଙ୍କ ଉପରେ ନିର୍ଭର କରେ । ବିଦ୍ୟାର୍ଥୀମାନେ ଦେଶକୁ ବୁଝିବା ଶ୍ରେଣୀର ଅଟନ୍ତି । ଏଣୁ ଆପଣମାନଙ୍କୁ ଓ ପ୍ରତିନିଧି ସଭାର ସଦସ୍ୟ ମାନଙ୍କୁ ସମ୍ବୋଧନ କରି କିଛି କହିବା ମୋ ପାଇଁ ଆନନ୍ଦର ବିଷୟ ।

ଯେତେବେଳେ ଆପଣଙ୍କ ପ୍ରିନସିପାଲ ମହାଶୟ ଆପଣମାନଙ୍କୁ କିଛି ଉଦ୍‌ବୋଧନ ଦେବା ପାଇଁ ମୋତେ ଲେଖିଥିଲେ, ସେତେବେଳେ ସେ କୌଣସି ବିଷୟର ସଙ୍କେତ ଦେଇ ନଥିଲେ । ମୋ ନିଜ ମନ ମଧ୍ୟରେ, ସେହି ସମୟରେ ଆପଣଙ୍କ ସମ୍ମୁଖରେ କହିବା ପାଇଁ କୌଣସି ସ୍ୱତନ୍ତ୍ର ବିଷୟ ନଥିଲା । କିନ୍ତୁ

ପର୍ଯ୍ୟାୟ କ୍ରମେ ମୋ ମନକୁ ବିଭିନ୍ନ ଦିଗରୁ ଯାହାସବୁ ପ୍ରଶ୍ନବିଦ୍ଧ କରି ଆସୁଥିଲା ତାହା ମୋ ନିକଟରେ ସ୍ପଷ୍ଟ ଭାବରେ ଦେଖା ଦେଲା । ମୁଁ ସ୍ଥିର କଲି, ଆଜି ଆପଣ ମାନଙ୍କୁ ପାର୍ଲିଆମେଣ୍ଟାରି ଶାସନ ପଦ୍ଧତି ବିଷୟରେ ଦୁଇପଦ କହିବି । ମୋ ପାଖରେ ଅଧିକ ସମୟ ନାହିଁ । ଏଣୁ ମୁଁ ଆପଣଙ୍କ ସମ୍ମୁଖରେ ବିଷୟଟିକୁ ସଂକ୍ଷିପ୍ତ ରୂପରେ ଉପସ୍ଥାପନ କରିବି ।

ସମ୍ବିଧାନ ନିର୍ମାଣ ସଭାରେ ବିଚାର କରାଯାଉଥିବା ସମୟରେ, ଆମ ଦେଶ ପାଇଁ କେଉଁ ସମ୍ବିଧାନ ଉପଯୁକ୍ତ ହେବ ଏହି ବିଷୟଟିକୁ ନେଇ ବିଭିନ୍ନ ମତ ଦେଖା ଦେଇଥିଲା । କେତେକ ବ୍ରିଟିଶ ସମ୍ବିଧାନରେ ଥିବା ବିଧାନ ପରିବିଧାନ ଗ୍ରହିଲେ । କେତେକ ଆମେରିକା ବିଧାନ ପରି ଗ୍ରହିଲେ । ମାତ୍ର ଅନ୍ୟ କେତେକ ଏହି ଦୁଇଟି ମଧ୍ୟରୁ କୌଣସି ଗୋଟିଏ ପ୍ରକାରର ଶାସନ ପଦ୍ଧତିର ସପକ୍ଷରେ ନଥିଲେ । କିନ୍ତୁ ବହୁ ଚର୍ଚ୍ଚା ହେବାପରେ ଅଧିକାଂଶ ସଦସ୍ୟ ଏହି ମତ ଉପରେ ରାଜି ହୋଇଗଲେ ଯେ ବ୍ରିଟେନ୍‌ରେ ଯେଉଁପରି ପାର୍ଲିଆ-ମେଣ୍ଟାରି ଶାସନ ପଦ୍ଧତି ଅଛି ସେହି ପ୍ରକାର ଶାସନ ପଦ୍ଧତି ଆମ୍ଭମାନଙ୍କ ଦେଶପ୍ରତି ଅନୁକୂଳ ହେବ ।

କିଛି ଲୋକ ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିକୁ ମଧ୍ୟ ପସନ୍ଦ କଲେ ନାହିଁ । ସେମାନେ ରୁଷ ପରି ଏକ କମ୍ୟୁନିଷ୍ଟ ସରକାର ଚାହୁଁଥିଲେ । ସୋଶାଲିଷ୍ଟ ଲୋକମାନେ ମଧ୍ୟ ଭାରତରେ ବର୍ତ୍ତମାନ ସୁଦ୍ଧା ଏହା ବିରୁଦ୍ଧରେ ଆନ୍ଦୋଳନ କରୁଛନ୍ତି । ସେମାନେ ଘୋଷଣା କଲେ ଯେ, ଯଦି ସେମାନଙ୍କ ହାତକୁ କ୍ଷମତା ଆସିବ ତାହାହେଲେ ଶାସନ ପଦ୍ଧତିର ସମର୍ଥନ ଅଟେ । ଏଣୁ ମୁଁ ତାର ମହତ୍ତ୍ୱ ଆପଣଙ୍କ ସମ୍ମୁଖରେ ଉପସ୍ଥାପନ କରିବାକୁ ଚାହୁଁଛି ।

ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିର ଅଭିପ୍ରାୟ କଣ ? ବ୍ରିଟିଶ ସମ୍ବିଧାନ ସମ୍ବନ୍ଧରେ ୱାଲଟର ବେଜର ଗୋଟିଏ ବହି ଲେଖିଛନ୍ତି । ଲାସ୍କୀ ଆଦି ଅନ୍ୟ ପଣ୍ଡିତମାନେ ବେଜରଙ୍କ ମତକୁ ଆହୁରି ସ୍ପଷ୍ଟ କରି ଦେଇଛନ୍ତି । ୱାଲଟର ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିର କଳ୍ପନାକୁ ଗୋଟିଏ ବାକ୍ୟରେ ବ୍ୟକ୍ତ କରି ଦେଇଛନ୍ତି । ସେ କହନ୍ତି ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିର ଲୋକେ ବାଦାନୁ-ବାଦର ପରିମାପ ଦ୍ୱାରା ହିଁ କୌଣସି ସିଦ୍ଧାନ୍ତ ଉପରେ ଉପନୀତ ହୁଅନ୍ତି । ବ୍ରିଟିଶ

ପାର୍ଲିଆମେଣ୍ଟରେ କେହି କିଛି ଗଡ଼ବଡ଼ କରିବାକୁ ଚେଷ୍ଟା କରନ୍ତି ନାହିଁ । କିନ୍ତୁ ଫ୍ରାନସର ରାଜନୀତି ଅନୁସାରେ ବହୁ ଯୁକ୍ତି ତର୍କର ପରମାଣ ଦ୍ୱାରା ହିଁ କୌଣସି ସିଦ୍ଧାନ୍ତରେ ଉପନୀତ ହେବାକୁ ହୋଇଥାଏ ।

ଆପଣ ଦେଖିବେ, ଯାହାଙ୍କର ଜନ୍ମ ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିର ବାୟୁମଣ୍ଡଳରେ ହୋଇନାହିଁ, ସେମାନଙ୍କ ପାଇଁ ଏହି ପଦ୍ଧତି ସମ୍ପୂର୍ଣ୍ଣ ଅପରିଚିତ । ଆମ୍ଭେମାନେ ଏହି ପାର୍ଲିଆମେଣ୍ଟାରି ଶାସନ ପଦ୍ଧତି ବିଷୟରେ ହୃଦୟଙ୍ଗମ କରିବା ଉଚିତ । ଏହାକୁ ସଫଳ କରିବା ମଧ୍ୟ ଉଚିତ୍ ।

ଆଜି, ଆମ୍ଭେ ସଂସଦୀୟ ଶାସନ ପଦ୍ଧତି ସହ ଅପରିଚିତ ଅଛୁଁ । କିନ୍ତୁ ଗୋଟିଏ ସମୟ ଥିଲା, ଯେତେବେଳେ ଭାରତରେ ପାର୍ଲିଆମେଣ୍ଟାରି ଢ଼ଙ୍ଗର ସଂସ୍ଥା ଥିଲା । ପ୍ରାଚୀନ ସମୟରେ ଭାରତ ପୃଥିବୀର ଅନ୍ୟ ଦେଶଠାରୁ ବହୁତ ଅଗ୍ରସର ଥିଲା । ଯଦି ଆପଣ ପାଲି "ଦୀର୍ଘ ନିକାୟ"ର "ମହା ପରି ନିର୍ବାଣ" ସୁକ୍ତ ଗୁଡ଼ିକୁ ପଢ଼ିବେ, ତାହା ହେଲେ ସେଥିରେ ଆପଣଙ୍କୁ ମୋ କଥାର ସପକ୍ଷରେ ବହୁତ କିଛି ସାମଗ୍ରୀ ମିଳି ପାରିବ । ସେହି ସୁକ୍ତରେ ଲେଖାଅଛି, ଯେଉଁ ସମୟରେ କୁଶି ନଗରରେ ଭଗବାନ ବୁଦ୍ଧଙ୍କର ନିର୍ବାଣ ହେବାକୁ ଯାଇ-ଥିଲା, ସେତେବେଳେ ମଲ୍ଲ ଜନପଦର ଲୋକମାନଙ୍କୁ ନେଇ ସେହି ସମୟରେ ଯେଉଁ ବୈଠକ କରିଥିଲେ, ତାହାର ସୂଚନା ଦିଆଯାଇଛି । ମଲ୍ଲ ଲୋକମାନେ ପାର୍ଲିଆମେଣ୍ଟାରି ପଦ୍ଧତିର ଭକ୍ତ ଥିଲେ । ଯେତେବେଳେ ସେମାନଙ୍କୁ ଭଗବାନ ବୁଦ୍ଧଙ୍କ ସମାଚାର ମିଳିଲା; ସେମାନେ ସ୍ଥିର କଲେ ଯେ ସେମାନେ ନିଜ ଅଧିବେଶନ ବନ୍ଦ କରିବେ ନାହିଁ । କାର୍ଯ୍ୟକ୍ରମ ଜାରି ରଖିବେ ଓ ନିଜ ପାର୍ଲିଆ-ମେଣ୍ଟର କାର୍ଯ୍ୟ ସମାପନ କରି ସାରି କୁଶୀନଗର ଯିବେ । ଆମ୍ଭମାନଙ୍କର ସାହିତ୍ୟରେ ଏହିପରି ଅଗଣିତ ଉଲ୍ଲେଖ ଅଛି, ଯେଉଁଥିରୁ ନିଶ୍ଚିତ କରାଯାଇ ପାରିବ ଯେ, ଆମ୍ଭେମାନେ ପାର୍ଲିଆମେଣ୍ଟାରି ଶାସନ ପଦ୍ଧତି ସହିତ ଅପରିଚିତ ନୁହଁନ୍ତି ।

ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିର ବହୁତଗୁଡ଼ିଏ ନିୟମ ଅଛି । ଗୋଟିଏ ନିୟମ, ଯାହାକୁ ଅନିବାର୍ଯ୍ୟ ରୂପେ ସବୁ ଯାଗାରେ ପାଳନ କରାଯାଏ, ତାହା ହେଉଛି ପ୍ରସ୍ତାବ ଉପସ୍ଥାପନ ନକଲେ, କୌଣସି ବିଷୟ ଉପରେ ଆଲୋଚନା ହୋଇ ପାରିବ ନାହିଁ । ପ୍ରାଚୀନ ସମୟରେ ଆମ ଦେଶରେ ଏହି ପଦ୍ଧତି ପ୍ରଚଳିତ ଥିଲା । ଏହି ସମୟରେ ହିଁ "ଗୁପ୍ତମତ" ଦେବାର ପ୍ରଥା ପ୍ରଚଳିତ ଅଛି, ଏହା ମଧ୍ୟ ଆମ୍ଭମାନଙ୍କ ପାଇଁ ନୂଆ ନୁହେଁ । ବୌଦ୍ଧ ଗ୍ରନ୍ଥମାନଙ୍କରୁ ଏହା ଜଣାଯାଏ ଏପରି ମତ-ପତ୍ରକୁ 'ଶଲାକା'' କହୁଥିଲେ । ଦୁର୍ଭାଗ୍ୟରୁ ଆମ୍ଭମାନଙ୍କର ଏହି ସଂପ୍ରଦାୟ, ବଂଶ ପରମ୍ପରା କ୍ରମେ ଲୋପ ପାଇ ଆସୁଛନ୍ତି । ଆମ୍ଭେମାନେ ମୂଲ୍ୟବାନ ସମ୍ପତ୍ତିକୁ ହରାଇ ଦେଇଅଛୁ । ଭାରତର ଇତିହାସବେତ୍ତାମାନଙ୍କୁ ଏହି ପ୍ରଶ୍ନର ଉତ୍ତର ଯୋଗାଡ଼ କରିବା ଉଚିତ୍ ଯେ, ଆମ ଦେଶରୁ ଏହି ପାର୍ଲିଆମେଣ୍ଟାରି ସଂସ୍ଥାଗୁଡ଼ିକ କାହିଁକି ଲୋପ ହୋଇଗଲା ? କିନ୍ତୁ ମୋତେ ଅନୁମିତ ହେଉଛି, ଆମ ଦେଶର ଇତିହାସ ଲେଖକମାନେ ଏହି ପ୍ରଶ୍ନର ଉତ୍ତର ଖୋଜି ପାଇବେ ନାହିଁ । କିମ୍ବା ଜାଣି, ବୁଝି କରି, ଖୋଜିବାକୁ ଚାହାନ୍ତି ନାହିଁ । ପ୍ରାଚୀନ ଭାରତ, ସାରା ବିଶ୍ୱର ଗୁରୁ ଥିଲା । ପ୍ରାଚୀନ ଭାରତରେ ଏପରି ମାନସିକ ସ୍ୱତନ୍ତ୍ରତା ଥିଲା, ଯାହା ଅନ୍ୟତ୍ର କୌଣସି-ଠାରେ ନଥିଲା । ପୁଣି ତା'ର ପ୍ରାଚୀନ ସଭ୍ୟତା ଏପରି ଛିନ୍ନ ଭିନ୍ନ ହୋଇ କିପରି ଓ କାହିଁକି ନଷ୍ଟ ହୋଇଗଲା ? ଭାରତକୁ ଆକ୍ରମଣ ଶାସକଙ୍କ ଅଧୀନତା କାହିଁକି ସ୍ୱୀକାର କରିବାକୁ ପଡ଼ିଲା ? ଆମ୍ଭେ ପାର୍ଲିଆମେଣ୍ଟାରି ଶାସନପଦ୍ଧତି ସହିତ ପରିଚିତ ଥିଲୁ । ଆମ୍ଭେ ଛନ୍ଦ (ଭୋଟ) ପ୍ରଦାନ ତଥା ତତ୍‌ସମ୍ବନ୍ଧୀୟ କମିଟିଗୁଡ଼ିକ ସହିତ ପରିଚିତ ଥିଲେ । ଆଜି ଆମ୍ଭମାନଙ୍କ ପାଇଁ ପାର୍ଲିଆମେଣ୍ଟାରି ଶିକ୍ଷା ପଦ୍ଧତି ସମ୍ପୂର୍ଣ୍ଣ ରୂପେ ଅପରିଚିତ ହୋଇ ଯାଉଛି । ଯଦି ଆମେ ଗ୍ରାମମାନଙ୍କୁ ଯିବା, ତାହାହେଲେ ଆମେ ଦେଖିବା, ଗ୍ରାମର ଲୋକେ କୌଣସି ଛନ୍ଦ (ଭୋଟ) କଥା ବୁଝିବେ ନାହିଁ । କିମ୍ବା କୌଣସି ପାର୍ଟି କଥା ବୁଝିବେ ନାହିଁ । ସେମାନେ ଭାବିବେ ସେମାନଙ୍କୁ କୌଣସି ସଂପୂର୍ଣ୍ଣ ଅଦରକାରୀ କଥା ଶିଖାଇ ଦିଆଯାଉଛି । ଆମେ, ଜନତାଙ୍କୁ ଶିକ୍ଷିତ କରିବାକୁ ହେବ । ଆମ୍ଭେମାନେ ଜନତାକୁ ପାର୍ଲିଆମେଣ୍ଟାରି ପ୍ରଜାତନ୍ତ୍ର ବାଦ, ତଥା ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିର ଲାଭ ବିଷୟରେ ବୁଝାଇବାକୁ ହେବ ।

ଆମ୍ଭେମାନେ ଜାଣୁ, ପାର୍ଲିଆମେଣ୍ଟାରି ଶାସନ ପଦ୍ଧତି ବା ପ୍ରଜାତନ୍ତ୍ର ବାଦରେ 'ବୈଦ୍ୟ' ମହାଶୟଙ୍କର କଣ ଅଭିପ୍ରାୟ ଥିଲା ? ତାଙ୍କର ମତ ଅନୁସାରେ ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିରେ ତିନୋଟି ମୁଖ୍ୟକଥା ଅଛି । ପ୍ରଥମଟି ହେଉଛି, ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିରେ ପୈତୃକ ଶାସନାଧିକାର ପାଇଁ ତିଳେହେଲେ ବ୍ୟବସ୍ଥା ନାହିଁ । କୌଣସି ଲୋକ କହି ପାରିବ ନାହିଁ, ଯେ, ସେ

ରାଜାର ପୁଅ ହୋଇଥିବା ଯୋଗୁଁ 'ରାଜାଅଛେ' । ଯେ କେହି ଶାସନ କରିବାକୁ ଚାହିଁବ, ତାକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଲୋକମାନଙ୍କ ଦ୍ୱାରା ନିର୍ବାଚିତ ହେବା ଉଚିତ । ତାକୁ ଲୋକମାନଙ୍କର ଅନୁମତି ଲାଭ କରିବା ଉଚିତ । ପାର୍ଲିଆ-ମେଣ୍ଟାରୀ ଶାସନ ପଦ୍ଧତିରେ ପରମ୍ପରା ଗତ ଶାସନପାଇଁ କୌଣସି ସ୍ଥାନନାହିଁ ।

ଦ୍ୱିତୀୟ କଥା ହେଉଛି ଲୋକମାନଙ୍କର ସାର୍ବଜନୀନ ଜୀବନ ସମ୍ବନ୍ଧୀୟ କୌଣସି ବ୍ୟବସ୍ଥା ଦରକାର ହେଲେ ତାହାପାଇଁ ଆଇନ କାନୁନ୍ ତିଆରି କରିବାକୁ ହେବ । ସେଗୁଡ଼ିକ ତିଆରି କରିବା ଲୋକ, ଜନତାଦ୍ୱାରା ନିର୍ବାଚିତ ଲୋକ ହେବେ । କୌଣସି ବ୍ୟକ୍ତିଗତ ଲୋକ କହିପାରିବନାହିଁ ଯେ, ସେ ସର୍ବଜ୍ଞ ସେ କାନୁନ୍ ତିଆରି କରିପାରିବ ଓ ସରକାର ଚଲାଇ ପାରିବ । କାନୁନ୍ ଜନତାଙ୍କ ପ୍ରତିନିଧିମାନଙ୍କ ଦ୍ୱାରା ପାର୍ଲିଆମେଣ୍ଟରେ ତିଆରି ହେବା ଉଚିତ୍ । ଯାହାର ନାମାନୁସାରେ କାନୁନ୍ ଘୋଷଣା ହେବ ସେ ଲୋକ, ସେହି କାନୁନ୍‌ପାଇଁ ପରାମର୍ଶ ଦେବ । ଗୋଟିଏ ରାଜାଙ୍କର ରାଜ୍ୟ ଓ ପ୍ରଜାତନ୍ତ୍ର ବାଦୀ ଶାସନ ପଦ୍ଧତିରେ ଏହାହିଁ ପାର୍ଥକ୍ୟ । ଗୋଟିଏ ରାଜାଙ୍କ ରାଜ୍ୟରେ ଜନତାର ଶାସନ ରାଜାଙ୍କଦ୍ୱାରା ଓ ରାଜାଙ୍କ ନାମାନୁସାରେ ହୁଏ, ମାତ୍ର ପ୍ରଜାତନ୍ତ୍ର ବାଦରେ ଜନତାର ସମସ୍ତ କାରବାର ରାଜ୍ୟର ମୁଖ୍ୟ ପଦାଧିକାରୀଙ୍କ ନାମାନୁସାରେ ହୁଏ । ସରକାର, ଆଇନ ଓ ସେହି ଅନୁଯାୟୀ ଦିଆଯାଉଥିବା ହୁକୁମ ଅନୁଯାୟୀଚଳେ । ରାଜ୍ୟର ମୁଖ୍ୟ ପଦାଧିକାରୀ, ନାମକୁ ମାତ୍ର ଶାସକ ହୁଏ । ଏହା ଏକ ମୂର୍ତ୍ତିମାତ୍ର ହୋଇ ରହିଥାଏ । ତାହାର ପୂଜା କରାଯାଇପାରେ କିନ୍ତୁ, ସେ ନିଜର ମନ ଅନୁଯାୟୀ ଶାସନ ଚଲାଇ ପାରିବନାହିଁ । ଦେଶର ଶାସନ ଯଦିଓ ତାହାର ନାମାନୁସାରେ ଚାଲେ କିନ୍ତୁ, ତାକୁ ଚଲାଉଛନ୍ତି ବାସ୍ତବ. ଜନତା ଦ୍ୱାରା ନିର୍ବାଚିତ ପ୍ରତିନିଧି ଅଟନ୍ତି ।

ତୃତୀୟ ଓ ଶେଷକଥା ହେଉଛି, ପାର୍ଲିଆମେଣ୍ଟାରୀ ଶାସନ ଅନୁଯାୟୀ ରାଜ୍ୟର ମୁଖ୍ୟ ପଦାଧିକାରୀଙ୍କୁ ଯେଉଁ ଲୋକ ପରାମର୍ଶ ଦେବାକୁ ରହନ୍ତି ସେମାନଙ୍କ ପ୍ରତି ଏକ ନିର୍ଦ୍ଦିଷ୍ଟ ବ୍ୟବଧାନ ପରେ ନୂଆକରି ଜନତା ବିଶ୍ୱାସ ପ୍ରଦର୍ଶନ କରି-ଥାନ୍ତି । ବ୍ରିଟେନରେ ପ୍ରଥମେ ୭ବର୍ଷପାଇଁ ପାର୍ଲିଆମେଣ୍ଟକୁ ନିର୍ବାଚିତ ହେବାକୁ ହୋଇଥାଏ । ଚାର୍ଟିଷ୍ଟ ନାମକ ସୁଧାର ବାଦୀମାନେ ଏହା ବିରୁଦ୍ଧରେ ସଂଘର୍ଷ କଲେ । ସେମାନେ ଚାହୁଁଥିଲେ ନିର୍ବାଚନ ପ୍ରତିବର୍ଷ ହେଉ । ବାସ୍ତବରେ ଏହି ଆନ୍ଦୋଳନର ଉଦ୍ଦେଶ୍ୟ ପ୍ରଶଂସନୀୟ ଥିଲା । ଯଦି ପ୍ରତିବର୍ଷ ନିର୍ବାଚନ ସମ୍ଭବ ହୁଅନ୍ତା, ତାହାହେଲେ ଜନତାର ହିତପାଇଁ ଏହା ସବୁଠାରୁ ଭଲକାମ ହୁଅନ୍ତା । କିନ୍ତୁ, ପାର୍ଲିଆମେଣ୍ଟର ନିର୍ବାଚନରେ ବହୁତ ଖର୍ଚ୍ଚ ହୁଏ । ଏହି କାରଣରୁ ବହୁତ

ବୃଷ୍ଟାସୃଷ୍ଟୀ ପରେ ସ୍ଥିର କରାଗଲା ୫ ବର୍ଷେ ପରେ ବିଧାନସଭାର ସଦସ୍ୟ ତଥା ମନ୍ତ୍ରୀ ମାନଙ୍କୁ ପୁଣି ଜନତାଙ୍କର ପାଖକୁ ଯିବାକୁ ପଡ଼ିବ, ଓ ସେମାନଙ୍କଠାରୁ ତାଙ୍କର ବିଶ୍ୱାସର ସାର୍ଟିଫିକେଟ ଆଣିବାକୁ ପଡ଼ିବ ।

ଏଥିରେ ବିଶେଷ ପରିମାଣରେ ବିଶେଷତ୍ୱ ନାହିଁ । ପାର୍ଲିଆମେଣ୍ଟାରି ଶାସନ ପଦ୍ଧତି, କେବଳ ବାଦ ବିବାଦ ମଧ୍ୟରେ ଚାଲି ଯାଉଥିବା ଶାସନ ପଦ୍ଧତି ମଧ୍ୟ ନୁହେଁ । ତାହାକୁ ଧାରଣ କରିବାକୁ ସାଧାରଣତଃ ଦୁଇଟି ସ୍ତମ୍ଭ ଅଛି । ସେହି ଦୁଇଟି ସ୍ତମ୍ଭ ଉପରେ ଏହା ପୂରୁଥାଏ । ସେହି ସ୍ତମ୍ଭ ଦୁଇଟି ହେଲା (୧) ବିରୋଧି ପକ୍ଷ (୨) ଅନ୍ୟଟି ସ୍ୱତନ୍ତ୍ର ରୂପେ ପ୍ରଭାବଶାଳୀ ହୋଇ ଲଢ଼ୁଥିବା ନିର୍ବାଚନ ।

ଗତ ୨୦, ୩୦ ବର୍ଷ ମଧ୍ୟରେ ମୁଁ କେବଳ ଗୋଟିଏ ରାଜନୈତିକ ଦଳ ସହିତ ଏପରି ଅଧିକ ଅଭ୍ୟସ୍ତ ହୋଇ ଯାଇଛୁ ଯେ, ଆମେ ବିରୋଧି ପକ୍ଷକୁ, ଯାହାର ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିକୁ ସୁଚାରୁରୂପେ ଚଳାଇବାପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଅଛି, ତାହାକୁ ଏକପ୍ରକାର ଭୁଲିଯାଇଛୁଁ । ମୋତେ ବାରମ୍ବାର କୁହାଯାଏ 'ବିରୋଧୀପକ୍ଷ' ଏକ ଅଭିଶାପ ଅଟେ । ମାତ୍ର ମୋର ଅଭିମତ ଭିନ୍ନ, ଯାହାକି ମୁଁ ନିଜେ ପ୍ରାଚୀନ ଇତିହାସରୁ କେବଳ ଶିକ୍ଷାଲୁହେଁ ଗ୍ରହଣ କରିଛି । ଆପଣ ଜାଣନ୍ତି, ବେଦ ଓ ଶ୍ରୁତିଗ୍ରନ୍ଥକ ଉପରେ ଭାଷ୍ୟ କରୁଥିବା ବ୍ୟକ୍ତି 'ନିବନ୍ଧ କାର' ଅଟନ୍ତି । ତାହାକୁ ଯେତେବେଳେ କୌଣସି ଶ୍ଳୋକ ଅଥବା ସୂତ୍ର ଉପରେ ଭାଷ୍ୟ ପ୍ରଦାନ କରିବାକୁ ଦରକାର ହୁଏ, ସେତେବେଳେ ସେ ସର୍ବପ୍ରଥମେ 'ପୂର୍ବଭାଷ୍ୟ'କୁ ଉପସ୍ଥାପିତ କରନ୍ତି । ତାହାଉପରେ ଉଭୟପକ୍ଷକୁ ଉପସ୍ଥାପିତ କରନ୍ତି । ଏହାଦ୍ୱାରା ସେ ପ୍ରକାଶ କରୁଥିଲେ ଯେ, ପ୍ରଶ୍ନଟି ସରଳ ନୁହେଁ । ଏହା ଏକ ବିବାଦମାନ ପ୍ରଶ୍ନ । ଏହାପରେ ସେ ଦୁଇପକ୍ଷର ସମାଲୋଚନା ଉପସ୍ଥାପିତ କରୁଥିଲେ । ଶେଷରେ ତାଙ୍କ ନିଜର ମତାମତ ଉପସ୍ଥାପନ କରୁଥିଲେ । ପ୍ରାଚୀନ ପଦ୍ଧତିରୁ ଆମ୍ଭେମାନେ ସ୍ପଷ୍ଟ ଭାବରେ ଦେଖୁ, ଆମ୍ଭମାନଙ୍କର ସମସ୍ତ ପ୍ରାଚୀନ ଆର୍ଯ୍ୟଗଣ ଦୁଇଟି ପକ୍ଷ ବା ପାର୍ଟିର ଶାସନ ପଦ୍ଧତିର ବିଶ୍ୱାସୀଥିଲେ ।

ପାର୍ଲିଆମେଣ୍ଟାରି ଶାସନ ପଦ୍ଧତିରେ ଏହା ମହତ୍ତ୍ୱପୂର୍ଣ୍ଣ ତଥ୍ୟ ଯେ, ଯଦି କୌଣସି ପ୍ରଶ୍ନର ଦୁଇଟି ଉଦ୍ଦେଶ୍ୟ ଥାଏ, ତାହାହେଲେ, ଲୋକମାନଙ୍କୁ ଦୁଇଟି ସହିତ ପରିଚିତ ହେବା ଉଚିତ୍ । ଏଣୁ ଗୋଟିଏ କ୍ରିୟାଶୀଳ ବିରୋଧୀପକ୍ଷ ଏକାନ୍ତ ଆବଶ୍ୟକ । ବିରୋଧୀପକ୍ଷ ସ୍ୱତନ୍ତ୍ର ରାଜନୈତିକ ଜୀବନର ମେରୁଦଣ୍ଡ ଅଟେ । ତାହା ବ୍ୟତୀତ କୌଣସି ପ୍ରଜାତନ୍ତ୍ରର କାର୍ଯ୍ୟ ଚାଲିପାରିବ ନାହିଁ । ପାର୍ଲିଆମେଣ୍ଟାରି

ଶାସନ ପଦ୍ଧତିର ଦୁଇ ସମର୍ଥକ ଦେଶ, ବ୍ରିଟେନ ଓ କାନାଡା ଏହାର ପ୍ରକୃତ ମହତ୍ତ୍ୱ ବୁଝିଛନ୍ତି । ଦୁଇଦେଶରେ ବିରୋଧୀ ପକ୍ଷର ନେତା ଶାସନ ଦ୍ୱାରା ପ୍ରଚୁର ବେତନ ପାଇଥାନ୍ତି । ସେ ବିରୋଧୀକୁ ଏକ ଆବଶ୍ୟକ ଧର୍ମ ବୋଲି ମାନିନେଇ-ଥାନ୍ତି । ଏହି ଦୁଇ ଦେଶର ଲୋକମାନଙ୍କର ମତ, ବିରୋଧୀ ପକ୍ଷ ମଧ୍ୟ ସରକାରୀ ପକ୍ଷ ପରି ସଜାଗ ଓ ଜାଗ୍ରତ ହେବା ଉଚିତ । ବିରୋଧୀ ପକ୍ଷଙ୍କ ବ୍ୟତୀତ ସରକାର ଯେକୌଣସି ତଥ୍ୟକୁ ଦବାଇଦେଲେ ଏକପକ୍ଷୀୟ ପ୍ରଚୁର କାର୍ଯ୍ୟ କରିପାରନ୍ତି । ଏଣୁ ଏହି ଦୁଇଦେଶର ଲୋକେ ବିରୋଧୀ ପକ୍ଷକୁ ମହତ୍ତ୍ୱ ଦେଇଥାନ୍ତି ।

ସ୍ୱତନ୍ତ୍ର ଓ ନିରପେକ୍ଷଭାବେ କରାଯାଉଥିବା ନିର୍ବାଚନ ଅନ୍ୟ ଏକ ସ୍ତମ୍ଭ, ଯାହାଉପରେ ପାର୍ଲିଅମେଣ୍ଟାରି ପ୍ରଜାତନ୍ତ୍ରବାଦ ନ୍ୟସ୍ତ ଥାଏ । ଯଦି ଶାସନ ସଂସ୍ଥା ସମାଜର ଗୋଟିଏ ଶ୍ରେଣୀର ହାତରୁ ଅନ୍ୟ ଗୋଟିଏ ଶ୍ରେଣୀର ହାତକୁ ବିନା ରକ୍ତପାତରେ ଶାନ୍ତିପୂର୍ଣ୍ଣ ଭାବରେ ହସ୍ତାନ୍ତର କରିବାକୁ ହେବ, ତାହାହେଲେ ସ୍ୱତନ୍ତ୍ରତାପୂର୍ବକ ନିରପେକ୍ଷଭାବେ ନିର୍ବାଚନ କରିବା ଅନିବାର୍ଯ୍ୟ । ପୂର୍ବକାଳରେ ଯେତେବେଳେ କୌଣସି ରାଜା ମରୁଥିଲେ, ତାହାହେଲେ ରାଜମହଲରେ ଅତି କମ୍‌ରେ ଗୋଟିଏ ଗୋଟିଏ ହତ୍ୟା ନିଶ୍ଚିତଭାବେ ହେଉଥିଲା । ନୂଆ ରାଜାଙ୍କୁ ଶାସନ ଡୋର ନିଜ ହାତକୁ ନେବାପାଇଁ ହେଲେ, ତାଙ୍କୁ ପ୍ରଥମେ ରାଜମହଲ ମଧ୍ୟରେ କାର୍ଯ୍ୟକ୍ରମ ଆରମ୍ଭ କରିବାକୁ ହେଉଥିଲା ଓ ସେହି କାର୍ଯ୍ୟକ୍ରମର ପରିଣାମ ହେଉଥିଲା, ହତ୍ୟା । ଏହା ଭାରତର ଇତିହାସରେ ବହୁବାର ଦେଖା ଦେଇଛି । ପ୍ରଜାତନ୍ତ୍ର ଶାସନରେ ଏପ୍ରକାର ହତ୍ୟାର ସ୍ଥାନ ନାହିଁ । ଏଥିପାଇଁ ଅଛି ନିର୍ବାଚନ । ଯାହା ସମ୍ପୂର୍ଣ୍ଣରୂପେ ସ୍ୱତନ୍ତ୍ର ଓ ନିରପେକ୍ଷ ହେବା ଉଚିତ୍ । ଲୋକମାନଙ୍କୁ ଏ ବିଷୟରେ ପୂର୍ଣ୍ଣ ସ୍ୱତନ୍ତ୍ରତା ମିଳିବା ଉଚିତ୍ ଯେ, ସେମାନେ ଯାହାକୁ ଚାହିଁବେ ତାକୁହିଁ ବିଧାନସଭାକୁ ପଠାଇ ପାରିବେ ।

ବର୍ତ୍ତମାନ ପ୍ରଶ୍ନ ହୁଏ, କ'ଣ ସେହି ପାର୍ଟି, ଯାହା ହାତରେ ସେହିସମସ୍ତରେ କ୍ଷମତା ଅଛି, ଚାହାନ୍ତି; ଯେକୌଣସି ଶକ୍ତିଶାଳୀ ବିରୋଧୀପକ୍ଷ ରହୁ ? ଆପଣ ଜାଣନ୍ତି, ବର୍ତ୍ତମାନ ଶାସନରେ ଥିବା ପାର୍ଟି କୌଣସି ପ୍ରକାର ବିରୋଧୀକୁ ଚାହାନ୍ତି ନାହିଁ । ଏ ପାର୍ଟି, ଭିନ୍ନ ମତଧାରୀ ଲୋକଙ୍କୁ ଗୋଟିଏ ଅବଦ୍ଧ କକ୍ଷ ମଧ୍ୟରେ ଏକାଠି କରି ରଖିବାକୁ ଚାହାନ୍ତି । ମୁଁ ଆପଣମାନଙ୍କୁ ପଚାରୁଛି ଯେ, କ'ଣ ଏହି ପ୍ରଥା ଏ ଦେଶର ରାଜନୈତିକ ଜୀବନରେ ବାଞ୍ଛନୀୟ ଅଟେ ?

ସ୍ୱତନ୍ତ୍ର ଓ ନିରପେକ୍ଷ ନିର୍ବାଚନର ସ୍ଥିତି କଣ ? ଆମ୍ଭେମାନେ ଏହି ଦିଗକୁ ଆମ୍ଭମାନଙ୍କର ଆଖି ବୁଜିଦେବା ଉଚିତ୍ ନୁହେଁ । ଆଜି ବଡ଼ ବଡ଼ ଧନୀ ଲୋକ

ଏ ଦେଶର ରାଜନୀତିକ ଜୀବନକୁ ଅଧିକରୁ ଅଧିକ ଭାବେ ପ୍ରଭାବିତ କରିଆସୁଛନ୍ତି । ଧନୀ ଲୋକମାନଙ୍କ ଦ୍ୱାରା ଯେଉଁ ଏତେ ଅଧିକ ପରିମାଣରେ ଧନ, ଶାସକ ପାର୍ଟିକୁ ଚାନ୍ଦାସ୍ୱରୂପ ଦେଉଛନ୍ତି, ତାହା ବିପଦଜନକ । ଯଦି ପଇସାବାଲା ଲୋକେ କୌଣସି ଏକ ରାଜନୀତିକ ପାର୍ଟିର ଫଣ୍ଡକୁ ପ୍ରଚୁର ପରିମାଣରେ ଚାନ୍ଦା ଦେଇ ନିର୍ବାଚନକୁ ପରାଜିତ କରିବାକୁ ଚେଷ୍ଟା କରନ୍ତି ତାହାହେଲେ ତାହାର ପରିଣାମ କଣ ହେବ ? ଯେଉଁ ପାର୍ଟିକୁ ସେମାନେ ପଇସା ଦେଇ ସହାୟତା କରିଥିବେ, ଯଦି ସେ ପାର୍ଟି କ୍ଷମତା ଅଧିକାରୀ ହୋଇଯାଆନ୍ତି, ତାହାହେଲେ ସେ ସ୍ୱାଭାବିକ ଧାରାରେ ସେହି ପାର୍ଟିଠାରୁ ସୁବିଧାଲାଭ କରିବାକୁ ଚେଷ୍ଟା କରିବେ । ଏହା ଦୁଇଟି ବାଟ ଦେଇ ହୋଇପାରିବ । ଏକ,ରେ ବର୍ତ୍ତମାନର କାନୁନ୍‌ରେ ପରିବର୍ତ୍ତନ ଆଣି ଦୁଇ,ରେ ନୂଆ ଆଇନ ପାସ୍ କରି, ଯାହାଫଳରେ ସେମାନଙ୍କର ସ୍ୱାର୍ଥ ହାସଲ ହୋଇ ପାରିବ ।

ବନ୍ଧୁଗଣ, ମୁଁ ଆପଣଙ୍କୁ ପଚାରୁଛି, ଏହି ପରିସ୍ଥିତିରେ କ'ଣ କିଛି ଆଶା କରାଯାଇ ପାରିବ ଯେ, ପାର୍ଲିଆମେଣ୍ଟାରୀ ଶାସନ ପଦ୍ଧତିରେ ଦେଶର କିଛି କଲ୍ୟାଣ ସାଧିତ ହୋଇପାରିବ ? ମୁଁ କହିବି ଯେ, ଆପଣ ମହାଭାରତକୁ ମନେ ପକାନ୍ତୁ । ଯେତେବେଳେ ପାଣ୍ଡବ ଓ କୌରବମାନଙ୍କ ମଧ୍ୟରେ ଯୁଦ୍ଧ ହେଲା, ସେତେବେଳେ ଭୀଷ୍ମ, ଦ୍ରୋଣ କୌରବଙ୍କ ପକ୍ଷରେ ଥିଲେ । ପାଣ୍ଡବମାନଙ୍କ ପକ୍ଷରେ ନ୍ୟାୟ ଓ କୌରବମାନଙ୍କ ପକ୍ଷରେ ଅନ୍ୟାୟ ଥିଲା । ଭୀଷ୍ମ ମଧ୍ୟ ଏହା ସ୍ୱୀକାର କରୁଥିଲେ । ସେତେବେଳେ କେହିଜଣେ ଭୀଷ୍ମଙ୍କୁ ପଚାରିଲା, ଯଦି ଆପଣଙ୍କର ମତ, ପାଣ୍ଡବଙ୍କ ପକ୍ଷରେ ନ୍ୟାୟ ଅଛି, ତାହାହେଲେ ଆପଣ କୌରବଙ୍କୁ ସମର୍ଥନ କରୁଛନ୍ତି କାହିଁକି ? ଭୀଷ୍ମ ତାହାର ଉତ୍ତର, ଏକ ଅବିସ୍ମରଣୀୟ ବାକ୍ୟରେ କହିଥିଲେ । "ମୋର ନିମକ ସଚ୍ଚା ହେବା ଉଚିତ୍" । ଯଦି ମୁଁ କୌରବମାନଙ୍କ ନିମକ ଖାଇଛି, ତାହାହେଲେ ସେମାନଙ୍କ ପକ୍ଷ ନ୍ୟାୟର ପଥ ହେଉ ବା ଅନ୍ୟାୟର ପଥ ହେଉ, ଯାହା ହେଲେ ମଧ୍ୟ ମୋତେ ତାହାର ସମର୍ଥକ ହେବାକୁ ହେବ ।

ଆଜି ଏହିପରି ଯାହାକିଛି ହେଉଛି, ଶାସକଦଳ, ବଣିକ, କଳକାରଖାନାର ମାଲିକ ତଥା ଅନ୍ୟ ଲକ୍ଷପତିମାନଙ୍କଠାରୁ ସହାୟତା ପାଉଛି । ଶାସକଦଳ ସେମାନଙ୍କର ନିମକ ଖାଉଛି । ଏଣୁ ସ୍ୱାଭାବିକଭାବେ ସେମାନେ ସର୍ବଦା ବଡ ବେପାରୀମାନଙ୍କର ହିଁ ସ୍ୱାର୍ଥକୁ ରକ୍ଷା କରିବେ ।

ମୁଁ ଏହା ଦେଖୁଛି ଯେ, ଯେଉଁ ପାର୍ଟି ଆଜି ସରକାରୀ କର୍ମଚାରୀଙ୍କୁ ତଥା ସେମାନଙ୍କର ଆଶ୍ରିତମାନଙ୍କୁ ଭୋଟ ଦେଉଛନ୍ତି, ସରକାରୀ କର୍ମଚାରୀ ସେହି ପାର୍ଟି

ସପକ୍ଷରେ ନିର୍ବାଚନ ବେଳେ ପ୍ରଭାବିତ କରିବାକୁ ଚେଷ୍ଟା କରନ୍ତି । ଡଃ ଶ୍ୟାମ-ପ୍ରସାଦ ମୁଖାର୍ଜୀଙ୍କ ଭଳି ବ୍ୟକ୍ତି ଅଳ୍ପଦିନତଳେ ଭାରତୀୟ ଜନସଂଘର ଦିଲ୍ଲୀ ଅଧିବେଶନରେ ସରକାରୀ ଅଫିସରଙ୍କ ପ୍ରତି ଖୋଲଖୋଲି ଭାବେ ଅଭିଯୋଗ କରିଥିଲେ ଯେ, ସେମାନେ ଶାସକଦଳକୁ ସହାୟତା କରୁଛନ୍ତି ଓ ଏ ପ୍ରକାର ନିର୍ବାଚନକୁ ନ୍ୟାୟ ତଥା ନିରପେକ୍ଷ କୁହାଯାଇପାରିବ ନାହିଁ । ଏ ପରିସ୍ଥିତିରେ ମହାଶୟଗଣ, କ'ଣ ଆପଣମାନେ ପାର୍ଲିଆମେଣ୍ଟାରୀ ପ୍ରଜାତନ୍ତ୍ରବାଦର ସଫଳତାର ଆଶା କରିପାରୁଛନ୍ତି ।

ଯଦି ଏଦେଶରେ ପାର୍ଲିଆମେଣ୍ଟାରୀ ଗଣତନ୍ତ୍ରବାଦ ବିଫଳ ହୋଇଯାଏ ଓ ଯେଉଁ କାରଣଗୁଡ଼ିକ ମୁଁ ଉଲ୍ଲେଖ କଲି, ସେଗୁଡ଼ିକ ଯଦି ଏହି ବିଫଳର କାରଣ ହୁଏ, ତାହାହେଲେ ଏହାର ଗୋଟିଏ ପରିଣାମ ହେବ ଯେ ଦେଶରେ ବିଦ୍ରୋହ ହେବ, ଅରାଜକତା ହେବ ଓ ଏକଛତ୍ରବାଦ ଆସିଯିବ । ଯେଉଁଲୋକ ଆଜି କ୍ଷମତାସୀନ ଅଛନ୍ତି, ସେମାନେ ଏହି କଥାକୁ ବୁଝିପାରୁ ନାହାନ୍ତି ଯେ, ଜନତା କୌଣସି ଖାମଖିଆଲୀ ରାଜାଧିକାରକୁ ସହିପାରିବ ନାହିଁ । ତାହାହେଲେ ଏଦେଶର ଭବିଷ୍ୟତ ଅନ୍ଧକାର ପୂର୍ଣ୍ଣ । ଯଦି ଏଠାକୁ ଏକଛତ୍ରବାଦ ଆସିଯିବ, ତାହାହେଲେ ଆମ୍ଭମାନଙ୍କର ଦେଶ ଉପରେ ବିଦେଶୀ ଶତ୍ରୁଙ୍କର ସତ୍ତ୍ୱ ସ୍ଥାପିତ ହୋଇଯିବ । ଏହି ଅବସ୍ଥାରେ ଆମର ବ୍ୟକ୍ତିଗତ ସ୍ୱତନ୍ତ୍ରତା ଲୋପ ପାଇଯିବ । ଲୋକେ କ୍ଷମତାସୀନ ପାର୍ଟିର ବିଫଳତାରେ ଖିନ୍ନହୋଇ ବିଦ୍ରୋହ କରିବେ । ତାହାହେଲେ ଦେଶରେ ଅରାଜକତାର ରାଜ୍ୟ ହୋଇଯିବ । ମୁଁ ଚାହେଁ ଆପଣଙ୍କ ଏହି ଅନ୍ତିମ ସମ୍ଭାବନାର ଦିଗପ୍ରତି ଆଖି ବନ୍ଦ ନ କରନ୍ତୁ ।

ଯଦି ଆପଣ ଚାହାନ୍ତି, ଏଦେଶରେ ପାର୍ଲିଆମେଣ୍ଟାରୀ ଶାସନ ପଦ୍ଧତି ବା ପାର୍ଲିଆମେଣ୍ଟାରୀ ପ୍ରଜାତନ୍ତ୍ରବାଦ ତିଷ୍ଠି ରହୁ, ଯଦି ଆପଣ ଚାହାନ୍ତି ଯେ, ମୋର ସମ୍ଭାବିତ ବକ୍ତବ୍ୟ ଓ ସେହି ଅନୁଯାୟୀ କାର୍ଯ୍ୟକାରୀ କରିବାକୁ ସ୍ୱତନ୍ତ୍ରତା ଅକ୍ଷୁଣ୍ଣ ରହୁ ଯଦି ଆପଣ ଚାହାଁନ୍ତି ଆମ୍ଭମାନଙ୍କର ସ୍ୱାଧୀନତା ବି ନଷ୍ଟ ନହେଉ, ଯଦି ଆପଣ ବ୍ୟକ୍ତିଗତ ସ୍ୱାଧୀନତାକୁ ନିଜର ଜନ୍ମଗତ ଅଧିକାର ବୋଲି ବୁଝନ୍ତି, ତାହାହେଲେ ଆପଣଙ୍କୁ ବିଦ୍ୟାର୍ଥୀ ହିସାବରେ, ଏକ ବୁଦ୍ଧି-ଜୀବୀ ଶ୍ରେଣୀ ହିସାବରେ ଏହି ଅନୁରୋଧ କରୁଅଛି ଯେ, ନିଜ ଦେଶର ପାର୍ଲିଆମେଣ୍ଟାରୀ ଶାସନ ପଦ୍ଧତିକୁ ନିଜେ ତାର ଯଥାର୍ଥର ସ୍ୱରୂପରେ ତାକୁ ସୁରକ୍ଷିତ କରି ରଖନ୍ତୁ । ଆପଣମାନଙ୍କୁ ଏଥିପାଇଁ ସକ୍ରିୟଭାବେ କାମ କରିବାକୁ ପଡ଼ିବ ।

ବନ୍ଧୁଗଣ, ମୁଁ ମୋର ବକ୍ତବ୍ୟ ଶେଷ କରି ଦେଲି । ଆପଣମାନେ ମୋତେ ଆପଣମାନଙ୍କର ଏହି ମହତ୍ତ୍ୱପୂର୍ଣ୍ଣ ସଭାକୁ ନିମନ୍ତ୍ରଣ କରି କିଛି କହିବାପାଇଁ ଅବସର ଦେଇଛନ୍ତି, ସେଥିପାଇଁ ମୁଁ ଆପଣଙ୍କ ପାଖରେ କୃତଜ୍ଞ ।

---

# ଧର୍ମାନ୍ତର କାହିଁକି ?

(୧୯୩୫ ମସିହାରେ ମହାରାଷ୍ଟ୍ରର ନାସିକ ଜିଲ୍ଲା ଅନ୍ତର୍ଗତ ୟେଓଲାଠାରେ ବାବାସାହେବ ଡଃ ଅମ୍ବେଦକର, ଧର୍ମ ପରିବର୍ତ୍ତନ କରିବାର ଦୃଢ଼ ନିଷ୍ପତ୍ତି, ଘୋଷଣା କରିଥିଲେ । ପ୍ରାୟ ଗୋଟିଏ ବର୍ଷପରେ, ୧୯୩୬ ମସିହା ମେ ମାସ ୩୦ ଓ ୩୧ ତାରିଖ ଦିନ ବମ୍ବେଠାରେ; ମାହାର ମାନଙ୍କ ଉପରେ ସେହି ଘୋଷଣାର ପ୍ରତିକ୍ରିୟାକୁ ଅନୁଧ୍ୟାନ କରିବାକୁ ସେମାନଙ୍କର ଏକ ବିରାଟ ସମ୍ମିଳନୀ ହୋଇଥିଲା । ସେହି ସମ୍ମିଳନୀରେ ଡଃ ଆମ୍ବେଦକର ନିଜର ମତାମତ ଦେବାକୁ ଯାଇ, ଧର୍ମାନ୍ତର ଘଟଣାର ଏକ ବିସ୍ତୃତ, ସୁଚିନ୍ତିତ, ଲିଖିତ ଭାଷଣ ମରାଠୀ ଭାଷାରେ ପ୍ରଦାନ କରିଥିଲେ । ଏଠାରେ ତାର ଓଡ଼ିଆ ଭାଷାନ୍ତର ପ୍ରଦାନ କରାଗଲା ।)

ଧର୍ମାନ୍ତର ଏକ ପିଲାଖେଳ ନୁହେଁ କିମ୍ବା ଏହା କୌଣସି ଆମୋଦ ପ୍ରମୋଦ କରିବାର ଘଟଣା ନୁହେଁ । ମାନବ ଜୀବନ କିପରି ସାର୍ଥକ ହୋଇ ପାରିବ, ତାହାହିଁ ଏହାର ଆଧାର । ନୌଯାତ୍ରା ଆରମ୍ଭ କରିବା ପୂର୍ବରୁ ନାବିକ ଯେପରି ତାର ଆବଶ୍ୟକୀୟ ପ୍ରସ୍ତୁତି କରିଥାଏ, ଆମକୁ ମଧ୍ୟ ଧର୍ମାନ୍ତର ପୂର୍ବରୁ ଅନୁରୂପ ପ୍ରସ୍ତୁତି କରିବାକୁ ପଡ଼ିବ । କେତେଜଣ ହିନ୍ଦୁ ଧର୍ମ କବଳରୁ ମୁକ୍ତ ହେବାକୁ ଇଚ୍ଛୁକ ତାହା ନଜାଣିଲା ପର୍ଯ୍ୟନ୍ତ ମୁଁ ଧର୍ମାନ୍ତର ପାଇଁ ପଦକ୍ଷେପ ଆରମ୍ଭ କରିବି ନାହିଁ ; ଜଣେ ସାଧାରଣ ଲୋକପାଇଁ ଏହି ଧର୍ମାନ୍ତର ବିଷୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଏବଂ ଦୁର୍ବୋଧ୍ୟ ମଧ୍ୟ ।

## ଶ୍ରେଣୀ ସଂଘର୍ଷ ।

ଧର୍ମାନ୍ତରର ଦୁଇଟି ଦିଗ ରହିଛି । ସାମାଜିକ ଓ ଧର୍ମଗତ, ଭୌତିକ ଓ ଆଧ୍ୟାତ୍ମିକ । ଚନ୍ଦ୍ରାଧାର ବା ଦିଗ, ଯାହା ହେଉଛି ବାହ୍ୟିକ, ଅସ୍ପୃଶ୍ୟତାର ଆରମ୍ଭ, ପ୍ରକ୍ରିୟା ଓ ତାହାର ପ୍ରୟୋଗର ପରିଣତି ବିଷୟରେ ସମ୍ପୂର୍ଣ୍ଣ ରୂପେ ଅବଗତ ହେବା ଉଚିତ୍ । ତାହା ନହେଲେ ଆପଣମାନେ, ମୋର ଧର୍ମାନ୍ତର ଘୋଷଣାର ପ୍ରକୃତ ଅନ୍ତର୍ନିହିତ ଅର୍ଥକୁ ହୃଦୟଙ୍ଗମ କରିପାରିବେ ନାହିଁ । ବାସ୍ତବ ଜୀବନରେ, ଅସ୍ପୃଶ୍ୟତା ଓ ତାର ପ୍ରୟୋଗ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଧାରଣା ପାଇଁ, ମୁଁ

ଆପଣମାନଙ୍କ ଉପରେ ହୋଇ ଆସୁଥିବା ନିର୍ଯ୍ୟାତନା ଗୁଡ଼ିକୁ ବର୍ଣ୍ଣନ କରିଦେବାକୁ ଚାହେଁ । କିନ୍ତୁ, ଏହା କାହିଁକି ଘଟୁଛି, ଏକଥା ଆପଣମାନଙ୍କ ମଧ୍ୟରୁ ଖୁବ୍ କମ ଜାଣିଥିବେ । ଏହି ନିର୍ଯ୍ୟାତନା ମୂଳରେ କଣ ଅଛି ? ମୁଁ ଭାବୁଛି; ଆମେ-ସବୁ ଏହା ଜାଣିବା ଏକାନ୍ତ ଆବଶ୍ୟକ ।

ଏହା ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀଙ୍କ ମଧ୍ୟରେ ଘଟୁଥିବା ଜାତିଗତ ଝଗଡ଼ା ନୁହେଁ । ଅସ୍ପୃଶ୍ୟତା ସମସ୍ୟା ହେଉଛି ଏକ ଶ୍ରେଣୀ ସଙ୍ଘର୍ଷର ବିଷୟ । ଏହା ଉଚ୍ଚବର୍ଣ୍ଣ ହିନ୍ଦୁଜାତି ଓ ଅସ୍ପୃଶ୍ୟ ହିନ୍ଦୁମାନଙ୍କ ମଧ୍ୟରେ ସୃଷ୍ଟି ହେଉଥିବା ସଙ୍ଘର୍ଷ । ଏହା ଜଣେ ବ୍ୟକ୍ତି ବିରୁଦ୍ଧରେ ଅନ୍ୟାୟ କରିଯାଉଥିବା କଥା ନୁହେଁ । ଏହା ଗୋଟିଏ ଶ୍ରେଣୀଦ୍ୱାରା ଅନ୍ୟଏକ ଶ୍ରେଣୀପ୍ରତି କରିଯାଉଥିବା ଦୁର୍ବ୍ୟବହାରର ସମସ୍ୟା । ଏହି ଶ୍ରେଣୀ ସଙ୍ଘର୍ଷ ସାମାଜିକ ମର୍ଯ୍ୟାଦା ବା ଅବସ୍ଥା ସହିତ ସମ୍ପୃକ୍ତ । ଗୋଟିଏ ଶ୍ରେଣୀ ଅନ୍ୟଶ୍ରେଣୀ ସହିତ କିପରି ସମ୍ପର୍କ ରଖିବ ତାହା ଏହି ଶ୍ରେଣୀ ସଙ୍ଘର୍ଷ ସୂଚାଇଦିଏ । ଅସ୍ପୃଶ୍ୟମାନେ ଅନ୍ୟମାନଙ୍କ ପାଖରେ ସାମାଜିକ ସମବ୍ୟବହାରପାଇଁ ଦାବି ଉପସ୍ଥାପନ କଲା ମାତ୍ରେହିଁ ଏହି ସଙ୍ଘର୍ଷ ସୃଷ୍ଟି ହୁଏ ।

ସେମାନେ କ୍ଷିପ୍ତହେବାର କାରଣ ଖୁବ୍ ସହଜ । ସେମାନଙ୍କ ସହିତ ଆପଣମାନଙ୍କର ସମବ୍ୟବହାର, ସେମାନଙ୍କୁ ଅପମାନ ବୋଧହୁଏ । ଅସ୍ପୃଶ୍ୟତା ଏକ କ୍ଷଣସ୍ଥାୟୀ ବା ସାମୟିକ ବୈଶିଷ୍ଟ୍ୟ ନୁହେଁ । ଏହା ଚିରସ୍ଥାୟୀ ଅଟେ । ସିଧାସଳଖ ଭାବେ କୁହାଯାଇପାରେ ଯେ, ହିନ୍ଦୁ ଓ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ଏହି ସଙ୍ଘର୍ଷ ଏକ ସ୍ଥାୟୀ ପ୍ରକ୍ରିୟା । ଏହା ଚିରନ୍ତନ, କାରଣ ଯେଉଁଧର୍ମ ଆପଣମାନଙ୍କୁ ଆଜି ସମାଜର ନିମ୍ନତମ ସ୍ତରରେ ସ୍ଥାନଦେଇଛି, ହିନ୍ଦୁ ବିଶ୍ୱାସ ଅନୁଯାୟୀ ତାହା ସ୍ଥାୟୀ । ସମୟ ଓ ପରିସ୍ଥିତି ଦୃଷ୍ଟିରୁ କୌଣସି ପରିବର୍ତ୍ତନ ସମ୍ଭବନୁହେଁ । ଆପଣମାନେ ଆଜି, ସାମାଜିକ ସ୍ଥିତିର ଯେଉଁ ସର୍ବନିମ୍ନ ପାହାଚରେ ଅଛନ୍ତି, ହିନ୍ଦୁଧର୍ମର ବିଶ୍ୱାସ ଅନୁଯାୟୀ, ଆପଣମାନେ ସବୁଦିନପାଇଁ ସେହି ନିମ୍ନତମ ସ୍ତରରେ ରହିଥିବେ । ଏହା କହିବା ଅର୍ଥ, ହିନ୍ଦୁ ଓ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ସଙ୍ଘର୍ଷ ସବୁଦିନପାଇଁ ଲାଗି ରହିଥିବ । ଆପଣମାନେ କିପରି ଏହି ସଙ୍ଘର୍ଷ ମଧ୍ୟରେ ବଞ୍ଚିବେ ତାହାହିଁ ପ୍ରଧାନପ୍ରଶ୍ନ । ଆପଣମାନେ ଏହି ବିଷୟ ଚିନ୍ତା ନକଲେ ଏଥିରୁ ନିସ୍ତାର ପାଇବାପାଇଁ ଅନ୍ୟ କୌଣସି ବାଟନାହିଁ । ଯେଉଁମାନେ ହିନ୍ଦୁମାନଙ୍କ ଆଦେଶ ମାନି ବଞ୍ଚିବାକୁ ଇଚ୍ଛା କରନ୍ତି, ଯେଉଁମାନେ ସେମାନଙ୍କର କ୍ରୀତଦାସ ହୋଇ ରହିବାକୁ ଇଚ୍ଛା କରନ୍ତି । ସେମାନେ ଏସମସ୍ୟା ସମ୍ବନ୍ଧରେ ଚିନ୍ତାକରିବା ଅନାବଶ୍ୟକ । କିନ୍ତୁ, ଯେଉଁମାନେ ଏକ ଆତ୍ମମର୍ଯ୍ୟାଦା ପୂର୍ଣ୍ଣ ଜୀବନ ଯାପନ କରିବାକୁ ଇଚ୍ଛାକରନ୍ତି, ସେହିମାନଙ୍କୁହିଁ ଏହି ବିଷୟରେ ଚିନ୍ତା କରିବାକୁ

ଦଉଡ଼ିବ । ଆମ୍ଭେମାନେ କପରି ଏହି ସାମାଜିକ ସଙ୍ଘର୍ଷ ମଧ୍ୟରେ ବଞ୍ଚିବା ? ମୋ ପକ୍ଷରୁ, ଏ ପ୍ରଶ୍ନର ଉତ୍ତର ଦେବା ଆଦୌ କଷ୍ଟସାଧ୍ୟ ନୁହେଁ । ସେଉଁମାନେ ଆଜି ଏଠାରେ ଏକତ୍ରିତ ହୋଇଛନ୍ତି, ସେମାନେ ଏକମତ ହେବେ ଯେ, ଯେକୌଣସି ସଙ୍ଘର୍ଷରେ, ଯେ, ବଳବାନ ସେହି ହିଁ ବିଜୟୀ ହେବ । ଯାହାର ବଳ ନାହିଁ ? ଏହା ବହୁ କ୍ଷେତ୍ରରେ ବିଭିନ୍ନ ଅଭିଜ୍ଞତାରୁ ପ୍ରମାଣିତ ହୋଇଛି । ଏ ସମ୍ବନ୍ଧରେ ଉଦାହରଣ ଦେଇ ପ୍ରମାଣ କରିବା ଆବଶ୍ୟକ ।

## ଶକ୍ତି ଲାଭ କର—

ବର୍ତ୍ତମାନ ଆପଣମାନଙ୍କ ବିଚାର ପାଇଁ ପ୍ରଶ୍ନ ହେଲା ଯେ, ଏହି ସଙ୍ଘର୍ଷରୁ ବଞ୍ଚିବା ପାଇଁ ଆପଣମାନଙ୍କର ଯଥେଷ୍ଟ ସାମର୍ଥ୍ୟ ଅଛି କି ? ମାନବୀୟ ଶକ୍ତି ତିନିପ୍ରକାର (୧) ଲୋକଶକ୍ତି (୨) ଅର୍ଥଶକ୍ତି (୩) ମାନସିକଶକ୍ତି । ଏଗୁଡ଼ିକ ମଧ୍ୟରୁ ଆପଣମାନଙ୍କର କେଉଁଟି ଅଛି ବୋଲି ଆପଣ ବିଚାରୁଛନ୍ତି ? ଲୋକବଳ ଦୃଷ୍ଟିରୁ ଦେଖିବାକୁଗଲେ ଆପଣମାନେ ସଂଖ୍ୟାଲଘୁ । ବମ୍ବେ ପ୍ରେସିଡେନ୍‌ସିରେ ଅସ୍ପୃଶ୍ୟ-ମାନେ ହେଉଛନ୍ତି, ସମୁଦାୟ ଲୋକ ସଂଖ୍ୟାର ଏକଅଷ୍ଟମାଂଶ, ଏବଂ ସେମାନେ ସଙ୍ଗଠିତ ନୁହନ୍ତି । ସେମାନଙ୍କୁ ନିଜ ଜାତିମଧ୍ୟରେ ସଙ୍ଗଠିତ ହେବାକୁ ଦିଆଯାଏ ନାହିଁ । ସେମାନେ ମଧ୍ୟ ସଂହତ ନୁହନ୍ତି । ସେମାନେ ଗ୍ରାମ ଆକାରରେ ନୁହେଁ, ସେମାନେ ବିକ୍ଷିପ୍ତ ଭାବରେ ବସବାସ କରନ୍ତି । ଏହି ପରିସ୍ଥିତିରେ ଏତାଦୃଶ କ୍ଷୁଦ୍ର ଅସ୍ପୃଶ୍ୟ ଜନସଂଖ୍ୟା ମାନଙ୍କର ସଙ୍କଟସନ୍ଧି ମୁହୂର୍ତ୍ତରେ ସେମାନଙ୍କର ସଂଗ୍ରାମୀ ଲୋକବଳ, କାର୍ଯ୍ୟକୁ ଆସିବ ନାହିଁ । ଆର୍ଥିକବଳ ମଧ୍ୟ ଅନୁରୂପ । ଏହା ନିର୍ଦ୍ଦ୍ୱନ୍ଦରେ ବୁଝାଯାଇପାରେ ଯେ, ଆପଣମାନଙ୍କର ଲୋକବଳ ସ୍ୱଳ୍ପ ଓ ଅର୍ଥବଳ ଆଦୌ ନାହିଁ । ଆପଣମାନଙ୍କର ବାଣିଜ୍ୟ ନାହିଁ, ବ୍ୟବସାୟ ନାହିଁ, ଚାକିରି ନାହିଁ, ଜମି ମଧ୍ୟ ନାହିଁ । ଉଚ୍ଚ ଜାତିର ଉଚ୍ଛିଷ୍ଟ ରୂପେ ଫୋପଡ଼ାଯାଉଥିବା ରୁଟି ମାତ୍ର ହିଁ ଆପଣମାନଙ୍କର ଜୀବନ ଧାରଣରେ ପ୍ରଧାନ ପାଥେୟ । ଆପଣମାନଙ୍କର ଖାଇବାକୁ ନାହିଁ, ପିନ୍ଧିବାକୁ ନାହିଁ, ଏଥିରେ ଆପଣମାନଙ୍କର ଆର୍ଥିକବଳ କେଉଁଠାରୁ ଆସିବ ? ଆଇନ ଅଦାଲତରୁ ନ୍ୟାୟ ପାଇବା ପାଇଁ ଆପଣମାନଙ୍କର ସାମର୍ଥ୍ୟ ନାହିଁ ? ହଜାର ହଜାର ଅସ୍ପୃଶ୍ୟ ଉଚ୍ଚଜାତୀୟ ହିନ୍ଦୁଙ୍କର ଅକଥନୀୟ ଅପମାନ, ଅତ୍ୟାଚାର ନୀରବରେ ସହି ଆସୁଛନ୍ତି । କାରଣ ଆଇନ ଅଦାଲତରେ ଖର୍ଚ୍ଚ ବହନ କରିବାକୁ ସେମାନେ ସମ୍ପୂର୍ଣ୍ଣ ଅକ୍ଷମ । ମାନସିକ ବଳ କଥା କହିବାକୁଗଲେ, ତାହା ଅତି ଶୋଚନୀୟ । ନୀରବରେ ଅପମାନ ଓ ଅତ୍ୟାଚାର ସହିବାର ସହନ-ଶୀଳତା ମଧ୍ୟରେ ବିଦ୍ରୋହ ଓ ପ୍ରତିଶୋଧ ନେବାର ମନୋଭାବ ସଂପୂର୍ଣ୍ଣ ରୂପେ ଲୋପ ପାଇଯାଇଛି । ଆତ୍ମବିଶ୍ୱାସ, ସାହାସ ଓ ଲକ୍ଷ୍ୟ ସାଧନର ଦୃଢ଼ ସଙ୍କଳ୍ପ

ଆପଣମାନଙ୍କଠାରେ ହଜେଇ ଯାଉଛି । ଆପଣମାନେ ସମସ୍ତେ ଶସ୍ତ୍ରହୀନ, ରକ୍ତହୀନ ଓ ଉପାୟ ଶୂନ୍ୟ ହୋଇ ପଡ଼ିଛନ୍ତି । ସବୁଠାରେ ପରାଜୟ ଓ ନିରାଶାର ବାୟୁମଣ୍ଡଳପୂର୍ଣ୍ଣ । ଏପରିକି "ଆପଣମାନେ ଯେ, କିଛି କରିପାରିବେ" ଏହି ସମ୍ୟକ ଧାରଣା ମଧ୍ୟ ଆପଣମାନଙ୍କ ମନରେ ପ୍ରବେଶ କରୁନାହିଁ ।

## ଆପଣମାନଙ୍କ ବିରୁଦ୍ଧରେ ଏ ଅତ୍ୟାଚାର କାହିଁକି ?

ମୁଁ ଯାହା କହିଲି ତାହା ଯଦି ସତ୍ୟ ହୁଏ ତେବେ ଆପଣମାନଙ୍କୁ ନିମ୍ନରେ ଦିଆଯାଉଥିବା ସିଦ୍ଧାନ୍ତରେ ଏକମତ ହେବାକୁ ପଡ଼ିବ । ସେ ସିଦ୍ଧାନ୍ତଗୁଡ଼ିକ ଏହିଯେ, ଆପଣମାନେ କେବଳ ନିଜ ନିଜ ବଳ ଉପରେ ନିର୍ଭରକଲେ ଆପଣ-ମାନେ ହିନ୍ଦୁମାନଙ୍କ ଅତ୍ୟାଚାରର ସମ୍ମୁଖୀନ ହେବାକୁ ସକ୍ଷମ ହେବେ ନାହିଁ । ମୁଁ ନିଃସନ୍ଦେହରେ କହୁଛି ଯେ, ଆପଣମାନଙ୍କର ବଳ ନଥିବାରୁ ଆପଣମାନେ ଅତ୍ୟାଚାରିତ । କେବଳ ଆପଣମାନେ ଯେ, ସଂଖ୍ୟାଲଘୁ, ତାହା ନୁହେଁ । ମୁସଲମାନମାନେ ମଧ୍ୟ ଆପଣମାନଙ୍କ ପରି ସଂଖ୍ୟାଲଘୁ । ମାହାରମାନଙ୍କଭଳି ଗ୍ରାମଗୁଡ଼ିକରେ ସେମାନଙ୍କର ଘର ସଂଖ୍ୟା ଅଳ୍ପ । କିନ୍ତୁ, ଆପଣମାନେ ଅତ୍ୟାଚାରିତ ହେଉଥିବା ବେଳେ ମୁସଲମାନମାନଙ୍କୁ ଅସୁବିଧାରେ ପକାଇବାକୁ କେହି ସାହସ କରନ୍ତି ନାହିଁ । ଏପରି କାହିଁକି ହେଉଛି ? ଗୋଟିଏ ଗ୍ରାମରେ ଦୁଇଟି ମୁସଲମାନ ପରିବାର ଥିଲେ ମଧ୍ୟ ତାଙ୍କର କ୍ଷତି କରିବାକୁ କେହି ସାହାସ କରନ୍ତି ନାହିଁ । କିନ୍ତୁ ଆପଣମାନଙ୍କର ୧୦ଟି ପରିବାର ଥିଲେ ମଧ୍ୟ ସମଗ୍ର ଗ୍ରାମବାସୀମାନେ ଅତ୍ୟାଚାର ଜାହିର କରନ୍ତି । "ଏହା କାହିଁକି ଘଟୁଛି ? ଏହା ଏକ ପ୍ରସଙ୍ଗୋଚିତ ପ୍ରଶ୍ନ ଏବଂ ଆପଣମାନଙ୍କୁ ଏହାର ଏକ ସଠିକ୍ ଉତ୍ତର ଦେବାକୁ ହେବ । ମୋ ମତରେ ଏହି ପ୍ରଶ୍ନର ଗୋଟିଏ ମାତ୍ର ଉତ୍ତର ରହିଛି । ହିନ୍ଦୁମାନେ ଅନୁଭବ କରନ୍ତି ଯେ, ଗ୍ରାମର ସେହି ଦୁଇଟି ମୁସଲମାନ ପରିବାର ପଛରେ ସମଗ୍ର ଭାରତର ସଂଖ୍ୟାଲଘୁ ମୁସଲମାନ ଜନତା ରହିଛନ୍ତି । ଏବଂ ତେଣୁ ସେମାନଙ୍କୁ ସ୍ପର୍ଶ କରିବାର ସାହସ ହେଉନାହିଁ । ସେହି ଦୁଇ ମୁସଲମାନ ପରିବାର ମଧ୍ୟ ସ୍ୱାଧୀନଭାବେ ଜୀବନଯାପନ କରନ୍ତି । କାରଣ ସେମାନେ ସଚେତନ ଯେ, ଯଦି ହିନ୍ଦୁମାନେ ତାଙ୍କୁ ଆକ୍ରମଣ କରନ୍ତି, ତାହାହେଲେ, ପଞ୍ଜାବଠାରୁ ମାଡ୍ରାସ ପର୍ଯ୍ୟନ୍ତ ଥିବା ସମଗ୍ର ମୁସଲମାନ ସଂପ୍ରଦାୟ ଯେକୌଣସିମତେ ସେମାନଙ୍କର ସୁରକ୍ଷା କରିବାପାଇଁ ଧାଇଁ ଆସିବେ । ଅପରପକ୍ଷରେ ହିନ୍ଦୁମାନେ ଜାଣନ୍ତି ଯେ, ଆପଣମାନଙ୍କୁ କେହି ରକ୍ଷା କରିବେ ନାହିଁ କିମ୍ବା କେହି ସାହାଯ୍ୟ କରିବେ ନାହିଁ ଏବଂ ଆପଣମାନଙ୍କ ନିକଟକୁ କୌଣସି ଆର୍ଥିକ ସାହାଯ୍ୟ ଆସିବ ନାହିଁ । ତହସିଲଦାର ଓ ପୋଲିସମାନେ ଉଚ୍ଚ ଜାତିର ହୋଇଥିବାରୁ ହିନ୍ଦୁ ଓ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ଘଟୁଥିବା

ବିବାଦରେ ସେମାନେ ନିଜର କର୍ତ୍ତବ୍ୟ ଅପେକ୍ଷା ନିଜର ଜାତି ପ୍ରତି ଅଧିକ ଆନୁଗତ୍ୟ ପ୍ରକାଶ କରନ୍ତି । ଫଳରେ ଆପଣମାନେ ଉପାୟଶୂନ୍ୟ ହୋଇପଡ଼ନ୍ତି । ହିନ୍ଦୁମାନେ ଆପଣମାନଙ୍କ ପ୍ରତି ଅନ୍ୟାୟ ଓ ଅତ୍ୟାଚାର କରନ୍ତି । ଉପରୋକ୍ତ ଆଲୋଚନାରୁ ଦୁଇଟି କାରଣ ସ୍ପଷ୍ଟ ହୁଏ । ପ୍ରଥମତଃ ଆପଣମାନେ ବିନାବଳରେ ଅତ୍ୟାଚାରର ସମ୍ମୁଖୀନ ହୋଇପାରିବେ ନାହିଁ । ଦ୍ୱିତୀୟତଃ ଅତ୍ୟାଚାରର ସମ୍ମୁଖୀନ ହେବାକୁ ଆପଣଙ୍କର ଯଥେଷ୍ଟ ବଳ ନାହିଁ । ଏହି ଦୁଇଟି ସିଦ୍ଧାନ୍ତରୁ ତୃତୀୟ ସିଦ୍ଧାନ୍ତ ସ୍ୱତଃ ଆସେ । ଏହି ଅତ୍ୟାଚାରର ସମ୍ମୁଖୀନ ହେବାପାଇଁ ଆବଶ୍ୟକ ବଳ ବାହାରୁ ଆସିବା ଦରକାର । ଆପଣମାନେ ଏହା କିପରି ଲାଭ କରିବେ ? ଏହା ବାସ୍ତବରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଏବଂ ଆପଣମାନଙ୍କୁ ନିରପେକ୍ଷ ମନରେ ଏହା ଉପରେ ଭାବିବାକୁ ପଡ଼ିବ ।

ଏଥି ଆପଣ ଗୋଟିଏ ଉପଲବ୍ଧି କରିବେ ଯେ, ଆପଣମାନେ ଅନ୍ୟ ସମାଜ ସହିତ ସମ୍ପର୍କ ସ୍ଥାପନ ନକରିବା ପର୍ଯ୍ୟନ୍ତ, ଆପଣମାନେ ଅନ୍ୟ ଧର୍ମରେ ଯୋଗ ନଦେବା ପର୍ଯ୍ୟନ୍ତ, ଆପଣମାନେ ବାହ୍ୟ ବଳ ପାଇ ପାରିବେ ନାହିଁ । ଏହା ସ୍ପଷ୍ଟ ଯେ ଆପଣମାନଙ୍କୁ ବର୍ତ୍ତମାନର ଏହି ଧର୍ମ ପରିତ୍ୟାଗ କରିବାକୁ ପଡ଼ିବ ଅନ୍ୟ କୌଣସି ସମାଜ ସହିତ ସାମିଲ ହେବାକୁ ପଡ଼ିବ । ଏହା ବ୍ୟତୀତ ଆପଣ ସେ ସମାଜର ବଳ ପାଇ ପାରିବେ ନାହିଁ । ଯେ ପର୍ଯ୍ୟନ୍ତ ଆପଣମାନେ ବଳ ସଂଗ୍ରହ ନକରିଛନ୍ତି ସେ ପର୍ଯ୍ୟନ୍ତ ଆପଣମାନଙ୍କୁ ଓ ଆପଣଙ୍କର ବଂଶଧରମାନଙ୍କୁ ଦାସତ୍ୱମୟ ଜୀବନ ଯାପନ କରିବାକୁ ପଡ଼ିବ ।

## ଧର୍ମାନ୍ତରତାର ଆଧ୍ୟାତ୍ମିକ ଦିଗ

ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କ ପାଇଁ ଧର୍ମାନ୍ତର କାହିଁକି ଆବଶ୍ୟକ ତାହା ଆଲୋଚନା କରି ଆସିଛନ୍ତି । ବର୍ତ୍ତମାନ ଆଧ୍ୟାତ୍ମିକ ଉନ୍ନତି ପାଇଁ ଧର୍ମାନ୍ତର କରିବାକୁ ଚାହୁଁଛୁ । ଧର୍ମ କଣ ? ଏହା କାହିଁକି ଆବଶ୍ୟକ ? ଯାହା ଲୋକମାନଙ୍କୁ ଧାରଣ କରି ରଖେ, ଅଥବା ଶାସନ କିମ୍ବା ନିୟନ୍ତ୍ରଣ କରେ ତାହା ହିଁ ଧର୍ମ । ଏହାହିଁ ଧର୍ମର ପ୍ରକୃତ ସଂଜ୍ଞା । ହିନ୍ଦୁ ସମାଜରେ ବ୍ୟକ୍ତି ବିଶେଷର ସ୍ଥାନ ନାହିଁ । ହିନ୍ଦୁ ଧର୍ମ, ଏକ ଶ୍ରେଣୀଗତ ଧାରଣା ଉପରେ ପର୍ଯ୍ୟବେସିତ । ଜଣେ ବ୍ୟକ୍ତିବିଶେଷ ଅନ୍ୟ ଜଣେ ବ୍ୟକ୍ତି ବିଶେଷ ସହ କିପରି ବ୍ୟବହାର କରିବା ଉଚିତ୍ ତାହା ହିନ୍ଦୁ ଧର୍ମ ଶିକ୍ଷା ଦିଏ ନାହିଁ । ଯେଉଁ ଧର୍ମ ବ୍ୟକ୍ତି ବିଶେଷର ଗୁଣକୁ ସ୍ୱୀକୃତି ଦିଏ ନା, ବ୍ୟକ୍ତିଗତ ଭାବେ, ତାହା ମୋ ପକ୍ଷେ ଗ୍ରହଣୀୟ ନୁହେଁ ।

ଜଣେ ବ୍ୟକ୍ତି ବିଶେଷର ଉନ୍ନତି ପାଇଁ, ତିନୋଟି ଉପାଦାନ ଆବଶ୍ୟକ । ସେ ଗୁଡ଼ିକ ପ୍ରେମ, ଦୟା, ସମାନତା ଏବଂ ସ୍ୱାଧୀନତା । ନିଜ ଅଭିଜ୍ଞତାରୁ ଆପଣମାନେ କହି ପାରିବେ କି, ଏହି ଉପାଦାନଗୁଡ଼ିକ ହିନ୍ଦୁ ଧର୍ମରେ ରହିଛି ।

ଏପରି ଅସମନତାର ଜଘନ୍ୟ ଉଦାହରଣ ପୃଥିବୀରେ କୌଣସିଠାରେ ଦେଖିବାକୁ ମିଳେ ନାହିଁ । ମଣିଷ ସମାଜର ଇତିହାସରେ ମଧ୍ୟ ଆମ୍ଭେମାନେ ଏପରି ଅସମନତା ଖୋଜି ପାଉନାହିଁ । ଏହି ଅସମନତା ହିଁ ଅସ୍ପୃଶ୍ୟତାଠାରୁ ଅଧିକ ଜଘନ୍ୟ । ମୁଁ ଭାବୁଛି, ଆପଣମାନେ ହିନ୍ଦୁ ହୋଇ ରହୁଥିବାରୁ ଆପଣ ମାନଙ୍କ ଉପରେ ଏହି ଅବସ୍ଥା ଜବରଦସ୍ତି ଲଦି ଦିଆଯାଇଛି । ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ମୁସଲମାନ ହୋଇଛନ୍ତି, ସେମାନଙ୍କୁ ହିନ୍ଦୁମାନେ ଅସ୍ପୃଶ୍ୟ ବା ଅସମାନତା ଦୃଷ୍ଟିରେ ଦେଖନ୍ତି ନାହିଁ । ଯେଉଁମାନେ ଖ୍ରୀଷ୍ଟିଆନ ହୋଇ-ଛନ୍ତି ସେମାନେ ମଧ୍ୟ ଏହିଭଳି । ଭଗବାନ ସର୍ବତ୍ର ବିଦ୍ୟମାନ । ଏହା ବିଜ୍ଞାନ ସମ୍ମତ । ଏହା ଧର୍ମଗତ ନୁହେଁ । କାରଣ ଧର୍ମ ମଣିଷର ଆଚରଣ ବା ବ୍ୟବହାର ସହିତ ପ୍ରତ୍ୟକ୍ଷ ଭାବେ ସମ୍ପୃକ୍ତ । କେତେକ ନିଷ୍ଠୁର ଲୋକ ଅଛନ୍ତି, ଯେଉଁ ମାନଙ୍କର କଥା ଓ କାର୍ଯ୍ୟ ସମ୍ପୂର୍ଣ୍ଣ ଭିନ୍ନ । ହିନ୍ଦୁମାନେ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ସେମାନଙ୍କ ମୁଖରେ ରାମନାମ, କିନ୍ତୁ ଅନ୍ତରାଳରେ ହସ୍ତରେ ଧରିଥାନ୍ତି ଛୁରିକା । ସେମାନେ ସନ୍ନ୍ୟାସୀଙ୍କ ଭଳି କହନ୍ତି, କିନ୍ତୁ କଂସେଇ ପରି କାର୍ଯ୍ୟ କରନ୍ତି ।

ଆମ୍ଭେମାନେ କେବଳ ହିନ୍ଦୁମାନଙ୍କ ଆଖିରେ ନୁହେଁ, ସମଗ୍ର ଭାରତରେ ନିମ୍ନତମ । ହିନ୍ଦୁମାନଙ୍କର ଆମ ପ୍ରତି କରି ଆସୁଥିବା ବ୍ୟବହାର ହିଁ ଏଥିପାଇଁ ଦାୟୀ । ଆପଣମାନେ ଏପରି ନିମ୍ନ ଅବସ୍ଥାକୁ ଏଡ଼ାଇବାକୁ ହେଲେ ଆପଣ ମାନଙ୍କୁ ଅବର୍ଜନା ସଂସ୍କାର କରି ଏହି ମୂଲ୍ୟବାନ ଜୀବନର ସଦୁପଯୋଗ କରି-ବାକୁ ହେବ । ସେଥିପାଇଁ କେବଳ ଏକମାତ୍ର ଉପାୟ, ଏହି ନିମ୍ନ ହିନ୍ଦୁ ଧର୍ମକୁ, ହିନ୍ଦୁ ସମାଜକୁ ପରିତ୍ୟାଗ କରିବାକୁ ପଡ଼ିବ । ଗୋଟିଏ ପଦାର୍ଥର ସ୍ୱାଦ, ପରି-ବର୍ତ୍ତନ ଦ୍ୱାରା ହିଁ ଉପଲବ୍ଧି କରାଯାଇ ପାରେ । କିନ୍ତୁ ବିଷକୁ ଅମୃତ କରାଯାଇ ପାରେ ନାହିଁ । ଜାତି ପ୍ରଥାର ବିଲୋପ ସମ୍ବନ୍ଧରେ ଆଲୋଚନା କରିବା ହିଁ ବିଷକୁ ଅମୃତ କରିବାର ଆଲୋଚନା ଭଳି ଅସମ୍ଭବ । ସଂକ୍ଷେପରେ କହିବାକୁ ଗଲେ ଯେ ପର୍ଯ୍ୟନ୍ତ ଆମ୍ଭେମାନେ ହିନ୍ଦୁ ଧର୍ମରେ ରହିବା, ଅନ୍ୟମାନଙ୍କ ମନରେ ଦୃଢ଼ୀଭୂତ ହୋଇଥିବା ଜାତି ପ୍ରଥାଗତ ବାଛ ବିଚାର ଦୂର ହୋଇ ପାରିବ ନାହିଁ । ଅସ୍ପୃଶ୍ୟ ମାନଙ୍କ ମଧ୍ୟରୁ ଅସ୍ପୃଶ୍ୟତା ଓ ଜାତିଭେଦ ବିଲୋପନ ପାଇଁ ଧର୍ମାନ୍ତର ହିଁ ଏକମାତ୍ର ପ୍ରତିବିଧାନ ।

ଧର୍ମାନ୍ତରରେ ଯାହା ଅନ୍ତର୍ନିହିତ ଅଛି, ତାହା ଅଦ୍ଭୁତ କୁହାଯାଇ ପାରେ । ବାସ୍ତବରେ କହିବାକୁ ଗଲେ ହିନ୍ଦୁ ଜାତି ସହିତ ବର୍ତ୍ତମାନ କି ପ୍ରକାର ସାମାଜିକ ସମ୍ପର୍କ ରହିଛି ? ମୁସଲମାନ, ଖ୍ରୀଷ୍ଟିଆନଙ୍କ ଭଳି ତୁମ୍ଭେମାନେ ମଧ୍ୟ ହିନ୍ଦୁମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ । ସେହିପରି ସେମାନଙ୍କର ଆପଣଙ୍କ ସହିତ ସମ୍ପର୍କ ମଧ୍ୟ ପୃଥକ । ଆପଣ ମାନଙ୍କର ସମାଜ ଓ ହିନ୍ଦୁ ସମାଜ ଦୁଇଟି ପୃଥକ ଦଳ । ଧର୍ମାନ୍ତର ଦ୍ୱାରା କେହି ଅନୁଭବ କରି ପାରିବେନି ଯେ ଗୋଟିଏ ସମାଜ ବିଭକ୍ତ ହୋଇଛି । ଆଜି ଆପଣମାନେ ଯେଉଁ ଭଳି ହିନ୍ଦୁମାନଙ୍କ ଠାରୁ ପୃଥକ ଅଛନ୍ତି, ଆପଣ ସେହିପରି ରହିବେ । ଏହି ଧର୍ମାନ୍ତର ଦ୍ୱାରା ଆପଣ ମାନଙ୍କର କିଛି ଅସୁବିଧା ହେବ ନାହିଁ । ଯଦି ଏହା ସତ୍ୟ, ତେବେ କେତେକ ଲୋକ କାହିଁକି, ଆଜି ଧର୍ମାନ୍ତରକୁ ଭୟ କରୁଛନ୍ତି ? କାହିଁ ମୁଁ ଏହି ଭୟର କାରଣ କିଛି ପାଇ ପାରୁନାହିଁ ।

## ସଂସ୍କାରନୁହେଁ ବିଦ୍ରୋହ

ଧର୍ମ ପରିବର୍ତ୍ତନ ନାମ ପରିବର୍ତ୍ତନ ଭଳି । ଧର୍ମ ପରିବର୍ତ୍ତନ ପରେ ପରେ ନାମ ପରିବର୍ତ୍ତନ ଆପଣମାନଙ୍କପାଇଁ ଅଧିକ ଉପଯୋଗୀ । କେବଳ ଧର୍ମ ପରିବର୍ତ୍ତନ ଯୋଗୁନୁହେଁ, ନାମ ପରିବର୍ତ୍ତନ ଯୋଗୁ ମଧ୍ୟ ଜଣକୁ ମୁସଲମାନ ଖ୍ରୀଷ୍ଟିଆନ ବୌଦ୍ଧ, ବା ଶିଖ୍ କୁହାଯାଏ । ଏହି ଧର୍ମାନ୍ତର ଆନ୍ଦୋଳନର ଆରମ୍ଭରୁ ବିଭିନ୍ନ ଲୋକ, ବିଭିନ୍ନ ପ୍ରତିବାଦ କରିଛନ୍ତି । ଏହି ପ୍ରତିବାଦର ସତ୍ୟତା ବର୍ତ୍ତମାନ ଆଲୋଚନା କରାଯାଉ । 'ଆମର ପୂର୍ବ ବଂଶଧରମାନଙ୍କ ସମୟରୁ ଏହା ରହିଆସୁଥିବାରୁ, ଆମ୍ଭେମାନେ ଗୋଟିଏ ଧର୍ମରେ ରହିବାକୁ ଏକଥା ଏକ ଜନ୍ମଗତ ସୁଦୃଢ଼ ବନ୍ଧନ ବୋଲି କହୁଥାଉ । କୌଣସି ସ୍ୱଚ୍ଛଚରିତ୍ର ମାନବ, କେବେହେଲେ ଏହି କଥା ଗ୍ରହଣ କରିବ ନାହିଁ । ଯେଉଁମାନେ ଏହା ସପକ୍ଷରେ ଯୁକ୍ତି କରନ୍ତି, ସେମାନେ ଇତିହାସ ଆଦୌ ପଢ଼ନ୍ତି ନାହିଁ । ପ୍ରାଚୀନ ଆର୍ଯ୍ୟ ଧର୍ମକୁ ବୈଦିକ ଧର୍ମ ବୋଲି କୁହାଯାଉଥିଲା । ଏହାର ଅନେକଟି ସ୍ପଷ୍ଟ ବୈଶିଷ୍ଟ୍ୟ ଅଛି । ଗୋ-ମାଂସ ଭକ୍ଷଣ, ମଦ୍ୟପାନ, ଏବଂ ମଉଜ ମଜଲିସ ଧର୍ମର ଏକ ଅଂଶବିଶେଷ ଥିଲା । ଭାରତରେ ସହସ୍ର ସହସ୍ର ଲୋକ ଏହାକୁ ମାନି ଚଳୁଥିଲେ । ଏପରିକି ବର୍ତ୍ତମାନ ମଧ୍ୟ କେତେକ, ଏହି ଧର୍ମକୁ ଫେରିଯିବାକୁ ପ୍ରୟାସ କରନ୍ତି । ଯଦି ପ୍ରାଚୀନ ଧର୍ମକୁ ଗ୍ରହଣ କରିବା କଥା, ତେବେ ଭାରତରଲୋକେ କାହିଁକି ହିନ୍ଦୁ ଧର୍ମ ଛାଡ଼ି ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ ? କାହିଁକି ବେଦ ଧର୍ମରୁ ବିଚ୍ୟୁତ ହୋଇଲେ ? ତେଣୁ ଏହି ହିନ୍ଦୁ ଧର୍ମ ଆମ ପୂର୍ବପୁରୁଷମାନଙ୍କର ଧର୍ମ ନୁହେଁ । ବରଂ ଏହା ସେମାନଙ୍କ ଉପରେ ଜବରଦସ୍ତ ଲଦି ଦିଆଯାଉଥିବା ଏକ ଦାସତ୍ୱ ପ୍ରଥା ।

ହିନ୍ଦୁ ସମାଜ ସଂସ୍କାର ଆମର ଲକ୍ଷ୍ୟ ନୁହେଁ, ବା ଆମ କାର୍ଯ୍ୟକ୍ଷେତ୍ରର ପରିସରଭୁକ୍ତ ନୁହେଁ । ସ୍ୱାଧୀନତା ଆମର ମୂଳ ଲକ୍ଷ୍ୟ । ଆଉ ଅନ୍ୟ କୌଣସିରେ ଆମର କିଛି କରିବାର ନାହିଁ । ଯଦି ଧର୍ମାନ୍ତର ଦ୍ୱାରା ଆମେ ଏହି ସ୍ୱାଧୀନତା ପାଇପାରିବା, ତେବେ ହିନ୍ଦୁ ସମାଜ ସଂସ୍କାରର ଅଯଥା ବୋଝ କାହିଁକି ବହନ କରିବା ? ଏବଂ କାହିଁକି ସେଥିପାଇଁ ଆମେ ଆମର ସାମର୍ଥ୍ୟ ଓ ଧନ ଅପବ୍ୟୟ କରିବା ? ଆମ ଆନ୍ଦୋଳନର ମୂଳ ଲକ୍ଷ୍ୟ, ହିନ୍ଦୁ ସମାଜ ସଂସ୍କାର ନୁହେଁ । ଅସ୍ପୃଶ୍ୟମାନଙ୍କ ପାଇଁ ସାମାଜିକ ସ୍ୱାଧୀନତା ହାସଲ ଆମର ଲକ୍ଷ୍ୟ । ଆହୁରି ମଧ୍ୟ ଏହା ସତ୍ୟ ଯେ ଧର୍ମାନ୍ତର ବିନା ଏହା ଲାଭ କରାଯାଇ ପାରିବ ନାହିଁ ।

ଅସ୍ପୃଶ୍ୟମାନେ ସମାନତା ଚାହାନ୍ତି, ଏହା ମୁଁ ସ୍ୱୀକାର କରେ । ଏହି ସମାନତା ହାସଲ ମଧ୍ୟ ଆମର ଅନ୍ୟଏକ ଲକ୍ଷ୍ୟ । କେବଳ ହିନ୍ଦୁ ହୋଇ ରହିବା ଦ୍ୱାରା ଏହା ହାସଲ ହୋଇ ପାରିବ, ଓ ଅନ୍ୟଥା ହୋଇ ପାରିବ ନାହିଁ, ଏକଥା କେହି କହିପାରିବେ ନାହିଁ । ସମାନତା ହାସଲ କରିବାର ଦୁଇଟି ଉପାୟ ରହିଛି । ପ୍ରଥମତଃ ହିନ୍ଦୁମାନଙ୍କ ସଙ୍ଗେ ରହିବା ଦ୍ୱାରା, ଏବଂ ଦ୍ୱିତୀୟତଃ ଧର୍ମାନ୍ତର ଗ୍ରହଣ କରିବା ଦ୍ୱାରା, ଯଦି ହିନ୍ଦୁ ସମାଜରେ ରହିବା ଦ୍ୱାରା, ସମାନତା ହାସଲ କରାଯାଇପାରେ, ତେବେ ସାମାନ୍ୟ ଛୁଆଁ ଅଛୁଆଁ ଭାବ ଦୂରୀକରଣ ଯଥେଷ୍ଟ ନୁହେଁ । ଯେତେବେଳେ ଜାତି ନିର୍ବିଶେଷ ପଂକ୍ତି ଭୋଜନ, ଓ ଜାତି ନିର୍ବିଶେଷରେ ବିବାହ ହେବ, ସେତେବେଳେ ହିଁ ସମାନତା ହାସଲ ହୋଇପାରିବ । ଅର୍ଥାତ୍ ଚତୁର୍ବର୍ଣ୍ଣ ଲୋପ ପାଇବ ଏବଂ ବ୍ରାହ୍ମଣ ଧର୍ମର ମୂଳୋତ୍ପାଟନ ହେବ । ଏହା କ'ଣ ସମ୍ଭବ ? ଏବଂ ଯଦି ନୁହେଁ, ତେବେ ହିନ୍ଦୁ ଧର୍ମରେ ରହି ସମାନତା ଆଶାକରିବା ବିଜ୍ଞତାର ପରିଚୟ ହେବ କି ? ଏବଂ ଆପଣମାନେ ସମାନତା ହାସଲ କରିବା ଚେଷ୍ଟାରେ କୃତକାର୍ଯ୍ୟ ହୋଇ ପାରିବେ କି ? ବୋଧହୁଏ ନୁହେଁ । କିନ୍ତୁ ଧର୍ମାନ୍ତର ପଥ ଏହା-ଅପେକ୍ଷା ଯଥେଷ୍ଟ ସରଳତର । ହିନ୍ଦୁ ସମାଜ, ମୁସଲମାନ ଓ ଖ୍ରୀଷ୍ଟିୟାନମାନଙ୍କୁ ସମାନତା ଦିଏ ଏବଂ ଫଳତଃ ଧର୍ମାନ୍ତର ଦ୍ୱାରା ସହଜରେ ସମାନତା ଲାଭ କରି ହେବ । ଯଦି ଏହା ସତ୍ୟ, ତେବେ ଆପଣମାନେ କାହିଁକି ଧର୍ମାନ୍ତର ପଥରେ ନଯିବେ ?

ମୋ ମତରେ ଧର୍ମାନ୍ତର ହିନ୍ଦୁ ଓ ଅସ୍ପୃଶ୍ୟମାନଙ୍କର ମଙ୍ଗଳକର ହେବ । ଯେପର୍ଯ୍ୟନ୍ତ ଆପଣମାନେ ହିନ୍ଦୁ ହୋଇ ରହିବେ, ସେପର୍ଯ୍ୟନ୍ତ ଆପଣଙ୍କୁ ସାମାଜିକ ମିଶ୍ରଣ ଖାଦ୍ୟଜଳ; ଜାତି ନିର୍ବିଶେଷ ବିବାହପାଇଁ ସଂଗ୍ରାମ କରିବାକୁ ପଡ଼ିବ । ଯେପର୍ଯ୍ୟନ୍ତ ଏହି ଦ୍ୱନ୍ଦ୍ୱ ରହିଥିବ, ଆପଣମାନେ ହିନ୍ଦୁମାନଙ୍କର ଚିରଶତ୍ରୁ

ହୋଇ ରହିଥିବେ । କିନ୍ତୁ ଧର୍ମାନ୍ତର ଦ୍ୱାରା ଏହି ବନ୍ଧ ଉଠିଯିବ । ତେଣୁ ଯଦି ଧର୍ମାନ୍ତର ଦ୍ୱାରା ସମତା ହାସଲ କରାଯାଇପାରେ ଏବଂ ହିନ୍ଦୁ ଓ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ସଂପର୍କ ସ୍ଥାପନ କରାଯାଇପାରେ ତେବେ ଅସ୍ପୃଶ୍ୟମାନେ କାହିଁକି ଏହି ସରଳପଥଟି ବାଛି ନନେବେ ? ଏହି ଦୃଷ୍ଟିକୋଣରୁ ସମସ୍ୟାଟିକୁ ଲକ୍ଷ୍ୟ କଲେ ଦେଖାଯିବ ଧର୍ମାନ୍ତର ହିଁ ସ୍ୱାଧୀନତା ଲାଭର ଏକମାତ୍ର ଉତ୍କୃଷ୍ଟ ପଥ ଏବଂ ଏହା ଆକ୍ରମରେ ସମାନତା ଆଣି ଦେଇଥାଏ । ଏହା ଭୀରୁତା ନୁହେଁ, ବା ଦୁଷ୍କାମୀ ନୁହେଁ ।

ମୁସଲମାନ ଓ ଖ୍ରୀଷ୍ଟିୟାନଙ୍କ ମଧ୍ୟରେ ଜାତିପ୍ରଥା ଥିଲେ ହେଁ ତାହା ହିନ୍ଦୁମାନଙ୍କ ସହ ସମାନ କରିବା ନୀଚତାର ପରିଚାୟକ । ହିନ୍ଦୁ ଜାତିପ୍ରଥା ଓ ମୁସଲମାନ ଏବଂ ଖ୍ରୀଷ୍ଟିୟାନଙ୍କ ଜାତିପ୍ରଥା ମଧ୍ୟରେ ବହୁତ ପାର୍ଥକ୍ୟ ରହିଛି । ପ୍ରଥମତଃ ଏହା ଜାଣିବା ଉଚିତ୍ ଯେ, ଖ୍ରୀଷ୍ଟିୟାନ ଓ ମୁସଲମାନମାନଙ୍କ ମଧ୍ୟରେ ଜାତିପ୍ରଥା ଥିଲେ ମଧ୍ୟ ତାହା ସେମାନଙ୍କର ସାମାଜିକ ବୈଶିଷ୍ଟ୍ୟ ନୁହେଁ । ଆଉ ଏକ ପାର୍ଥକ୍ୟ ହେଲା ହିନ୍ଦୁମାନଙ୍କର ଜାତିପ୍ରଥା, ଧର୍ମ ଉପରେ ପ୍ରତିଷ୍ଠିତ । କିନ୍ତୁ, ଅନ୍ୟମାନଙ୍କର ଜାତିପ୍ରଥା ସେମାନଙ୍କ ଧର୍ମ ଉପରେ ପ୍ରତିଷ୍ଠିତ ନୁହେଁ । ହିନ୍ଦୁମାନେ ସେମାନଙ୍କ ଧର୍ମ ନଷ୍ଟ ନକରି ଜାତିପ୍ରଥା ଉଠାଇ ପାରିବେ ନାହିଁ । କିନ୍ତୁ, ମୁସଲମାନ ଓ ଖ୍ରୀଷ୍ଟିୟାନମାନଙ୍କର ଜାତିପ୍ରଥା ଉଠାଇବା ପାଇଁ ଧର୍ମ ନଷ୍ଟ କରିବାର ଆବଶ୍ୟକ ହୁଏ ନାହିଁ । ବରଂ ସେମାନଙ୍କର ଧର୍ମ ଏହାବିରୋଧୀ ଆନ୍ଦୋଳନକୁ ସମର୍ଥ କରେ ।

## ଧର୍ମାନ୍ତର ଦ୍ୱାରା କଣ କରାଯାଇ ପାରିବ ।

"ଧର୍ମାନ୍ତର ଦ୍ୱାରା କଣ କରାଯାଇ ପାରିବ" କେତେକ ହିନ୍ଦୁ ଏହି ପ୍ରଶ୍ନ କରିଥାନ୍ତି । ମୁଁ ଏ ପ୍ରଶ୍ନରେ ବିସ୍ମିତ ହୁଏ । ବର୍ତ୍ତମାନ ଭାରତର ଶିଖ୍, ମୁସଲମାନ, ଏବଂ ଖ୍ରୀଷ୍ଟିୟାନମାନେ ଦିନେ ହିନ୍ଦୁ ଥିଲେ । ତାଙ୍କ ମଧ୍ୟରୁ ଅଧିକାଂଶ ଶୂଦ୍ର ଓ ଅସ୍ପୃଶ୍ୟ ପରିବାରରୁ ଆସିଛନ୍ତି । ଏହି ସମାଲୋଚକମାନେ ଭାବନ୍ତି ନାହିଁ ଯେ, ଯେଉଁମାନେ ହିନ୍ଦୁଧର୍ମ ଛାଡ଼ି ଶିଖ୍ ଧର୍ମ ଓ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିଛନ୍ତି, ସେମାନେ ଉନ୍ନତି କରି ନାହାନ୍ତି । ଏହା ଯଦି ସତ୍ୟ ନୁହେଁ ଏବଂ ଯଦି ସ୍ୱୀକାର କରାଯାଏ ଯେ, ଧର୍ମାନ୍ତର ଦ୍ୱାରା ସେମାନଙ୍କର ଅବସ୍ଥାର ଉନ୍ନତି ହୋଇଛି, ତେବେ ଅସ୍ପୃଶ୍ୟମାନେ ଧର୍ମାନ୍ତର ଦ୍ୱାରା କିଛି କରିପାରିବେ ନାହିଁ, ଏହା କହିବା ଅର୍ଥହୀନ ।

ଏହି ସମସ୍ୟାଟି ବିଷୟରେ ଗଭୀର ଚିନ୍ତାକଲେ, ସମସ୍ତେ ଜାଣିପାରିବେ ଯେ, ଭାରତରେ ସ୍ୱତନ୍ତ୍ର ଶାସନ ଭଳି ଅସ୍ପୃଶ୍ୟମାନଙ୍କର ଧର୍ମାନ୍ତର ଏକାନ୍ତ ପ୍ରୟୋଜନ, ଏବଂ ସେହିଭଳି ଗୁରୁତ୍ୱପୂର୍ଣ୍ଣ । ଉଭୟର ଚରମ ଲକ୍ଷ୍ୟ ଏକ । ଏ ଦୁଇଟିର ଲକ୍ଷ୍ୟ ମଧ୍ୟରେ ସାମାନ୍ୟତମ ପାର୍ଥକ୍ୟ ନାହିଁ । ସ୍ୱାଧୀନତା ଲାଭ ହିଁ ଚରମ ଲକ୍ଷ୍ୟ । ମଣିଷ ଜୀବନରେ ଯଦି ସ୍ୱାଧୀନତା ଆବଶ୍ୟକ ଓ ଧର୍ମାନ୍ତର ଦ୍ୱାରା ଅସ୍ପୃଶ୍ୟମାନେ ସ୍ୱାଧୀନତା ପାଆନ୍ତି, ତେବେ ଧର୍ମାନ୍ତରକୁ ମୂଲ୍ୟହୀନ କହିବା ଟା, ଚିନ୍ତା କରାଯାଇ ନପାରେ ।

ଅର୍ଥନୈତିକ ଧର୍ମାନ୍ତର ଓ ସାମାଜିକ ଧର୍ମାନ୍ତର ମଧ୍ୟରୁ କେଉଁଟି ପ୍ରଥମେ କରାଯିବ ଏ ସମ୍ବନ୍ଧରେ ଆଲୋଚନା କରାଯାଉ । ପ୍ରଥମେ ଅର୍ଥନୈତିକ ଧର୍ମାନ୍ତର ବିଷୟରେ ମୁଁ ଏକମତ ନୁହେଁ । ଅସ୍ପୃଶ୍ୟତା ଉନ୍ନତି ପଥରେ ସର୍ବଦା ପ୍ରତିବନ୍ଧକ ହୋଇଥାଏ । ଏହାକୁ ଦୂର ନକଲେ ପଥ ସୁଗମ ହୁଏ ନାହିଁ । ଧର୍ମାନ୍ତର ବ୍ୟତିରେକେ ଏହି ପ୍ରତିବନ୍ଧକ ଦୂର ହୋଇ ପାରିବ ନାହିଁ ।

ତେଣୁ ଯଦି ଆପଣମାନେ ବୁଝନ୍ତି ଯେ, ଆପଣମାନଙ୍କର ଶିକ୍ଷାର ମୂଲ୍ୟ ଅଛି ଓ ଆପଣମାନଙ୍କ ଶିକ୍ଷା କୌଣସି ଦରକାରରେ ଆସିବ, ତେବେ ଆପଣଙ୍କୁ ଅସ୍ପୃଶ୍ୟତାର ବେଡିକୁ ଫିଙ୍ଗି ଦେବାକୁ ପଡ଼ିବ, ଅର୍ଥାତ୍ ଆପଣଙ୍କୁ ଧର୍ମ ପରିବର୍ତ୍ତନ କରିବାକୁ ପଡ଼ିବ । ଯେଉଁମାନେ ସମ୍ପତ୍ତି ଆଶଙ୍କା କରନ୍ତି, ମୁଁ ସେମାନଙ୍କୁ ପ୍ରତିଶ୍ରୁତି ଦେଉଛି ଯେ, ଏହି ଧର୍ମାନ୍ତର ଦ୍ୱାରା ସେମାନଙ୍କର କୌଣସି କ୍ଷତି ହେବ ନାହିଁ । ଏ ସମ୍ବନ୍ଧରେ Government of India Act, 1950 ଦେଖାଦେଇପାରେ । ଏହି ଆକ୍ଟରେ ଥିବା ବ୍ୟବସ୍ଥା ଅନୁଯାୟୀ ଧର୍ମାନ୍ତର ଗ୍ରହଣ କରିଥିବା ବ୍ୟକ୍ତିର ବା ସେମାନଙ୍କର ଉତ୍ତରାଧିକାରୀ ବଂଶଧରଙ୍କର "Right to Porperty" ବ୍ୟାହତ ହେବ ନାହିଁ । ଦ୍ୱିତୀୟ ପ୍ରଶ୍ନଟି ହେଲା, ରାଜନୈତିକ ଅଧିକାର । କେତେକ ଲୋକ ଆଶଂକା କରନ୍ତି ଯେ, ଧର୍ମାନ୍ତର ଗ୍ରହଣ କଲେ, ସେମାନଙ୍କ ରାଜନୈତିକ ଅଧିକାର କ୍ଷୁର୍ଣ୍ଣ ହେବ । କିନ୍ତୁ, ମୁଁ ଭାବୁଛି, କେବଳ ରାଜନୈତିକ ଅଧିକାର ଉପରେ ନିର୍ଭର କରିବା ସମୀଚୀନ ନୁହେଁ । ଏହି ଅଧିକାର ସ୍ଥାୟୀ ନୁହେଁ । କେତେକ ସମୟରେ ତାହା ଫଳପ୍ରଦ ହୁଏ ନାହିଁ । ବ୍ରିଟିଶ ସରକାରଙ୍କର କମ୍ୟୁନାଲ ଆୱାର୍ଡ ଅନୁଯାୟୀ ଆମର ରାଜନୈତିକ ନିରାପତ୍ତା ୨୦ ବର୍ଷ ମଧ୍ୟରେ ସୀମିତ । ପୁନା ପ୍ୟାକ୍ଟରେ ଏହାର ସୀମା ନିର୍ଦ୍ଧାରଣ ହୋଇ ନଥିଲେ ମଧ୍ୟ ତାହା ଚିରସ୍ଥାୟୀ ବୋଲି କେହି କହି ପାରିବେ ନାହିଁ । ଯେଉଁମାନେ ରାଜନୈତିକ ନିରାପତ୍ତା ଉପରେ ନିର୍ଭର କରନ୍ତି, ସେମାନେ ଏହି ବ୍ୟବସ୍ଥା ... ... ଦେଖାଇ ପରବର୍ତ୍ତୀ ସମୟରେ କଣ ଘଟିବ ତାହା ଚିନ୍ତା କରନ୍ତୁ ।

ଆଗକୁ ଆମର ସାମାଜିକ ଦୃଢ଼ତା ଉପରେ ନିର୍ଭରଶୀଳ ହେବାକୁ ପଡ଼ିବ । ଆମଠାରେ ଏହି ସାମାଜିକ ଦୃଢ଼ତାର ଅଭାବ ରହିଛି । ତେଣୁ ପ୍ରାରମ୍ଭରୁ ମୁଁ ଯଥାର୍ଥରେ ପ୍ରମାଣ କରିଛି, ଯେ, ଧର୍ମାନ୍ତର ବ୍ୟତୀତ ଅନ୍ୟ କୌଣସି ଉପାୟରେ ଏହା ହାସଲ କରାଯାଇ ନପାରେ ।

ଏହିରୁ ପରିଷ୍କୃତ ଦୃଷ୍ଟିରୁ କେଉଁଟି ଶିର ହିତକର ତାହା ବିଗ୍ଭର କରିବା ଉଚିତ୍ । ମୋ ମତରେ ଶିରନ୍ତନ ଦୁଃଖର ଏକମାତ୍ର ଉପାୟ ହେଉଛି ଧର୍ମାନ୍ତର ଗ୍ରହଣ । ରାଜନୈତିକ ଅଧିକାରକୁ ଉତ୍ସର୍ଗ କରିବାକୁ ପଡ଼ିଲେ ମଧ ଏହି ଏଥିରେ ଦ୍ୱିଧାପ୍ରକାଶ କରିବା ଅନୁଚିତ । ଧର୍ମାନ୍ତରଣ ରାଜନୈତିକ ନିରାପତ୍ତାର କୌଣସିକ୍ଷତି କରେନାହିଁ ବା ଧର୍ମାନ୍ତରଣ ଦ୍ୱାରା ରାଜନୈତିକ ଅଧିକାର କ୍ଷୁର୍ଣ୍ଣ ହୁଏ ନାହିଁ । ଆପଣ ଯେଉଁଠାକୁ ଯିବେ ରାଜନୈତିକ ଅଧିକାର ଓ ନିରାପତ୍ତା ଆପଣଙ୍କ ସହିତ ରହିବ । ଏଥିରେ ସନ୍ଦେହର ଅବକାଶ ନାହିଁ । ଯଦି ତୁମେ ମୁସଲମାନ ହୁଅ ତେବେ ମୁସଲମାନରୂପେ ତୁମକୁ ରାଜନୈତିକ ନିରାପତ୍ତା ମିଳିବ । ତେଣୁ ଏଥିରେ କେହି ଭୟକରିବା ଅନୁଚିତ୍ । ଅପରପକ୍ଷେ ଆମେ ଧର୍ମାନ୍ତର ଗ୍ରହଣ ନକରି ହିନ୍ଦୁ ହୋଇ ରହିଲେ ଆମର ଅଧିକାର ଅକ୍ଷୁର୍ଣ୍ଣ ରହିବ କି ? ଆପଣ ଏବିଷୟରେ ମନଯୋଗ ପୂର୍ବକ ଚିନ୍ତା କରନ୍ତୁ । ମନେକରାଯାଉ ହିନ୍ଦୁମାନେ ଆଇନ ପ୍ରଣୟନକରି ଅସ୍ପୃଶ୍ୟତା ଉଠାଇଦେବେ ଏବଂ ଅସ୍ପୃଶ୍ୟତା କାର୍ଯ୍ୟ ଦଣ୍ଡନୀୟ ହେବ । ସେତେବେଳେ ସେମାନେ ପ୍ରଶ୍ନ କରିପାରନ୍ତି ଆମେ ଆଇନଦ୍ୱାରା ଅସ୍ପୃଶ୍ୟତା ବନ୍ଦକଲୁ ଏବଂ ତୁମେମାନେ ଆଉ ଏଣିକି ଅସ୍ପୃଶ୍ୟନୁହଁ ।

ଏ ପରିପ୍ରେକ୍ଷୀରେ ଧର୍ମାନ୍ତର । ରାଜନୈତିକ ନିରାପତ୍ତାକୁ ସୁଦୃଢ଼ କରେ କିନ୍ତୁ ପ୍ରତିବନ୍ଧକ କରେନାହିଁ । ଯଦି ଆପଣ ହିନ୍ଦୁହୋଇ ରହିବେ ତେବେ ଆପଣ ନିଶ୍ଚୟ ଆପଣଙ୍କ ରାଜନୈତିକ ନିରାପତ୍ତା ହରାଇବେ । ଯଦି ଆପଣ ତାହା ବିପନ୍ନ କରିବାକୁ ନଚାହାନ୍ତି ତେବେ ଏହିଧର୍ମ ପରିତ୍ୟାଗ କର । ଧର୍ମାନ୍ତର ଗ୍ରହଣ ଦ୍ୱାରା ରାଜନୈତିକ ନିରାପତ୍ତା ସ୍ଥାୟୀ ହୋଇଥାଏ ।

ହିନ୍ଦୁଧର୍ମରେ ମୋର ଶ୍ରଦ୍ଧାବୋଧ ହେଉନାହିଁ । ଏହା ମୋ ଆତ୍ମବିଶ୍ୱାସ ଉପଯୋଗୀ ନୁହେଁ । ଧର୍ମାନ୍ତରଣ ଦ୍ୱାରା ଆପଣଙ୍କର ବୈଷୟିକ ଓ ଆଧ୍ୟାତ୍ମିକଲାଭ ହୋଇପାରିବ । କେତେକ ଏହାକୁ ବ୍ୟଙ୍ଗ ଓ ପରିହାସ କରିପାରନ୍ତି । ମୁଁ ସେମାନଙ୍କୁ ନିର୍ବୋଧବୋଲି କହିବାକୁ କୁଣ୍ଠାବୋଧ କରିବନାହିଁ ।

ମୁଁ ଆପଣମାନଙ୍କୁ ନିର୍ଦ୍ଦିଷ୍ଟଭାବେ କହୁଛି ମନୁଷ୍ୟପାଇଁ ଧର୍ମ, କିନ୍ତୁ ଧର୍ମପାଇଁ ମନୁଷ୍ୟନୁହେଁ । ମଣିଷପଣ ବଞ୍ଚିରହିବାକୁ ହେଲେ ଆପଣମାନେ ନିଜକୁ ପରିବର୍ତ୍ତନ କରନ୍ତୁ ।

